# ଜୀବନୀ ସାହିତ୍ୟ - ଏକ ଅଧ୍ୟୟନ

ଅଧ୍ୟାପକ ପଠାଣି ପଟ୍ଟନାୟକ

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

# ଜୀବନୀ ସାହିତ୍ୟ—ଏକ ଅଧ୍ୟୟନ

ଲେଖକ :

**ଅଧ୍ୟାପକ ପଠାଣି ପଟ୍ଟନାୟକ**, ଏମ୍. ଏ.

ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

୧୯୭୭



ପ୍ରକାଶକ

**ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା**

ଭୁବନେଶ୍ୱର

INTRODUCTION TO THE STUDY OF BIOGRAPHY

•Published under the scheme of production of books and literature in Regional Languages at the University level sponsored by the Government of India in the Ministry of Education and Social Welfare (Department of Education), New Delhi.

Written by :

**SHRI PATHANI PATNAIK,** M. A.
Reader and Head of the Department of Oriya
Christ College, Cuttack-8

Reviewed by :

Dr **KUNJABEHARI TRIPATHY,** M. A., Ph. D. (London)
Former Professor of Oriya
Professorpara, Cuttack.

First Edition – 1977; 2,100 Copies.

Published by :
THE ORISSA STATE BUREAU OF
TEXTBOOK PREPARATION AND PRODUCTION,
BHUBANESWAR.

Publication No.— 22o



Paper used for the Printing of the book was made available by the Government of Orissa at concessional rate.

Printed at :
KANIKA PRESS
CUTTACK-8

Price – Rs. 5-25
( Rupees Five and paise twenty five only)

# ଉପୋଦ୍‌ଘାତ

"ମାତୃଭୂମି ମାତୃଭାଷା ଉଭୟେ ଜନନୀ,

ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।"—ମଧୁସୂଦନ

ଭାରତ ଏକ ବହୁ ଭାଷାଭାଷୀ ଦେଶ । ତେଣୁ ଭାଷା-ସମସ୍ୟା ଭାରତବର୍ଷରେ ଏକ ଜଟିଳ ସମସ୍ୟା । ଇଂରେଜମାନେ ସାରା ଭାରତବର୍ଷରେ ଇଂରାଜୀ ଭାଷାର ପ୍ରଚଳନ କରାଇଥିଲେ । କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରେଜ ଶାସନ ଅମଳରେ ଇଂରାଜୀ ହିଁ ଶିକ୍ଷାର ମାଧ୍ୟମ ଥିଲା । ଭାରତୀୟମାନେ ଇଂରେଜୀ ଭାଷାକୁ ଭଲରୂପେ ଆୟତ୍ତ କରି ସେ ଭାଷାରେ ଉଚ୍ଚ ଜ୍ଞାନ ଆହରଣ କରିବା ବଡ଼ ଆୟାସସାଧ୍ୟ ଥିଲା । ହିସାବରୁ ଜଣାପଡ଼ିଲା ଯେ ଦୀର୍ଘ ଦୁଇଶହ ବର୍ଷ ଇଂରେଜ ରାଜତ୍ୱ ଶେଷରେ ଭାରତବର୍ଷର ଦୁଇ ହଜାର ଲୋକଙ୍କ ମଧ୍ୟରେ ମାତ୍ର ଦୁଇଜଣ ଲୋକ ଇଂରାଜୀରେ ଲେଖିପଢ଼ି ଜାଣିଛନ୍ତି । ଭାରତ ସ୍ୱାଧୀନ ହେଲା ପରେ କେନ୍ଦ୍ର ସରକାର ଉଚ୍ଚଶିକ୍ଷା କ୍ଷେତ୍ରରେ କିଛି କିଛି ଉନ୍ନତି କରାଯିବ ସେଥିପାଇଁ ଡକ୍ଟର ଡି. ଏସ୍. କୋଠାରୀଙ୍କ ନେତୃତ୍ୱରେ ଏକ ଶିକ୍ଷା କମିସନ୍ ବସାଇଲେ । ଏହି କମିସନ୍ (୧୯୬୪-୬୬) ଅନେକ-ଗୁଡ଼ିଏ ସୁଚିନ୍ତିତ ପରାମର୍ଶ ପ୍ରଦାନ କରିଥିଲେ । ଉଚ୍ଚଶିକ୍ଷା କ୍ଷେତ୍ରରେ ଭାରତୀୟ ଭାଷା ଗୁଡ଼ିକ ଶିକ୍ଷାର ମାଧ୍ୟମ ହେବା ଉଚିତ ବୋଲି ସେମାନେ ମତ ଦେଲେ । ଭାରତୀୟ ଭାଷା ମାଧ୍ୟମରେ କଲେଜ ଓ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଶିକ୍ଷା ପ୍ରଦାନ କରାଗଲେ ଶିକ୍ଷାର ମାନରେ ଗୁଣାତ୍ମକ ଅଭିବୃଦ୍ଧି ଘଟିବ । ବିଜ୍ଞାନ ଓ କାରିଗରୀ ଜ୍ଞାନରେ ଶିକ୍ଷିତ ଲୋକେ ସର୍ବସାଧାରଣଙ୍କୁ ଭାରତୀୟ ଭାଷା ମାଧ୍ୟମରେ ବୁଝାଇ ପାରିବେ । ତଦ୍ୱାରା ବିଜ୍ଞାନ ଓ ବୈଷୟିକ ଜ୍ଞାନ ଗ୍ରାମ ଗହଳରେ ପ୍ରସାରଲାଭ କରିବ । ଭାରତୀୟ ଭାଷା ଶିକ୍ଷାର ମାଧ୍ୟମ ହେଲେ ଉଚ୍ଚଶିକ୍ଷିତ ଓ ନିରକ୍ଷର ଜନତାଙ୍କ ମଧ୍ୟରେ ବୁଝାମଣା ସୁବିଧାରେ ହେବ । ସେମାନଙ୍କ ମଧ୍ୟରେ ଇଂରେଜ ଶାସନ ଅମଳରୁ ଯେଉଁ ଅଭେଦ୍ୟ ପ୍ରାଚୀର ଗଢ଼ି ଉଠିଛି, ତାହା କ୍ରମଶଃ ଲୋପ ପାଇବ । ଭାରତୀୟ ଭାଷାଗୁଡ଼ିକର କ୍ରମୋନ୍ନତି ଘଟି ସେଗୁଡ଼ିକ ପୃଥିବୀର ଉନ୍ନତ ଭାଷା ସହିତ ସମକକ୍ଷ ହୋଇପାରିବ । ଭାରତୀୟ ଭାଷାଗୁଡ଼ିକର ବିକାଶ ହେଲେ ଭାରତବର୍ଷରେ ଗଣତନ୍ତ୍ର ଓ ସମାଜବାଦର ମୂଳଦୁଆ ଦୃଢ଼ୀଭୂତ ହେବ । ଏସବୁ ସୁଫଳଗୁଡ଼ିକ ଚିନ୍ତା କରି କେନ୍ଦ୍ର ସରକାର କୋଠାରୀ କମିସନ୍‌ଙ୍କ ସୁପାରିଶ ଅନୁଯାୟୀ ଭାରତୀୟ ଭାଷାଗୁଡ଼ିକ ଉଚ୍ଚଶିକ୍ଷା କ୍ଷେତ୍ରରେ ଶିକ୍ଷା ଓ ପରୀକ୍ଷାର ମାଧ୍ୟମ ହେବା ଉଚିତ ବୋଲି ଜାତୀୟ ଶିକ୍ଷାନୀତି ବିଧାନ କଲେ । ଏହି ଜାତୀୟ ଶିକ୍ଷାନୀତିକୁ ଭାରତ ପାର୍ଲିଆମେଣ୍ଟ ୧୯୬୮ ଜାନୁଆରୀ ତା ୧୮ ରିଖ ଦିନ ସର୍ବସମ୍ମତିକ୍ରମେ ଅନୁମୋଦନ କଲେ ।

ଭାରତ ସରକାର ଚଉଦ ଗୋଟି ଭାରତୀୟ ଭାଷାରେ କଲେଜ ଓ ବିଶ୍ୱବିଦ୍ୟାଳୟ-ମାନଙ୍କରେ ପଠନୋପଯୋଗୀ ପାଠ୍ୟପୁସ୍ତକ ପ୍ରସ୍ତୁତ ପାଇଁ ପ୍ରାଦେଶିକ ସରକାରଙ୍କୁ ଆର୍ଥିକ ସାହାଯ୍ୟ ଦେବାର ଘୋଷଣା କଲେ । ତଦନୁସାରେ ଓଡ଼ିଶାରେ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ୧୯୬୦ ମାର୍ଚ୍ଚ ତା ୧୧ିଖରେ ପ୍ରତିଷ୍ଠିତ ହେଲା । ଏହି ସଂସ୍ଥା ତରଫରୁ ଅଦ୍ୟାବଧି ଶତାଧିକ ଉଚକୋଟୀର ପାଠ୍ୟପୁସ୍ତକ ପ୍ରକାଶିତ ହେଲଣି । କିନ୍ତୁ ଏ ପୁସ୍ତକଗୁଡ଼ିକର ଉପାଦେୟତା ଶିକ୍ଷକ ଓ ଛାତ୍ରମାନଙ୍କ ଐକାନ୍ତିକ ସହଯୋଗ ଉପରେ ହିଁ ନିର୍ଭର କରେ । ଯେତେ ଶୀଘ୍ର ଅଧ୍ୟାପକମାନେ କଲେଜରେ ଓଡ଼ିଆ ଭାଷାରେ ପାଠ ପଢ଼ାଇବେ, ସେତେ ଶୀଘ୍ର ଛାତ୍ରମାନେ ଖୁବ୍ ଭଲରୂପେ ପାଠକୁ ଆୟତ୍ତ କରିପାରିବେ ଓ ପରୀକ୍ଷାରେ ଓଡ଼ିଆ ଭାଷା ମାଧ୍ୟମରେ ଉତ୍ତର ପ୍ରଦାନ କରିବାକୁ ଆଗ୍ରହୀ ହେବେ ।

ସଂସ୍ଥା ତରଫରୁ ମୁଁ ଏହି ପୁସ୍ତକର ଲେଖକ ଅଧ୍ୟାପକ ପଠାଣି ପଟ୍ଟନାୟକ, ସମୀକ୍ଷକ ଡ. କୃଷ୍ଣବିହାରୀ ତ୍ରିପାଠୀଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛୁ ।

ଭୁବନେଶ୍ୱର
ଜୁନ୍ ୨୦, ୧୯୭୭

ଗଦାଧର ମିଶ୍ର
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

# ଭୂମିକା

ଓଡ଼ିଆ ସାହିତ୍ୟରେ ଜୀବନୀ ଓ ଆତ୍ମଜୀବନୀ ସମ୍ପର୍କରେ ଏ ପର୍ଯ୍ୟନ୍ତ କୌଣସି ଆଲୋଚନା ପୁସ୍ତକ ପ୍ରକାଶିତ ହୋଇ ନଥିଲା । "ଜୀବନୀସାହିତ୍ୟ-ଏକ ଅଧ୍ୟୟନ" ପୁସ୍ତକଟି ଏ କ୍ଷେତ୍ରରେ ସର୍ବପ୍ରଥମ ଉଦ୍ୟମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଆନୁକୂଲ୍ୟରେ ଏପରି ଏକ ପୁସ୍ତକ ପ୍ରକାଶିତ ହେବା ଅତ୍ୟନ୍ତ ଆନନ୍ଦର କଥା । ଏଥିପାଇଁ ସଂସ୍ଥାର କର୍ତ୍ତୃପକ୍ଷ ଅଭିନନ୍ଦନୀୟ । ଅତ୍ୟନ୍ତ ଅଳ୍ପକାଳ ମଧ୍ୟରେ ଏବଂ ସୀମିତ ପରିସରରେ ଏପରି ଏକ ଆଲୋଚନା ପୁସ୍ତକ ଲେଖାଯାଇଥିବାରୁ ଓଡ଼ିଆ ସାହିତ୍ୟରେ ପ୍ରକାଶିତ ଆତ୍ମଜୀବନୀ ଓ ଜୀବନୀ ସାହିତ୍ୟ ସମ୍ପର୍କରେ ଯେପରି ବିଶ୍ଳେଷଣାତ୍ମକ ଏବଂ ବୈଜ୍ଞାନିକ ଅନୁଶୀଳନର ଆବଶ୍ୟକତା ରହିଛି, ତାହା ଏଥିରେ ସମ୍ଭବ ହୋଇପାରିନାହିଁ । ଏପରି ଏକ ଆଲୋଚନା ଗ୍ରନ୍ଥ ଲେଖିଲାବେଳେ ଲେଖକର ସବୁଠାରୁ ବଡ଼ ପ୍ରତିବନ୍ଧକ ହୋଇଛି ହାତ ପାହାନ୍ତାରେ ନିର୍ଦ୍ଦିଷ୍ଟ ପୁସ୍ତକଗୁଡ଼ିକ ପାଇବା । ସଂଗଠିତ ଓ ସୁପରିଚାଳିତ ପୁସ୍ତକାଳୟର ଅଭାବ ଏହାର ପ୍ରଧାନ କାରଣ । ପୁନଶ୍ଚ ଏ ପର୍ଯ୍ୟନ୍ତ ସାହିତ୍ୟର ବିଭିନ୍ନ ବିଭାଗରେ ପ୍ରକାଶିତ ପୁସ୍ତକଗୁଡ଼ିକର "ପରିଚୟ" ପ୍ରକାଶିତ ହେଲା ନାହିଁ । ତେଣୁ ଆମ୍ଭେମାନେ ପୁସ୍ତକଗୁଡ଼ିକ ସମ୍ପର୍କରେ ସମ୍ପୂର୍ଣ୍ଣ ଅବହିତ ହେବା ଅତ୍ୟନ୍ତ କଠିନ ।

ଏହି ଗ୍ରନ୍ଥ ରଚନା କାଳରେ ବନ୍ଧୁ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଓ ଅଧ୍ୟାପକ ଦୟାନିଧି ସାମନ୍ତରାୟ ସେମାନଙ୍କର ବ୍ୟକ୍ତିଗତ ପୁସ୍ତକାଳୟରୁ କେତେକ ଉପାଦେୟ ପୁସ୍ତକ ଯୋଗାଇ ଦେଇ ଲେଖକଙ୍କୁ ଅନୁଗୃହୀତ କରିଅଛନ୍ତି ।

ପୁସ୍ତକର ପାଣ୍ଡୁଲିପି ପ୍ରସ୍ତୁତ କରିବା ପାଇଁ ଶ୍ରୀମତୀ ପ୍ରଭାତ କୁମାରୀ ପଟ୍ଟନାୟକ, ଶ୍ରୀ ଲୋକରଞ୍ଜନ ପଟ୍ଟନାୟକ ଓ ଶ୍ରୀ ସୂର୍ଯ୍ୟକାନ୍ତ ପଟ୍ଟନାୟକ ଅକୁଣ୍ଠ ସାହାଯ୍ୟ କରିଛନ୍ତି । ଏହି ଅବସରରେ ଲେଖକ ସେମାନଙ୍କୁ ଆନ୍ତରିକ ସ୍ନେହ ଓ ଶୁଭେଚ୍ଛା ଜଣାଇ ସୁଖୀ ହେଉଛି ।

ଭବିଷ୍ୟତ ଆଲୋଚନାର ସୁବିଧା ପାଇଁ ପୁସ୍ତକର ପରିଶିଷ୍ଟରେ ଓଡ଼ିଆରେ ପ୍ରକାଶିତ ଜୀବନୀ ତଥା ଆତ୍ମଜୀବନୀ ପୁସ୍ତକର ଏକ ତାଲିକା ପ୍ରଦତ୍ତ ହୋଇଅଛି । ଏହି ତାଲିକାକୁ କେବେହେଲେ ପୂର୍ଣ୍ଣାଙ୍ଗ ବୋଲି କୁହାଯାଇ ପାରିବ ନାହିଁ । ତଥାପି ଅଧିକାଂଶ ଉଲ୍ଲେଖନୀୟ ପୁସ୍ତକ ଏହି ତାଲିକାରେ ସ୍ଥାନ ଲାଭ କରିଛନ୍ତି । ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ପ୍ରାଚୀନ ପୁସ୍ତକାଳୟର ସାହାଯ୍ୟ ନେଲେ ଏହି ତାଲିକା ଅଧିକ ସମୃଦ୍ଧ ଓ ପ୍ରତନଧ୍ୟମୂଳକ ହୋଇପାରନ୍ତା ।

ମୋର ଗୁରୁ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ ଏହି ପୁସ୍ତକର ସମୀକ୍ଷା କରିଥିବାରୁ ଲେଖକ ତାଙ୍କୁ ଧନ୍ୟ ମନେ କରୁଅଛି । ମୋର ବିଶ୍ୱାସ, ସୁଧୀ ପାଠକବୃନ୍ଦ ଏହି ଆଲୋଚନାକୁ ସଦୟ ଚିତ୍ତରେ ଗ୍ରହଣ କରିବେ ।

**ପଠାଣି ପଟ୍ଟନାୟକ**
କେନ୍ଦୁଝର କଲୋନୀ
କଟକ-୮
ତା ୨୩ । ୭ । ୭୭

# ସୂଚୀ

# ଜୀବନ ଚରିତ କାହିଁକି ?

ଇଂରେଜୀ କବି ଲଙ୍ଗଫେଲୋ ଥରେ ଲେଖିଥିଲେ :—

"Lives of Greatmen all remind us
We can make our lives sublime,
And departing leave behind us
Footprints on the sands of time."

ମହାପୁରୁଷମାନଙ୍କ ଜୀବନୀ ସମସ୍ତଙ୍କର ଅନୁକରଣୀୟ । ମନୁଷ୍ୟ ସ୍ୱଭାବତଃ ଦୁର୍ବଳ । ଜୀବନର ଗତିପଥରେ ସେ ଦିଗଭ୍ରାନ୍ତ ହୋଇପଡ଼େ । ପ୍ରବୃତ୍ତିର ଅଧୀନ ହୋଇ ଜୀବନ-ସଂଗ୍ରାମର ସମ୍ମୁଖୀନ ହେଲାବେଳେ ସେ ଯଦି ବିଫଳକାମ ହୁଏ, ସେହି ସମୟରେ ମହାପୁରୁଷମାନଙ୍କର କାର୍ଯ୍ୟାବଳୀ ଆଲୋକବର୍ତ୍ତିକା ପରି ନୈରାଶ୍ୟର ଘନଅନ୍ଧକାର ମଧ୍ୟରେ ପଥ ନିର୍ଦ୍ଦେଶ କରିଥାଏ । ମହାପୁରୁଷଗଣ ହେଲେ ଅନନ୍ୟସାଧାରଣ ପ୍ରତିଭାର ଅଧିକାରୀ । ସେମାନଙ୍କୁ ସ୍ମରଣ କଲେ ଦୁର୍ବଳ ମାନବ, ଜୀବନକୁ ନବୋତ୍ଥାନ କରିପାରେ । ସେ ସଂସାରରୁ ବିଦାୟ ନେଲା ପୂର୍ବରୁ ମହତ୍ତ୍ୱ ଲୋକମାନଙ୍କ ପ୍ରେରଣାରେ ଏପରି କିଛି କାର୍ଯ୍ୟ କରିଯାଏ, ଯଦ୍ଦ୍ୱାରେ ସାଧାରଣ ମନୁଷ୍ୟ କାଳବକ୍ଷରେ ଏକ ନିର୍ଦ୍ଦିଷ୍ଟ ପଦଚିହ୍ନ ରଖିଦେଇଯାଏ । ଏହି କାରଣରୁ ଜୀବନଚରିତ ଅଧ୍ୟୟନ ଏକାନ୍ତ କାମ୍ୟ ବୋଲି ପାଶ୍ଚାତ୍ୟ କବି ଘୋଷଣା କରିଛନ୍ତି ।

ମହାପୁରୁଷମାନଙ୍କ ଜୀବନଚରିତ ସମ୍ପର୍କରେ ଆଉ ଜଣେ କବି ଏହିପରି କହିଛନ୍ତି—

"The height by greatmen reached and kept
Were not attained by sudden flight
But they while their companions slept
Were toiling upward in the might."

ଯେଉଁମାନେ ଉନ୍ନତିର ଚରମ ସୋପାନରେ ଉପନୀତ ହୋଇଛନ୍ତି, ସେମାନେ ଏକାଦିନକେ ସେହି ସୌଭାଗ୍ୟର ଅଧିକାରୀ ହୋଇନାହାନ୍ତି । ଜୀବନବ୍ୟାପୀ ସାଧନା ଓ ତପସ୍ୟା ହିଁ ସେମାନଙ୍କୁ ପ୍ରତିଷ୍ଠାବନ୍ତ କରିଥାଏ । କାଳବକ୍ଷରେ ଅମର ଅକ୍ଷରରେ ନିଜର

ସ୍ମୃତିଚିହ୍ନ ଖୋଦନ କରିବା ପାଇଁ କ୍ଷମ ହେବା କିଛି ସହଜସାଧ୍ୟ ବ୍ୟାପାର ନୁହେଁ । ହସିଖେଳି ଜୀବନକୁ ସାଧାରଣ ଲୋକେ ବିତାଇ ଦିଅନ୍ତି । ସମୟର ମୂଲ୍ୟ ସେମାନେ ବୁଝନ୍ତି ନାହିଁ । Time and Tide wait for none. ସମୟର ସଦୁପଯୋଗ ନକଲେ କାହାର ପକ୍ଷରେ ଜୀବନକାଳରେ କୃତିତ୍ୱ ହାସଲ କରିବା ସମ୍ଭବ ନୁହେଁ । ସମାଜର ବରପୁତ୍ରଗଣ ଜୀବନାବଧି କେତେ ଦୁଃଖ କଷ୍ଟ ସହି ନାନା ଝଡ଼ଝଞ୍ଜାର ସମ୍ମୁଖୀନ ହୋଇ ବୀର ପରି ବିପଦକୁ ବରଣ କରନ୍ତି ଏବଂ ଅବଶେଷରେ ସେମାନେ ଯଶଶ୍ରୀମଣ୍ଡିତ ହୁଅନ୍ତି । ସେଥିପାଇଁ କୁହାଯାଇଛି—"ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ" ଯେତେବେଳେ ସାରା-ଜଗତ ଶୋଇପଡ଼େ, ସେହି ସମୟରେ ମହାପୁରୁଷଗଣ ଜାଗ୍ରତ ରହି ଜଗତର କଲ୍ୟାଣ ପାଇଁ ସାଧନାରତ ଥାଆନ୍ତି । ସେଥିପାଇଁ ଯୁଗେ ଯୁଗେ ମହତ୍ତ୍ୱଲୋକମାନଙ୍କର ଜୀବନୀ ଆଲୋଚନା କରିବା ପାଇଁ ପରାମର୍ଶ ଦିଆଯାଇଥାଏ । ମହତ୍ତ୍ୱଲୋକମାନଙ୍କର ଜୀବନ ସର୍ବଦା ଅନୁକରଣୀୟ । ସେମାନଙ୍କର ଆଚରଣୀୟ କାର୍ଯ୍ୟାବଳୀ ଅନ୍ୟମାନଙ୍କର ଆଦର୍ଶ ହୋଇ ରହେ । ମହତ୍ ବ୍ୟକ୍ତିଙ୍କର ଜୀବନର ମୂଲ୍ୟବୋଧ ସ୍ୱୀକାର କରି ଭକ୍ତକବି ଜଗନ୍ନାଥ ଦାସ ତାଙ୍କର ଓଡ଼ିଆ ଭାଗବତରେ ଲେଖିଥିଲେ—

"ମହତେ ଯାହା ଆଚରିବେ
ଇତରେ ତାହା ହିଁ କରିବେ ।
ସେ ଯାହା ପ୍ରମାଣ କରିବେ
ଲୋକେ ତଦନୁବର୍ତ୍ତୀ ହେବେ ।"

ମହତ୍ ଲୋକେ ନିଜର ଆଦର୍ଶରେ ସର୍ବଦା ଅଟଳ ଥାଆନ୍ତି । ସେମାନେ ଯେତେ ବାଧାବିଘ୍ନ, ପ୍ରଲୋଭନ ଆସୁ ପଛକେ, ନିଜର ଲକ୍ଷ୍ୟପଥରୁ କେବେହେଲେ ବିଚ୍ୟୁତ ହୁଅନ୍ତି ନାହିଁ । ବରଂ ବିପତ୍ତି ମଧ୍ୟରେ ସେମାନଙ୍କର ଚରିତ୍ରିକ ନିଷ୍ଠା ଏବଂ ଦୃଢ଼ତା ଅଧିକ ପ୍ରକାଶ ପାଏ । ନିଜର ବ୍ୟକ୍ତିତ୍ୱ ବଳରେ ଯେ କୌଣସି ପ୍ରକାରର ତୋଫାନର ସମ୍ମୁଖୀନ ହେବାପାଇଁ ସେମାନେ ଆଗେଇ ଆସନ୍ତି । ତେଣୁ କବି ମହତ୍ତ୍ୱଲୋକଙ୍କୁ ସ୍ମରଣ କରି ଲେଖିଛନ୍ତି—

"କଣ୍ଠାଗତପ୍ରାଣ ହେଲେ ବଡ଼ ଲୋକ
କେତେବେଳେ ନ ଗୁଡ଼ଇ ନିଜ ଟେକ ।" (ଦୀନକୃଷ୍ଣ)

କର୍ତ୍ତବ୍ୟପାଳନ କରିବା ହେଉଛି ଜୀବନର ପ୍ରଧାନ ଧର୍ମ । ଏ ସଂସାର କେବଳ ଖେଳଘର ନୁହେଁ । ଯେଉଁମାନେ କର୍ମର ମହତ୍ତ୍ୱ ବୁଝନ୍ତି ନାହିଁ, ସେମାନେ ଜୀବନରେ ଦୁଃଖ ଭୋଗ କରନ୍ତି । ଏ ଜୀବନ ହେଉଛି ଅତ୍ୟନ୍ତ ଅଳ୍ପକାଳ ସ୍ଥାୟୀ । କାଳର ସାଗରରେ ଜୀବନ ହେଉଛି ସାମାନ୍ୟ ପାଣିଫୋଟକା ପରି । ମାତ୍ର ଏହି ସ୍ୱଳ୍ପକାଳର ଜୀବନକୁ ଯଥେଚ୍ଛାଚାରୀ ଭାବରେ ବିତାଇ ଦେବା ଉଚିତ ନୁହେଁ । ଉପଯୁକ୍ତ ସାଧନାଦ୍ୱାରା ଏହି ଧରାପୃଷ୍ଠରେ କର୍ମବୀର ହେବାକୁ ହେବ । ଜୀବନ ସ୍ୱପ୍ନମୟ ନୁହେଁ ଅଥବା ଛଳନାପୂର୍ଣ୍ଣ ମଧ୍ୟ ନୁହେଁ । ନାନା ସମସ୍ୟା ଓ ସଂଘର୍ଷରେ ପରିପୂର୍ଣ୍ଣ ଏହି ଜୀବନକୁ ମହତ୍ତ୍ୱପୂର୍ଣ୍ଣ କରିବାକୁ ହେବ । ଜୀବନର କଣ୍ଟକଶଯ୍ୟା

ପଥରେ କେବଳ ମହାପୁରୁଷମାନଙ୍କ ଜୀବନୀ ଏବଂ ତପସ୍ୟା ସାଧାରଣ ମନୁଷ୍ୟଙ୍କୁ ଯଥେଷ୍ଟ ସାହସ ଏବଂ ପ୍ରେରଣା ପ୍ରଦାନ କରିଥାଏ । ତେଣୁ ମନୁଷ୍ୟ ହେଉଛି କର୍ମାଧୀନ । ଦୁର୍ବଳ ଲୋକେ କେବଳ ଭାଗ୍ୟ ଉପରେ ନିର୍ଭର କରି ବିଡ଼ମ୍ବିତ ହୋଇଥାନ୍ତି । ଉତ୍କଳମଣି ସ୍ମରଣ କରାଇ ଦେଇଛନ୍ତି—

"ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।" (ଗୋପବନ୍ଧୁ)

ବାସ୍ତବିକ ମହାପୁରୁଷମାନଙ୍କର ଜୀବନକାହାଣୀ ଅଧ୍ୟୟନ ନ କଲେ କର୍ମ ଓ କର୍ତ୍ତବ୍ୟର ଗୁରୁତ୍ୱ ଉପଲବ୍ଧ ହେଇନାହିଁ । ସେଥିପାଇଁ ସାହିତ୍ୟରେ ଜୀବନଚରିତର ମୂଲ୍ୟବୋଧ ସ୍ୱୀକାର କରାଯାଇଛି । ଅସାଧାରଣ ବ୍ୟକ୍ତିମାନଙ୍କର ଜୀବନଚରିତ ଆଲୋଚନା କଲେ ସାଧୁସଙ୍ଗର ଫଳ ଅର୍ଜନ କରାଯାଇଥାଏ ।

ନୀତିବାକ୍ୟରେ କୁହାଯାଇଛି :—

ଅସାରେ ଖଳୁ ସଂସାରେ
ସାର ମେତଚ୍ଚତୁଷ୍ଟୟମ୍ ।
କାଶ୍ୟାଂ ବାସଃ ସତାଂ ସଙ୍ଗୋ
ଗଙ୍ଗାମ୍ଭଃ ଶମ୍ଭୁ ସେବନମ୍ ।

ଏହି ସଂସାର ହେଉଛି ମରଣଶୀଳ । ଏଠାରେ ଲୋଭମୋହର ବଶବର୍ତ୍ତୀ ହୋଇ ମନୁଷ୍ୟ ନାନା ଅଳୀକ କାର୍ଯ୍ୟରେ ବ୍ୟସ୍ତ ରହିଥାଏ । ମାତ୍ର ନିଜର ଜୀବନକାଳରେ ଯଦି ସେ ଚାରିଗୋଟି କାର୍ଯ୍ୟ କରିପାରେ, ତେବେ ସେ ଧନ୍ୟ । ତାହାହେଲା କାଶୀପୀଠରେ ବାସ, ଗଙ୍ଗାଜଳ ଗ୍ରହଣ, ସାଧୁମାନଙ୍କର ସଙ୍ଗ ଏବଂ ଈଶ୍ୱରସେବା । ସମସ୍ତଙ୍କ ଭାଗ୍ୟରେ ସାଧୁସେବା ଅଥବା ସଜ୍ଜନମାନଙ୍କର ସଙ୍ଗଲାଭର ସୁଯୋଗ ମିଳେ ନାହିଁ । ସେଥିପାଇଁ ସାଧାରଣ ଲୋକେ ସାଧୁସନ୍ଥ ଏବଂ ସତ୍ପୁରୁଷମାନଙ୍କର ଜୀବନଚରିତ ଅଧ୍ୟୟନ କରନ୍ତି । ସେମାନଙ୍କର ମହତ୍ତ୍ୱପୂର୍ଣ୍ଣ ଜୀବନୀ ଆଲୋଚନା କଲେ ସେହି ବ୍ୟକ୍ତିମାନଙ୍କର ସାନିଧ୍ୟଲାଭର ଫଳ ମିଳିଥାଏ । କାରଣ ନିଜର ଆଦର୍ଶ ଚରିତାବଳୀଦ୍ୱାରା ଏହି ମହାପୁରୁଷଗଣ ସାଧାରଣ ଲୋକସମାଜକୁ ପ୍ରଭାବିତ କରିଥାଆନ୍ତି । ଅବଶ୍ୟ ମହତ୍ ଜୀବନ ଏକ ଦୁର୍ଲ୍ଲଭ ଜୀବନ । ଯୁଗେ ଯୁଗେ ଦେଶେ ଦେଶେ ଏମାନେ ଆବିର୍ଭୂତ ହୋଇ ସମାଜର କଲ୍ୟାଣ ସାଧନ କଲେହେଁ ସର୍ବଦା ସାଧୁଲୋକ ସୁଲଭ ନୁହନ୍ତି । ସବୁ ସମାଜରେ ସାଧକ ଏବଂ ତପସ୍ୱୀ ଦେଖିବାକୁ ମିଳନ୍ତି ନାହିଁ । ସେହି ସମାଜ ଓ ଦେଶ ଭାଗ୍ୟବାନ୍ ଯେଉଁଠାରେ ମହାପୁରୁଷଗଣ ଆବିର୍ଭୂତ ହୋଇ ଜନମାନସର ମୁଖ ଉଜ୍ଜ୍ୱଳ କରିଥାଆନ୍ତି ।

ସାଧବୋ ନ ହି ସର୍ବତ୍ର
ଚନ୍ଦନଂ ନ ବନେ ବନେ ।

ସର୍ବତ୍ର ସାଧୁପୁରୁଷମାନେ ଖୋଜିଲେ ମିଳନ୍ତି ନାହିଁ । ସବୁ ଜଙ୍ଗଲରେ ଚନ୍ଦନ ଗଛ ନଥାଏ । ଅତଏବ ମହତ୍ପୁରୁଷମାନଙ୍କର ଜୀବନଚରିତ ସମସ୍ତଙ୍କର ଅନୁସନ୍ଧେୟ । ସଂସାରର ଗତିପଥରେ ମହାତ୍ମାମାନଙ୍କର ଜୀବନରୁ ପ୍ରେରଣା ଗ୍ରହଣ କରି ସାଧାରଣ ଲୋକ ନିର୍ବିଘ୍ନରେ ଯାତାୟାତ କରନ୍ତି । ମହତ୍ଲୋକଙ୍କୁ ଅନୁସରଣ କରିବା ହେଲା ମନୁଷ୍ୟର ଧର୍ମ । ନୀତିବାକ୍ୟ କୁହାଯାଇଛି—

'କର୍ତ୍ତବ୍ୟୋ ମହଦାଶ୍ରୟଃ ।'

ମହତ୍ଲୋକର ଆଶ୍ରୟ ଗ୍ରହଣ କରିବା ସର୍ବଦା ହିତକାରକ । କିନ୍ତୁ ଏପରି ସୌଭାଗ୍ୟ କେତେଜଣଙ୍କର ଭାଗ୍ୟରେ ଅବା ମିଳିଥାଏ । ଏହି କାରଣରୁ ସେମାନଙ୍କର ପ୍ରତ୍ୟକ୍ଷ ସଖ୍ୟଲାଭରୁ ବଞ୍ଚିତ ଲୋକମାନେ ଜୀବନଚରିତ ଅଧ୍ୟୟନ କଲେ କେତେକାଂଶରେ ଉପକୃତ ହୋଇ-ପାରିବେ ।

———

# ଜୀବନଚରିତ—ଇତିହାସ ଓ ସମ୍ବିକାଶ

ଜୀବନଚରିତ ସାହିତ୍ୟ ସଂସାରକୁ ବହୁଦିନପରେ ଆମଦାନୀ ହୋଇଅଛି ବୋଲି ଆଲୋଚକଗଣ ମନ୍ତବ୍ୟକ୍ତ କରିଥାନ୍ତି । କାରଣ ମନୁଷ୍ୟର ଜୀବନକାହାଣୀ ସମ୍ପର୍କରେ ଆଗ୍ରହ ପ୍ରକାଶ କରିବା ଏବଂ ସେଥିପାଇଁ ଗୁରୁତ୍ୱ ପ୍ରଦାନ କରିବା ସାଧାରଣ ଅନୁନ୍ନତ ସମାଜରେ ଦେଖାଯାଏନାହିଁ । ପରିସ୍ଥିତିମାନଙ୍କର ଚଳଣିପରି ସେହି ସମାଜର ଲୋକମାନେ ଏକ ଗତାନୁଗତିକ ଜୀବନନିର୍ବାହ କରିଥାନ୍ତି । ସଭ୍ୟତାର ପ୍ରଗତି ସଙ୍ଗେ ସଙ୍ଗେ ଲୋକରୁଚି, ଆଦର୍ଶ ଓ ଚଳଣିରେ ପରିବର୍ତ୍ତନ ସାଧିତ ହୁଏ । ବ୍ୟକ୍ତିଜୀବନର ମହତ୍ତ୍ୱ ଧରାପଡ଼ି ଯାଏ । ବ୍ୟକ୍ତିର ଅନନ୍ୟସାଧାରଣ ପ୍ରତିଭାଦ୍ୱାରା ସମାଜ ଅନୁପ୍ରାଣିତ ହୁଏ । ବ୍ୟକ୍ତିର ନେତୃତ୍ୱ ଅନୁସରଣ କରି ସମାଜ ଉପକୃତ ଏବଂ ପରିଚାଳିତ ହୁଏ । ତେଣୁ ସେହି ସେହି ବ୍ୟକ୍ତିମାନଙ୍କର ଜୀବନକାହାଣୀ ସମ୍ପର୍କରେ ସମାଜର ଲୋକେ ଆଗ୍ରହୀ ହେବା ସ୍ୱାଭାବିକ । ଜଣେ ବ୍ୟକ୍ତି ନିଜର ଅସାଧାରଣ ଶକ୍ତିମତ୍ତା, ଚରିତ୍ରବତ୍ତା, ବଳିଷ୍ଠ ବ୍ୟକ୍ତିତ୍ୱ ଦ୍ୱାରା କିଛି ଅସାଧ୍ୟସାଧନ କଲେ ଅନ୍ୟମାନେ ଚମତ୍କୃତ ହୁଅନ୍ତି ଏବଂ ସେହି ବ୍ୟକ୍ତି ବିଷୟରେ ଅଧିକ ଜାଣିବାପାଇଁ ଇଚ୍ଛା ପୋଷଣ କରନ୍ତି । ଅଥବା ଅତୀତରେ ଏହିପରି ଅଦ୍ଭୁତକର୍ମା ପୁରୁଷମାନଙ୍କର କାହାଣୀ ଲୋକମୁଖରେ ପ୍ରଚାରିତ ହୋଇ ଆସିଥାଏ । ପୁରୁଷାନୁକ୍ରମେ ତାହାକୁ ଶୁଣି ଶୁଣି ସେହି ବ୍ୟକ୍ତି ବିଷୟରେ କେତେକ ଅଭିନବ ଧାରଣା ପୋଷଣ କରିବା ସ୍ୱାଭାବିକ ହୋଇପଡ଼େ । ଏହି କାରଣରୁ ଜୀବନଚରିତ ଆଲୋଚନାପାଇଁ ସମାଜ ଓ ସାହିତ୍ୟରେ ଅବକାଶ ସୃଷ୍ଟି ହୁଏ । ଯୁଗେ ଯୁଗେ ସଭ୍ୟ ମନୁଷ୍ୟ ଏହି ପ୍ରଶ୍ନ ପଚାରି ଆସିଛି ଏବଂ ଅନ୍ୟର ବୈଶିଷ୍ଟ୍ୟ ଓ ମହତ୍ତ୍ୱକୁ ଅଭିନନ୍ଦନ ଜଣାଇ ଆସିଛି । ପୃଥିବୀର ଆଦିକାବ୍ୟ ବାଲ୍ମୀକିଙ୍କର ରାମାୟଣ ପାଠକଲେ ଏହା ସହଜରେ ଅନୁଭୂତ ହୋଇ ପାରିବ । ମହର୍ଷି ବାଲ୍ମୀକି କାହିଁକି ରାମାୟଣ ରଚନା କଲେ ? କେଉଁଠାରୁ ସେ ଏ ପ୍ରେରଣା ଲାଭକଲେ ? ରାମାୟଣ ବାଳକାଣ୍ଡରେ ଏ ସମ୍ପର୍କରେ ଏକ ବିଚିତ୍ର ଉପାଖ୍ୟାନ ଦେଖିବାକୁ ମିଳିଥାଏ । ଦିନେ ବାଲ୍ମୀକିଙ୍କ ଆଶ୍ରମରେ ମହର୍ଷି ନାରଦ ଉପସ୍ଥିତ ହେଲେ । ମହର୍ଷି ହେଉଛନ୍ତି ତ୍ରିକାଳଦର୍ଶୀ, ଭଗବାନଙ୍କର ପରମ ପ୍ରିୟ ସର୍ବଶ୍ରେଷ୍ଠ ଭକ୍ତ । ବାଲ୍ମୀକି ନାରଦଙ୍କୁ ଯଥୋପଯୁକ୍ତ ଅଭ୍ୟର୍ଥନା କଲେ ଏବଂ ଅତ୍ୟନ୍ତ ଭକ୍ତିଭାବରେ

ପଚାରିଲେ "ଏହି ମର୍ତ୍ତ୍ୟସଂସାରରେ ଏପରି କେହି ପୁରୁଷ ଅଛନ୍ତି ଯେ କି ବୀର, ଜିତେନ୍ଦ୍ରିୟ ସୁନ୍ଦର, ସତ୍ୟପ୍ରିୟ ଏବଂ ଗୁଣବାନ । ତାଙ୍କର ଜୀବନର ବ୍ରତ ହେଉଛି ଲୋକହିତ ସାଧନ । ସେ ପୁଣି ଶାସ୍ତ୍ରଜ୍ଞ ଓ ପଣ୍ଡିତ । ତାଙ୍କର ଶକ୍ତିମତ୍ତା ଦେଖି ଦେବତାମାନେ ମଧ୍ୟ ତ୍ରସ୍ତ ହେଉଥିବେ !" ବହୁ ଚିନ୍ତାକରି ନାରଦ ଏହି ପ୍ରଶ୍ନର ଉତ୍ତର ଦେଇଥିଲେ, ଏହିପରି ଗୁଣୀନ୍ଦ୍ର ହେଉଛନ୍ତି ରାମଚନ୍ଦ୍ର ଯେ କି ବହୁକାଳ ପୂର୍ବେ ଇକ୍ଷ୍ୱାକୁ ବଂଶ ମଣ୍ଡନ କରିଥିଲେ ।"

ଏଠାରେ ଉଦାହରଣ ଛଳରେ ରାମାୟଣର ସେହି ଅଂଶ ଉଦ୍ଧାର କଲେ ଅସଙ୍ଗତ ହେବନାହିଁ ।

"ପଚାରିଲେ ତପୋଧନ ବାଲମୀକି ଋଷି
ସୁବକ୍ତା ମୁନିବର ନାରଦଙ୍କୁ ହସି,
"କହ ଦେବ ଋଷି ମୋର ତୁଟାଇ ସଂଶୟ
ମର୍ତ୍ତ୍ୟଲୋକେ କିଏ ଏବେ ବୀର ଜିତେନ୍ଦ୍ରିୟ ।

କିଏ ସେ ସୁନ୍ଦର ସତ୍ୟପ୍ରିୟ ଗୁଣଧାରୀ
ଦୃଢ଼ବ୍ରତ କ୍ରୋଧଶୂନ୍ୟ ଲୋକହିତକାରୀ ?
କିଏ ପୁଣି ହିଂସାହୀନ ଶାସ୍ତ୍ରେ ସୁପଣ୍ଡିତ
କାହାର ବୀରତ୍ୱ-ରୋଷେ ଦେବେ ହୁଅନ୍ତି ଭୀତ ?
ଏମନ୍ତେ କେ ପୁ-ପୁରୁଷ କହ ମହାମୁନି,
ତୁମ୍ଭେ ତ ସର୍ବଜ୍ଞ ପୁଣି ଅଟ ମହାଜ୍ଞାନୀ ।

ଜାଣିବାକୁ ଏହା ମୋର ବଢ଼ୁଛି ଆଗ୍ରହ
ପ୍ରକାଶି ସେ ପୁଣ୍ୟକଥା ତୁଟାଅ ସନ୍ଦେହ ।
ବାଲମୀକିବାଣୀ ଶୁଣି ତ୍ରିଲୋକଜ୍ଞ ମୁନି
ହରଷେ ବୋଇଲେ ଶୁଣ କହୁଛି ବଖାଣି
ଯେ ସକଳ ଗୁଣ କଥା କହିଲ ହେ ତୁମ୍ଭେ
ଏକାଧାରେ ସେ ସକଳ କାହିଁକି ସମ୍ଭବେ ?

ବହୁଚିନ୍ତା ପରେ ଏବେ ହେଲା ମୋ ସ୍ମରଣ
ଏମନ୍ତ ପୁରୁଷଛନ୍ତି ଜଣେ ମାତ୍ର ଜାଣ
ଇକ୍ଷ୍ୱାକୁ ବଂଶରେ ଜାତ ନାମ ରାମଚନ୍ଦ୍ର
ତାଙ୍କ ସମ ଭୂମଣ୍ଡଳେ ନାହିଁ କେ ଗୁଣୀନ୍ଦ୍ର ।

ମହାଧନୁର୍ଦ୍ଧର ବାଗ୍ମୀ ଗୁଣଗଣ ଖଣି
ଶତ୍ରୁହନ୍ତା ମିତମନ୍ତ୍ର ବୀରଚୂଡ଼ାମଣି ।
ଆଜାନୁଲମ୍ବିତ ବାହୁ ପ୍ରଶସ୍ତ ଲଲାଟ
ବିଶାଳ ନୟନ ତାଙ୍କ ପ୍ରତାପ ବିରାଟ ।

ପର୍ୟଶଲେ—

ପୁଣ୍ୟାତ୍ମା ସେ ପ୍ରଜାପ୍ରିୟ ଲକ୍ଷ୍ମୀବନ୍ତ ଧୀର
ଶସ୍ତ୍ରଶାସ୍ତ୍ର ସୁପଣ୍ଡିତ ସତ୍ୟସନ୍ଧ ବୀର ।
ଶ୍ୟାମଳବରଣ ଦେହ ଅତି ସୁଶୋଭନ ।
ରାମସମ ଦୀପ୍ତିଧାରୀ ନାହିଁ ତ୍ରିଭୁବନ ।
ପାରାବାରେ ନଦୀଗଣ ଆଶ୍ରିଲା ପରାୟେ
ଆନ୍ତି ସଦା ସାଧୁଜନେ ଶ୍ରୀରାମ ଆଶ୍ରୟେ ।
କୌଶଲ୍ୟାନନ୍ଦନ ଏହି ରାମ ଅଭିରାମ
ଗାମ୍ଭୀର୍ଯ୍ୟେ ସମୁଦ୍ର, ଧୈର୍ଯ୍ୟେ ହିମାଳୟ ସମ ।
ବିଷ୍ଣୁ ସମ ପରାକ୍ରମେ କ୍ରୋଧେ କାଳାନଳ
କ୍ଷମାରେ ବସୁଧା ଦାନେ କୁବେରଙ୍କ ତୁଲ ।
ସତ୍ୟେ ସ୍ୱୟଂ ଧର୍ମ ସମ ସେ ମହାପୁରୁଷ
ସର୍ବଗୁଣ ବିଭୂଷିତ ନାହିଁ ଦୋଷ ଲେଶ ।
ଏମନ୍ତ ସୁଗୁଣଧାରୀ ପ୍ରଜାହିତବ୍ରତ ।

× × ×

(ସାରସ୍ୱତ ରାମାୟଣ-ବାଳକାଣ୍ଡ)

ଏହାପରେ ନାରଦ ସମସ୍ତ ରାମାୟଣର କାହାଣୀ ଏବଂ ରାମଙ୍କର ଅଦ୍ଭୁତ ବ୍ୟକ୍ତିତ୍ୱ ଏବଂ ରଶନିକ ମର୍ଯ୍ୟାଦା ସମ୍ପର୍କରେ ବାଲ୍ମୀକିଙ୍କ ଆଗରେ ବର୍ଣ୍ଣନା କରିଛନ୍ତି । ପରିଶେଷରେ ଲଙ୍କାର ରାଜା ରାବଣକୁ ବଧକରି ରାମଚନ୍ଦ୍ର ଅଯୋଧ୍ୟା ଫେରିଆସିଲେ ଏବଂ ସେଠାରେ ତାଙ୍କର ଆଦର୍ଶ ରାଜ୍ୟଶାସନ ପ୍ରଣାଳୀ ମଧ୍ୟ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ।

"ଶ୍ରୀରାମ ରାଜତ୍ୱେ ହୃଷ୍ଟ ପରଜା ନିଚୟ
ନୀରୋଗ ନିଷ୍ପାପ ପୁଣି ତୁଷ୍ଟ ଅତିଶୟ ।
କାହିଁ ନ ଦେଖନ୍ତି କେହି ସନ୍ତାନ ମରଣ
ରମଣୀଏ ନ ଭୋଗନ୍ତି ବୈଧବ୍ୟ କଷଣ ।
ଅନଳ, ଅନିଳ, ଜ୍ୱର, ଦୁର୍ଭିକ୍ଷ ତସ୍କର
ଏ ଆଦିର ଭୟ ତଳେ ନାହିଁତ କାହାର ।
ଜଳେ ଝାସି କେହୁ ପ୍ରାଣୀ ନତେଜେ ଜୀବନ
ନଗର ସାମ୍ରାଜ୍ୟ ସଦା ଧନଧାନ୍ୟେ ପୂର୍ଣ୍ଣ ।
ସୁଖ ଶାନ୍ତି ସଉଭାଗ୍ୟ ସତ୍ୟଯୁଗ ପ୍ରାୟେ
ଚଳନ୍ତି ପ୍ରକୃତିପୁଞ୍ଜ ନିଶ୍ଚିନ୍ତ ହୃଦୟେ ।
ମହାଯଶା ମହୀପତି ରାମ ସୀତାନାଥ

ଶତ ଅଶ୍ୱମେଧ ଯଜ୍ଞ କରିବେ ନିଶ୍ଚିତ ।
ବେଦଜ୍ଞ ବ୍ରାହ୍ମଣଗଣେ ପୁଣି ନାନା ଦ୍ୱିଜେ
ଅସଂଖ୍ୟ ଗୋ-ଧନ ଦାନ ଅରପିବେ ନିଜେ ।
ବ୍ରାହ୍ମଣାଦି ଚଉବର୍ଣ୍ଣେ ଦେଇ ସନମାନ
ଶତଗୁଣ ରାଜବଂଶ କରିବେ ସ୍ଥାପନ ।
ଏଗାର ହଜାର ବର୍ଷ ପାଳି ପ୍ରଜାକୁଳ
ମଣ୍ଡିବେ ହରଷେ ଯାଇ ବଇକୁଣ୍ଠ ପୁର ।"

(ସାରସ୍ୱତ ରାମାୟଣ-ପ୍ରଥମସର୍ଗ)

ନାରଦ ମହର୍ଷି ରାମଙ୍କର ଆଦର୍ଶ ଚରିତ ବର୍ଣ୍ଣନା କରିବା ଫଳରେ ଆଦିକବି ବାଲ୍ମୀକି ଅତ୍ୟନ୍ତ ଅନୁପ୍ରାଣିତ ହୋଇଥିଲେ । ପ୍ରସଙ୍ଗକ୍ରମେ ଭରଦ୍ୱାଜ ମୁନିଙ୍କ ସହିତ ଆଲୋଚନାକରି ଆଶ୍ରମରେ ପହଞ୍ଚିବା ସଙ୍ଗେ ସଙ୍ଗେ ଚତୁର୍ମୁଖ ବ୍ରହ୍ମା ସେଠାରେ ଉପସ୍ଥିତ ହୋଇ ମୁନିଙ୍କୁ ଉତ୍ସାହିତ କଲେ । ସେ କହିଲେ—

ରାମ ସୀତା ହନୁମନ୍ତି ଅସୁର ବୃତ୍ତାନ୍ତ
ଯା କିଛି ତୁମକୁ ଋଷି ନୋହିଛି ବିଦିତ ।
ମୋର ଆଶୀର୍ବଳେ ଜ୍ଞାତ ହୋଇବ ସେମାନ
ଅନ୍ୟଥା ନୋହିବ କେବେ ଏକଥା ପ୍ରମାଣ ।
ଯେତେକାଳ ଥିବ ଏହି ନଦୀ ପର୍ବତ
ସେତେକାଳ ଥିବ ତୁମ୍ଭ ଶ୍ରୀରାମ ଚରିତ ।

(ସାରସ୍ୱତ ରାମାୟଣ-ଦ୍ୱିତୀୟସର୍ଗ)

ରାମାୟଣ ଯୁଗରେ ଯେଉଁ ମହତ୍ତ୍ୱପୂର୍ଣ୍ଣ ଘଟଣା ଘଟିଯାଇଥିଲା, କବି ବାଲ୍ମୀକି ତାହାକୁ ଲିପିବଦ୍ଧ କଲେ । ଏହି ପୁରାଣଗୁଡ଼ିକରୁ ସେକାଳର ଇତିହାସ ସମ୍ପର୍କରେ ଅନେକ ସୂଚନା ମିଳୁଥିଲେ ହେଁ ପୁରାଣକାରମାନେ ଐତିହାସିକ ନୁହଁନ୍ତି । ସେମାନେ ଇତିହାସ ଲିପିବଦ୍ଧ କରିବା ପାଇଁ ପୁରାଣ ରଚନା କରି ନଥିଲେ । ବରଂ ପୁରାଣ ମାଧ୍ୟମରେ ସେକାଳର ଆଦର୍ଶ ଚରିତଗୁଡ଼ିକ ଲିପିବଦ୍ଧ ହୋଇଅଛି । ଅସଂଖ୍ୟ ସାଧୁ ସନ୍ଥ ମୁନିଋଷିମାନଙ୍କର କାହାଣୀ ଯେପରି ପୁରାଣରେ ପୃଷ୍ଠା ମଣ୍ଡନ କରିଅଛି, ସେହିପରି ବହୁ ଆଦର୍ଶ ନରନାରୀଙ୍କର ଜୀବନଚରିତ୍ର ମଧ୍ୟ ପୁରାଣ ମାଧ୍ୟମରେ ଅନନ୍ତକାଳ ଧରି ପ୍ରଚଳିତ ହୋଇ ଆସିଅଛି । ଜୀବନଚରିତର ମହତ୍ତ୍ୱ ହୃଦୟଙ୍ଗମ କରିଥିଲେ ବାଲ୍ମୀକିଙ୍କ ଆଗରେ ନାରଦ କେବେହେଲେ ଘୋଷଣା କରି ନଥାନ୍ତେ—

ପଢ଼ିବ ଯେ ଲୋକ ଏହି ପୁଣ୍ୟ ରାମକଥା
ଧ୍ୱଂସ ହେବ ତାର ଶତଜନ୍ମ ପାପବ୍ୟଥା ।

ପୁତ୍ର ପୌତ୍ର ଦାସଦାସୀ ସଙ୍ଗେ ନାନା ସୁଖେ
ଭୁଞ୍ଜି ଇହକାଳ ଶେଷେ ଯିବ ଦିବ୍ୟଲୋକେ ।
ବ୍ରାହ୍ମଣ ପଢ଼ିଲେ ବାଗ୍ମୀ କ୍ଷତ୍ରିୟ ଭୂପତି
ବୈଶ୍ୟ ପାଠ କଲେ ହୁଏ ବାଣିଜ୍ୟେ ଉନ୍ନତି ।
ବଢ଼ଇ ମହତ୍ତ୍ୱ ବୁଦ୍ଧି ପଢ଼େ ଯେବେ ଶୂଦ୍ର
ମହତ୍ତ୍ୱ ସଭାରେ ବସେ ହେଲେ ହେଁ ସେ କ୍ଷୁଦ୍ର ।"

(ଭାରତୀୟ ରାମାୟଣ—ପ୍ରଥମ ଭାଗ)

ପୁରାଣରେ ବର୍ଣ୍ଣିତ ଅସଂଖ୍ୟ ଘଟଣା ନିଶ୍ଚୟ କବି କଳ୍ପନା ପ୍ରସୂତ । ମାତ୍ର ଲୋକସ୍ମୃତି ଓ କିମ୍ବଦନ୍ତୀରେ ପ୍ରଚଳିତ ବହୁ ସାଧୁ, ସନ୍ଥ, ମୁନି, ଋଷି, ସତୀ, ବିଚକ୍ଷଣ ରାଜାମାନଙ୍କ ଏବଂ ଆଦର୍ଶ ନରପତିମାନଙ୍କ ଜୀବନଚରିତ ପୁରାଣମାନଙ୍କରେ ପ୍ରଚାରିତ ହୋଇ ଆସିଛି । ଆଧୁନିକ ଅର୍ଥରେ ସେଗୁଡ଼ିକ ଖାଣ୍ଟି ଜୀବନଚରିତ ଭାବରେ ଆଖ୍ୟାତ ନ ହେଲେ ହେଁ ତନ୍ମଧ୍ୟରେ ସେ ମହତ୍‌ଲୋକଙ୍କର କାହାଣୀର ମୂଳରୂପ ଆତ୍ମଗୋପନ କରିଅଛି ଏଥିରେ ସନ୍ଦେହ ନାହିଁ ।

ପୃଥିବୀର ପ୍ରତ୍ୟେକ ସମାଜରେ ବହୁକାଳ ପର୍ଯ୍ୟନ୍ତ ଧର୍ମର ପ୍ରଭାବ ଲକ୍ଷ୍ୟ କରାଯାଏ । ତେଣୁ ଧର୍ମକ୍ଷେତ୍ରରେ ଅବତୀର୍ଣ୍ଣ ସନ୍ଥ ଓ ମହାପୁରୁଷମାନଙ୍କ ଜୀବନକାହାଣୀ ସାଧାରଣ ଲୋକଙ୍କୁ ପ୍ରଭାବିତ କରିବା ସ୍ୱାଭାବିକ । ତେଣୁ ପୃଥିବୀର ପ୍ରତ୍ୟେକ ଧର୍ମ ସାହିତ୍ୟରେ ଏହିପରି ଜୀବନ-ଚରିତ ବହୁପରିମାଣରେ ଦେଖିବାକୁ ମିଳେ । ବୌଦ୍ଧଧର୍ମ ପ୍ରଚାରିତ ସାହିତ୍ୟରେ ଅଥବା ଜୈନଧର୍ମର ପ୍ରଚାରିତ ସାହିତ୍ୟରେ ଯଥାକ୍ରମେ ବୁଦ୍ଧଦେବ ଓ ମହାବୀରଙ୍କର ଜୀବନଚରିତ ଯେପରି ପ୍ରତିଫଳିତ, ସେହିପରି ଖ୍ରୀଷ୍ଟିୟାନମାନଙ୍କର ଧର୍ମଶାସ୍ତ୍ର ବାଇବେଲରେ ସେହି ଧର୍ମର ବହୁ ସନ୍ଥମାନଙ୍କର ପରିଚୟ ମିଳେ । ଏତଦ୍‌ବ୍ୟତୀତ ମଧ୍ୟଯୁଗୀୟ ସମାଜରେ ଯେଉଁ ବୀରପୁରୁଷମାନେ ନିଜର କରଣୀଦ୍ୱାରା ସମାଜରେ ଚହଳ ସୃଷ୍ଟି କରିଥିଲେ, ସେମାନେ କାଳକ୍ରମେ କିମ୍ବଦନ୍ତୀରେ ପରିଣତ ହୋଇଗଲେ । ତେଣୁ ପ୍ରଥମ କାଳର ଏହି କିମ୍ବଦନ୍ତୀ-ଗୁଡ଼ିକ ମଧ୍ୟ ଜୀବନଚରିତର ଆଦ୍ୟ ଉନ୍ମେଷକ ବୋଲି ଆଲୋଚକମାନେ ନିର୍ଦ୍ଧାରଣ କରିଅଛନ୍ତି । Biography ବା ଜୀବନଚରିତ ଶିରୋନାମାରେ ଗୋଟିଏ ଜ୍ଞାନ-କୋଷ ଯେପରି ମନ୍ତବ୍ୟ କରିଛନ୍ତି, ତାହା ଏଠାରେ ଉଲ୍ଲେଖନୀୟ ।

"The seeds of biography are to be found in early legendary accounts of rulers and heroes, such as the stories of the patriarcho and Kings of Israel in the old Tesatment and of the Greek, Germanic and Celtic heroes in epic and saga. Another type of biography can be traced in the records of the teaching and deeds of saints and sages, found in the prophetic books of the Bible, the sayings of

the Buddha, the analects of Confucius and the words of the seven wise men of Greece. The accounts of the life and teaching of Socrates given by Plato and Xenophen may be regarded as a development of this kind of record of a great teacher."

(Chamber's Encyclopaedia—vol—II)

ବାଇବେଲ ଏକ ଧର୍ମଗ୍ରନ୍ଥ ହେଲେ ହେଁ ଏଥିରେ ବହୁ ଯାଜକ ଏବଂ ଅଲୌକିକ ବ୍ୟକ୍ତିଙ୍କର ପରିଚୟ ଦିଆଯାଇଛି । ବିଶେଷତଃ ମହାପୁରୁଷ ଯୀଶୁଙ୍କର ଜୀବନଚରିତ ନାନାଭାବରେ ଏଥିରେ ସ୍ଥାନଲାଭ କରିଛି । ବାଇବେଲର ଯେ କୌଣସି ଅଧ୍ୟାୟ ଆଲୋଚନା କଲେ ଏହାର ପ୍ରମାଣ ମିଳି ପାରିବ । ଯୀଶୁଙ୍କର ଆଗମନ ପୂର୍ବରୁ 'ଜନ୍' ନାମରେ ଜଣେ ସନ୍ଥ ଆବିର୍ଭୂତ ହୋଇ ପ୍ରଚାର କରୁଥିଲେ । ସେ ଏକ ଶୂନ୍ୟ ବାଣୀ ଶୁଣିବାକୁ ପାଉଥିଲେ ଯେ ଭଗବାନ ଯୀଶୁ ଅବିଳମ୍ବେ ଅବତୀର୍ଣ୍ଣ ହେବେ । ତେଣୁ ତାଙ୍କପାଇଁ ମାର୍ଗ ପ୍ରସ୍ତୁତ କରିବାକୁ ହେବ । ଯୀଶୁ ନିଜେ ଅଲୌକିକ ବ୍ୟକ୍ତିତ୍ୱ ହେଲେ ହେଁ ଲୋକାଚାରକୁ ସମ୍ମାନ କରି ସେ ସନ୍ଥ 'ଜନ୍'ଙ୍କଦ୍ୱାରା ଦୀକ୍ଷିତ ହୋଇଥିଲେ ଏବଂ ଅତ୍ୟନ୍ତ ସଙ୍କୋଚ ମନରେ ଜନ୍ ଏ କାର୍ଯ୍ୟ ସମାପନ କରିଥିଲେ । ବାଇବେଲରୁ ଏହିପରି ବହୁ ଉଦାହରଣ ଗ୍ରହଣ କରାଯାଇପାରିବ ।

"While they were living in Nazareth, John the Baptist began preaching out in the Judean wilderness. His constant theme was, "Turn from your sins·····Turn to God·····for the kingdom of Heaven is coming soon."

Isaiah the prophet had told about John's ministry centuries before ! He had written, "I hear a shout from the wilderness, prepare a road for the Lord—Straighten out the path where he will walk."

John's clothing was woven from Camel's hair and he wore a leather belt, his food was locusts and wild horey."

People from Jerusalm and from all over the Jordan valley and in fact, from every seticon of Juden went out to the wilderness to hear him preach.

And when they confessed their sins, he baptized them in the Jordan River.

But when he saw many Pharisees and Sadducees coming to be baptized he denounced them. "You sons of snakes, he warned ! 'Who said that you could escape the coming warth of God ?

Before being baptized prove that you have Turned from sin by doing worthy deeds.

Don't try to get by as you are, thinking we are safe for we are Jews—descendants of Abraham. That proves nothing. God can change these stones here in to Jews !

And even now the axe of God's judgement is poised to chop down every unproductive tree. They will be chopped and burned.

With water I baptized those who repent of their sins, but someone else is coming far greater than I am, so great that I am not worthy to carry his shoes ! He shall baptize you with the Holy spirit and with fire.

He will separate the chaff from the grain, burning the chaff with never—ending fire, and storing away, the grain.

Then Jesus want from his home in Galilee to the Jordan River to be baptized there by John.

John did not went to do it. 'This is not proper ! he said, I am the one who needs to be baptized by you.'

But Jesus said, 'Please do it, for I must do all that is right.' So then John baptized him.

After his baptism, as soon as jesue came up out of the water, the heavens were opened to him and he saw the spirit of God coming down in the form of a dove.

Anda voice from heaven said, "This is my beloved son, and I am wonderfully pleased with him."

(The Living New Testament. Ch. 3—1971) ଏହିପରି ଜୀବନ ଚରିତ ସମ୍ପର୍କରେ ଆଉ ଏକ ଏନସାଇକ୍ଲୋପେଡ଼ିଆଙ୍କର ମତ ହେଲା :—

ପ୍ରାଚୀନ ବାଇବେଲରେ ଶ୍ରେଷ୍ଠ ଜୀବନଚରିତର ମୌଳିକ ଉତ୍ସ ନିହିତ ଅଛି । ଏକଥା ସ୍ୱୀକାର କରିବାକୁ ହେବ । ପରବର୍ତ୍ତୀକାଳରେ ପ୍ଲୁଟାର୍କଙ୍କ ଲିଖିତ ଜୀବନ ଚରିତ ମହାକବି ସେକ୍‌ସପିୟରଙ୍କ ରୋମୀୟ ଇତିହାସ ସମ୍ବଳିତ ନାଟକ ଲେଖିବା ପାଇଁ ଉପାଦାନ ଯୋଗାଇଥିଲା । S. Jerome ଯେତେବେଳେ "Illustrious Men" ପୁସ୍ତକ ପ୍ରଣୟନ କଲେ, ସେତେବେଳେ ଚର୍ଚ୍ଚର ଇତିହାସ ଓ ପରଂପରାରୁ ଗୃହୀତ ତଥ୍ୟାବଳୀ ତାଙ୍କର ପ୍ରଧାନ ସାମଗ୍ରୀ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଅତୀତରେ ରାଜବଂଶ ଏବଂ ଜମିଦାର ପରିବାରରେ ଧାରାବାହିକ ବଂଶାନୁଚରିତ ଲିପିବଦ୍ଧ କରିବାର ବ୍ୟବସ୍ଥା ଥିଲା । ଅନେକ ସୁପୁରୁଷ ଦୈନିକ ଲିପି ମଧ୍ୟ ଲେଖି ରଖୁଥିଲେ । ଅତୀତରେ ପ୍ରଚଳିତ ଚିଠି, ଦୈନିକ ଲିପି ପ୍ରଚଳିତ କିମ୍ବଦନ୍ତୀ, ଅଥବା ବଂଶାନୁଚରିତ ପ୍ରଭୃତି ଅବଲମ୍ବନ କରି ପରବର୍ତ୍ତୀକାଳରେ ଲେଖକମାନେ ଜୀବନଚରିତ ଲେଖିବାପାଇଁ ଉଦ୍ୟମ କରିଥିଲେ ।

(Harmsworths Universal Encyclopedia—Vol-2)

ତେବେ ଜୀବନଚରିତ କ'ଣ ? କାହିଁକି ଜୀବନଚରିତ ବା ଆତ୍ମଚରିତ ଲେଖାଯାଏ ? ଏହାର ସାହିତ୍ୟ ଓ ସମାଜରେ ଉପଯୋଗିତା କ'ଣ ? ଏହିପରି ନାନା ସମସ୍ୟାର ସମ୍ମୁଖୀନ ହେବା ପାଠକ ପକ୍ଷରେ ସ୍ୱାଭାବିକ । ପୃଥିବୀ ବିଖ୍ୟାତ ଇଂରେଜୀ ବିଶ୍ୱକୋଷ ଏ ସମ୍ପର୍କରେ ଦୀର୍ଘ ଆଲୋଚନା କରିଛନ୍ତି । ଯଦିଚ ଏଯୁଗର ବିଖ୍ୟାତ ନାଟ୍ୟକାର ଜର୍ଜ ବର୍ଣ୍ଣାଡ଼ସ୍ କହିଛନ୍ତି—"All autobiographies are lies."

ସବୁ "ଆତ୍ମଚରିତ" କେବଳ ମିଛ କଥା । ମାତ୍ର 'ସ'ଙ୍କର ଏହି ମତାମତ ପ୍ରତି ସମର୍ଥନ ଜଣାଇବାର କୌଣସି କାରଣ ନାହିଁ । ଆତ୍ମଜୀବନୀର ଲେଖକ ବେଳେ ବେଳେ କେତେକ ଅନୁଭୂତକୁ ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ ପ୍ରକାଶ କରିବା କଷ୍ଟକର ହେଉଥିବ ଅଥବା କୌଣସି ଘଟଣାକୁ ଅତିରଞ୍ଜିତ କରିବାକୁ ସେ କୁଣ୍ଠିତ ହେଉନଥିବେ, ମାତ୍ର ଏହା କେବଳ ବ୍ୟତିକ୍ରମ ମାତ୍ର । ଆତ୍ମଚରିତର ମୂଲ୍ୟବୋଧ ଆମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବ । ଆତ୍ମଚରିତରେ ଲେଖକ ନିଜର ଆତ୍ମସମୀକ୍ଷା କରିବାକୁ ସୁଯୋଗ ଲୋଡ଼ିଥାଏ । ଘଟଣା ବହୁଳ ଜୀବନର ନାନା କାର୍ଯ୍ୟର କାରଣ ଖୋଜିବା ପାଇଁ ସେ ସମର୍ଥ ହୋଇଥାଏ ।

ନିଜର କାର୍ଯ୍ୟାବଳୀର ଯଥାର୍ଥ୍ୟ ପ୍ରତିପାଦନ କରିବାପାଇଁ ସେ ଉଦ୍ୟମ କରିଥାଏ । ମହତ୍ତ୍ୱ ଲୋକେ ନିଜର ଆତ୍ମଚରିତ ଲେଖିଥାଆନ୍ତି ସମାଜର କଲ୍ୟାଣ ପାଇଁ, ଅନ୍ୟକୁ ଉପକୃତ କରିବାପାଇଁ । ବେଳେ ବେଳେ ସେମାନଙ୍କର ଅନୁଭୂତି ଅନ୍ୟର ଉପକାରରେ ଲାଗିପାରେ, ଏହି ଭରସାରେ ଆତ୍ମଚରିତ ଲେଖି ସେମାନେ ସୁଖୀ ମଧ୍ୟ ହୋଇଥାଆନ୍ତି । ଉଦାହରଣ ସ୍ୱରୂପ ୧୯୦୩ରେ ପ୍ରକାଶିତ "The story of my life" ବିଶ୍ୱବିଖ୍ୟାତ ଅନ୍ଧୁଣୀ ଏବଂ କାଲୁଣୀ ହେଲେନକେଲର ନିଜର ଜୀବନୀ ପ୍ରକାଶ କରି ପୃଥିବୀର ଏହି ଅସହାୟ ସମାଜ ମନରେ ଗଭୀର ସାନ୍ତ୍ୱନା ଓ ସାହସ ଆଣିଦେଲେ । ସେମାନେ ହତାଶ ନହୋଇ ଜୀବନ ଯୁଦ୍ଧରେ ଅଗ୍ରସର ହେଲେ ଅନ୍ୟମାନଙ୍କପରି ମଧ୍ୟ ଏକ ସୁଖୀ, ସମୃଦ୍ଧ ଏବଂ ମହତ୍ତ୍ୱର ଜୀବନଯାପନ କରିପାରିବେ । ଅବଶ୍ୟ ଆତ୍ମଚରିତ ଲେଖିବାର ମୂଳରେ ଆତ୍ମାଭିମାନ ମଧ୍ୟ ଲୁକ୍‌କାୟିତଭାବରେ ଥାଏ । ନିଜକୁ ଜଣେ ଗୁରୁତ୍ୱପୂର୍ଣ୍ଣ ଲୋକ ବୋଲି ନ ଭାବିଲେ କିଏ କାହିଁକି ଆତ୍ମଚରିତ ଲିପିବଦ୍ଧ କରିବାକୁ ଯିବ । ନିଜର ଜୀବନ ଅନ୍ୟମାନଙ୍କ ଅପେକ୍ଷା ଅସାଧାରଣ ଏହି ଭାବନା ଜାଗ୍ରତ ନହେଲେ ସେ ନିଜର କାହାଣୀ ଅନ୍ୟମାନଙ୍କୁ କହିବ କାହିଁକି ? ଏଥିସହିତ ବନ୍ଧୁ ମଧ୍ୟରେ ନିଜର ଗୌରବ କାହାଣୀକୁ ପ୍ରଚାର କରିବାର ମନୋଭାବ ମଧ୍ୟ କାର୍ଯ୍ୟ କରୁଥାଏ । ନିଜେ ଯେପରି ଇତିହାସର ନିୟନ୍ତା, ସମାଜର ପୃଷ୍ଠପୋଷକ ଏବଂ ରାଜନୀତି, ସାହିତ୍ୟ, ସମାଜସଂସ୍କାର ପ୍ରଭୃତିର ସଂଚାଳକ, ଏହି ଭାବ ପ୍ରତିପାଦନ ପାଇଁ ମଧ୍ୟ ଆତ୍ମଜୀବନୀ ଲେଖାଯାଇଥାଏ ।

ତେବେ ମନୁଷ୍ୟ ସ୍ୱାଭାବିକ ମହତ୍ତ୍ୱ ଲୋକମାନଙ୍କୁ ପୂଜା କରିବାପାଇଁ ସୁଖପାଏ । ସେମାନଙ୍କ ଉଚ୍ଚଚିନ୍ତା, ନିଷ୍କଳଙ୍କ ଚରିତ୍ର, ଗଭୀର ଆତ୍ମତ୍ୟାଗ ପ୍ରଭୃତି ସଦ୍‌ଗୁଣ ପ୍ରତି ଆକୃଷ୍ଟ ହୋଇପଡ଼େ । ଯେତେକାଳ ପର୍ଯ୍ୟନ୍ତ ମନୁଷ୍ୟ ମଧ୍ୟରେ ଏହି ଭାବ ରହିଥିବ, ସେତେକାଳଯାଏଁ ସାହିତ୍ୟରେ ଆତ୍ମଚରିତ ଏକ ଆକର୍ଷଣୀୟ ବିଭାଗ ହୋଇ ପ୍ରଚ୍ଚରିତ ହେଉଥିବ । ତେଣୁ ଇଂରେଜୀ ଜ୍ଞାନକୋଷ କହିଛନ୍ତି—

"Meanwhile among all nations as long as the capacity for less worship endures, as long as human beings desire to draw near to other souls, as long as they wish vicariously to broaden experience, the narrative of another's life at firsthand by himself will remain one of the most popular literary forms".

(Enyclopaedia Britannica—Vol I. P. 783-1946)

ଏହି କାରଣରୁ ପୃଥିବୀର ସୁନାମଧନ୍ୟ ଲେଖକ, କଳାବିତ୍, ରାଜନୀତିଜ୍ଞ ବ୍ୟବସାୟୀ ପ୍ରଭୃତି ନିଜ ନିଜର ଆତ୍ମଚରିତ ଲେଖାଯାଇ ଅଛନ୍ତି । କେବଳ ସେତିକି ନୁହେଁ, ଏହି ଆତ୍ମଚରିତ ଗୁଡ଼ିକରୁ କେତେକ ଅତି ଉଚ୍ଚାଙ୍ଗ ସାହିତ୍ୟ ହିସାବରେ ମଧ୍ୟ ଆଦୃତ ହୋଇଅଛି । ବିଶେଷତଃ ଗେଟେ, ରୁଷୋ, ଟଲ୍‌ଷ୍ଟୟ, ଡ଼ଷ୍ଟୋଭସ୍କି, ରସ୍କିନ, ଅମାସ ହକ୍‌ସଲେ, ଯେ

ଏସ୍. ମିଲ୍ ପ୍ରଭୃତିଙ୍କର ଆତ୍ମଚରିତ ସାହିତ୍ୟରେ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଏ ଯୁଗର ବ୍ୟବସାୟୀ ହେନେରି ଫୋର୍ଡ଼, ଲେଖକ ରୁଡ୍ୟାର୍ଡ଼ କିପ୍ଲିଙ୍ଗ, ହେନେରି ଜେମସ୍, ରାଜନୀତିଜ୍ଞ ଗାନ୍ଧୀ ଏବଂ ହିଟଲର ପ୍ରଭୃତିଙ୍କର ଆତ୍ମଚରିତ ବିଶ୍ୱବିଖ୍ୟାତ ହୋଇଅଛି ।

ତେବେ ସାହିତ୍ୟରେ ଆତ୍ମଚରିତ ଅପେକ୍ଷା ଜୀବନଚରିତ ଅଧିକ ଦେଖିବାକୁ ମିଳେ । ଜୀବନଚରିତର ଇତିହାସ ମଧ୍ୟ ଅତି ପ୍ରାଚୀନ । ଆତ୍ମଚରିତର ଲେଖକ କେତେକ କଥା ଗୋପନୀୟ ରଖିବାକୁ ବାଧ୍ୟ ହୁଏ । ମାତ୍ର ଜୀବନ ଚରିତରେ ଗୋପନ କରିବାର କିଛି ନାହିଁ । ବରଂ ଲେଖକ ଅତ୍ୟନ୍ତ ଆନ୍ତରିକ ଭାବରେ ସେହି ମହତ୍ ବ୍ୟକ୍ତିଙ୍କର ସାଧନା ଓ ତପସ୍ୟା ଏପରି ଭାବରେ ବର୍ଣ୍ଣନା କରନ୍ତି ଯାହାକୁ ପାଠ କରିବାକୁ ସ୍ୱତଃ ପାଠକ ଆକୃଷ୍ଟ ହୋଇ ପଡ଼େ ।

ଆତ୍ମଚରିତ ଲେଖକ ଅପେକ୍ଷା ଜୀବନ ଚରିତର ଲେଖକ ଅଧିକ ସାବଧାନ ହୁଏ । ସେ ବିଷୟବସ୍ତୁ ନିର୍ବାଚନରେ ବିଚକ୍ଷଣତା ପ୍ରଦର୍ଶନ ନକଲେ ଉଲ୍ଲେଖଯୋଗ୍ୟ ଘଟଣାବଳୀ ବାଦ ପଡ଼ିଯାଇପାରେ । ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଗୁଡ଼ିକ ପାଠକର ହୁଏତ ଦୃଷ୍ଟିପଥରେ ନ ଆସିପାରେ । ଅତ୍ୟନ୍ତ ସାବଧାନ ନହେଲେ ଅନେକ ଗୌଣ କଥାବସ୍ତୁ ସ୍ଥାନ ଲାଭକରି ଜୀବନଚରିତକୁ ଅପାଠ୍ୟ କରିଦେଇ ପାରେ । ଜୀବନ ଚରିତରେ ମହତ୍ ବ୍ୟକ୍ତିଙ୍କର ଜୀବନର କାହାଣୀ ବିଶ୍ୱସ୍ତ ଭାବରେ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ବର୍ଣ୍ଣନାର ସାବଲୀଳତା, ବିଷୟ ବସ୍ତୁର ଉପସ୍ଥାପନା ଯେପରି ଚମତ୍କାର ଭାବ ସୃଷ୍ଟି କରିପାରୁ ଥିବ ସେଥିପ୍ରତି ଲେଖକ ଯଥେଷ୍ଟ ଧ୍ୟାନ ଦେବା ଆବଶ୍ୟକ ।

ଜୀବନ ଚରିତ ନୀରସ ଇତିହାସକୁ ଲିପିବଦ୍ଧ କରେ ନାହିଁ । ଯଦିଚ କୁହାଯାଇଛି "History is the essence of innumerable biographies" ତଥାପି ଜୀବନଚରିତ ଇତିହାସ ଅପେକ୍ଷା ଉପନ୍ୟାସର ଅଧିକ ନିକଟବର୍ତ୍ତୀ । ସୁଖପାଠ୍ୟ ନହେଲେ ମନରେ ଚମତ୍କାର ଭାବ ସୃଷ୍ଟି ନକଲେ, ଅନୁପ୍ରାଣିତ ହେବାର ଉପାଦାନ ନଥିଲେ ଜଣେ ପାଠକ ଜୀବନଚରିତ ଅଧ୍ୟୟନ କରିବାକୁ କେବେହେଲେ ଆଗ୍ରହ ପ୍ରକାଶ କରିବ ନାହିଁ । ଏକଥା ସତ୍ୟ ଯେ ବିଶିଷ୍ଟ ବ୍ୟକ୍ତିମାନେ ଇତିହାସ ଗଠନ କରନ୍ତି, ଇତିହାସକୁ ନିୟନ୍ତ୍ରଣ କରନ୍ତି, ସାଂପ୍ରତିକ ଇତିହାସ ଉପରେ ଅଧିକ ପ୍ରଭାବ ବିସ୍ତାର କରିଥାଆନ୍ତି । ତଥାପି ଜୀବନଚରିତକୁ ଇତିହାସ କହିବାରେ କୌଣସି କାରଣ ନାହିଁ ।

କେଉଁ ଅନାଦିକାଳରୁ ଜୀବନଚରିତ ଏକ ସୁଖପାଠ୍ୟ ବିଭାଗ ରୂପେ ସାହିତ୍ୟରେ ସ୍ୱୀକୃତି ଲାଭ କରିଅଛି । ନଚେତ ଏତେ ପ୍ରାଚୀନ ଯୁଗରୁ ଜୀବନଚରିତ ଲେଖା ହୋଇ ନଥାନ୍ତା । ଜୀବନଚରିତ ପାଠକଲେ ଆମ୍ଭେମାନେ ବୀର ମାନଙ୍କର ଅଦ୍ଭୁତ ଜୀବନ ସମ୍ପର୍କରେ ଅବହିତ ହୋଇ ଅତ୍ୟନ୍ତ ସୁଖ ଅନୁଭବ କରୁ । ମହାପୁରୁଷ ମାନଙ୍କର ଚରିତ୍ର ସମ୍ପର୍କରେ ସେଥିପାଇଁ ଅନେକ ଅଲୌକିକ ଘଟଣା ଯୋଡ଼ିଦିଆଯାଏ । ସେମାନେ ଐନ୍ଦ୍ରଜାଲିକ ବିଭୂତି ବୋଲି ଲୋକ ସମାଜରେ ବିଶ୍ୱାସ କରିବାକୁ ହୋଇଥାଏ । ତେବେ ଜୀବନ

ହୋଇଛି ଜଟିଳ ଏବଂ ଦୁଃଖପୂର୍ଣ୍ଣ । ଏଠାରେ ନାନା ସଂଘର୍ଷର ସମ୍ମୁଖୀନ ହୋଇ ମନୁଷ୍ୟକୁ ଅଗ୍ରସର ହେବାକୁ ପଡ଼େ । ତେବେ ଯେଉଁମାନେ ମହତ୍ ହୋଇଛନ୍ତି ନାମ ଅର୍ଜନ କରିଛନ୍ତି, ପ୍ରତିଷ୍ଠିତ ହୋଇଛନ୍ତି ସେମାନେ କିପରି ଏହି ପ୍ରତିବନ୍ଧକର ସମ୍ମୁଖୀନ ହେଲେ ଏବଂ କେଉଁ ଉପାୟରେ ସେସବୁ ଅତିକ୍ରମ କରି ସଫଳତାର ଚରମ ସୋପାନରେ ଉପନୀତ ହେଲେ, ଏହି ସମ୍ପର୍କରେ ଜାଣିବାପାଇଁ କୌତୂହଳ ଜାତହେବା ସ୍ୱାଭାବିକ । ମହାପୁରୁଷଗଣ ସମୟ ଓ ସମାଜକୁ ନିୟନ୍ତ୍ରଣ କରନ୍ତି । ସମଗ୍ର ଜନମାନସକୁ ପ୍ରଭାବିତ କରିଥାଆନ୍ତି । ତାଙ୍କର ବିଶାଳ ବ୍ୟକ୍ତିତ୍ୱ ନୂଆ ଇତିହାସ ଗଠନରେ ନିୟାମକ ହୋଇପଡ଼େ । ତେବେ ସାଧାରଣ ମନୁଷ୍ୟର ସୁଖ ଦୁଃଖ, ହସ କାନ୍ଦ, ସଫଳତା ବିଫଳତା ପରି ବଡ଼ବଡ଼ ବ୍ୟକ୍ତିତ୍ୱ ମାନଙ୍କ ମଧ୍ୟ ସେହି ସବୁ ସମସ୍ୟା ରହିଅଛି ଜାଣିବା ମାତ୍ରକେ ପାଠକ ଆଶ୍ୱସ୍ତ ହୁଏ, ସାନ୍ତ୍ୱନା ଲଭକରେ ଏବଂ ଅଗ୍ରସର ହେବାପାଇଁ ନିଜର ଜୀବନରେ ସାହସ ସଂଚୟକରେ । ଯେପରି ନିଜକୁ ସାହସ ଦେବାପାଇଁ ଲୋକେ କହିଥାଆନ୍ତି ଭଗବାନ ଶ୍ରୀକୃଷ୍ଣଙ୍କ ବିଷୟରେ—"ବିପଦବେଳେ ସ୍ୱୟଂ ଶ୍ରୀକୃଷ୍ଣ ବିଧିପାଦ ଧରିଥିଲେ, ଆମେ କିବା ଲୋକ । "ତେଣୁ ଜୀବନଚରିତ ସମସ୍ୟାର ସମ୍ମୁଖୀନ ହେବାପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଦିଏ । .

ଜୀବନଚରିତ ସମ୍ପର୍କରେ ଆଲୋଚନା କରି ଏକ ବିଖ୍ୟାତ ଗ୍ରନ୍ଥକାର ଏହିପରି ଲେଖିଛନ୍ତି—"A good biography presents a man as he lived. It is neither a enlogy nor an indictment. It recounts both good and bad actions, giving a fair, unbiased view, so that we may know the subject as he was. It should also show his relationship to his sorroundings for a man's attitude towords life is greatly influenced by his enviornment. Many men have reached eminence because they were able to recognize the opportunities offered them by particular circumstances. A good biography reveals a man's personality by chronicling his minor actions, the minute detail of his daily life, anecdotes about him, clever or apt sayings, his likes and dislikes. Seldom is a man's true presonality shown in the great achievments of his career. How he conducts himself with his family and most intimate friends marks the type of man he really is."

(The world's Essential knowledge. vol. IV--1929)

ଅତୀତର ସାହିତ୍ୟରେ ଜୀବନଚରିତ ଏବଂ ଇତିହାସ ମଧ୍ୟରେ କୌଣସି ପ୍ରଭେଦ ଦେଖି ନଥିଲେ । ଯେଉଁମାନେ ଇତିହାସକୁ ପ୍ରଭାବିତ ଏବଂ ନିୟନ୍ତ୍ରଣ କରନ୍ତି, ସେମାନଙ୍କର

ଜୀବନଚରିତ ଆଲୋଚନା କଲେ ଯେ ସମକାଳୀନ ଇତିହାସ ସମ୍ପର୍କରେ ସବିଶେଷ ଧାରଣା ଜାତ ହେବ, ଏହା ଆଶା କରିବା ସ୍ୱାଭାବିକ । ଇତିହାସ ବାସ୍ତବିକ ଗଠିତ ହୋଇଥାଏ ମହତ୍ତ୍ୱଲୋକମାନଙ୍କର ଜୀବନସାଧନା ପରିସର ମଧ୍ୟରେ । ତେଣୁ ଐତିହାସିକ ଝୁସ୍ୟନଙ୍କ ଜୀବନ-ଚରିତକୁ "Personalised History" କହି କିଛି ଅତ୍ୟୁକ୍ତି କରିନାହାନ୍ତି । ତେବେ ଆଧୁନିକ ଯୁଗର ଜୀବନଚରିତଠାରୁ ଇତିହାସକୁ ପୃଥକ ଭାବରେ ବିଚାର କରାଯାଉଛି । ବିଶ୍ୱକୋଷରେ ଲେଖାଅଛି—"The true conception of biography, therefore, as the faithful portrait of a soul in its adventures through life, is very modern."

(Encyclopaedia Britannica. P. 594. vol—I—1946)

ବାସ୍ତବିକ ଇତିହାସ ଓ ଜୀବନଚରିତ ମଧ୍ୟରେ ବର୍ତ୍ତମାନ ପ୍ରଭେଦ କେବଳ ରୂପଗତ ନୁହେଁ, ରସଗତ ମଧ୍ୟ । ଇତିହାସରେ କେବଳ ତଥ୍ୟର ପରିବେଷଣ ହୋଇଥାଏ । ମାତ୍ର ଜୀବନଚରିତ ତଥ୍ୟମୂଳକ ହେଲେ ତାହା ଅପାଠ୍ୟ ହୋଇପଡ଼ିବ । ଏଥିରେ ପଦେ ପଦେ ସେହି ମହତ୍ ଜୀବନର ବ୍ୟାଖ୍ୟା ଲିପିବଦ୍ଧ ହୋଇଥାଏ । ଏତଦ୍‌ବ୍ୟତୀତ ଜୀବନ ଓ ସମାଜ ସମ୍ପର୍କରେ ସେହି ବ୍ୟକ୍ତିର ମତାମତ ଓ ପ୍ରତିକ୍ରିୟା ସରସ ଭାବରେ ଜୀବନଚରିତରେ ପ୍ରକାଶିତ ହୁଏ । ତେଣୁ ପାଠକର ମନରେ ଜୀବନଚରିତ ପାଠ କରୁ କରୁ ନାନା ପ୍ରଶ୍ନର ଉଦୟ ହୁଏ ଏବଂ ନାନା ସମସ୍ୟାର ସମାଧାନ ମଧ୍ୟ ହୋଇଯାଏ । ଜୀବନଚରିତ ପାଠ କଲାବେଳେ ପାଠକ ତତ୍କାଳୀନ ସମାଜରେ ଚଳବୁଲ କଲାପରି ଅନୁଭବ କରିଥାଏ । ଉଦାହରଣ ସ୍ୱରୂପ ଫକୀରମୋହନଙ୍କ ଆତ୍ମଚରିତ ପାଠ କଲେ ଊନବିଂଶ ଶତାବ୍ଦୀର ଉତ୍କଳୀୟ ସମାଜରେ ପାଠକ ନିଜକୁ ସାମିଲ କରିଦେଲାପରି ଅନୁଭବ କରେ । ସେହିପରି ନିଗମାନନ୍ଦଙ୍କ ଜୀବନୀ ପାଠ କଲେ ଜଣେ ବ୍ୟକ୍ତିବାଚକ ତରୁଣ ପ୍ରାଣରେ ଯେଉଁ ଜୀବନଜିଜ୍ଞାସା ଫୁଟି ଉଠିଥିଲା, ତାହା ପଦେ ପଦେ ଉପଲବ୍ଧି କରାଯାଇଥାଏ । ଜୀବନୀ ଲେଖକର ଦାୟିତ୍ୱ ଏଥିପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ଯଦି ସମକାଳୀନ ସମାଜର ପୃଷ୍ଠଭୂମିକୁ ବିଶ୍ଳେଷଣ ନକରି ସେହି ବ୍ୟକ୍ତିର ଜୀବନଦର୍ଶନର ମୂଲ୍ୟାଙ୍କନ ନକରେ, ତାହାହେଲେ ଜୀବନଚରିତର ଲକ୍ଷ୍ୟ ପରିପୂର୍ଣ୍ଣ ହେବନାହିଁ । ସଭ୍ୟ ମନୁଷ୍ୟ ହେଉଛି ସଂସ୍କୃତିର ଉତ୍ତରାଧିକାରୀ । ଅତୀତ ପୁରୁଷମାନଙ୍କର ଅନୁଭୂତ ଆବିଷ୍କାର ଓ ଉଦ୍ଭାବନକୁ ସମ୍ବଳ କରି ବର୍ତ୍ତମାନ ପୁରୁଷ ଅଗ୍ରସର ହୁଏ । ତେଣୁ ଜୀବନଚରିତ ମାଧ୍ୟମରେ ଲେଖକ ଅତୀତକୁ ପ୍ରାଣବନ୍ତ କରେ ଏବଂ ବର୍ତ୍ତମାନ କ୍ଷେତ୍ରରେ ତାର ଉପଯୋଗିତା ପ୍ରଚାର କରିଦିଏ । ଫଳରେ ସେହି ନିର୍ଦ୍ଦିଷ୍ଟ ଚରିତ୍ର ପ୍ରଭାବଶାଳୀ ହୋଇଉଠେ ଏବଂ ସମାଜ ଜୀବନରେ ଗଭୀର ପ୍ରଭାବ ସୃଷ୍ଟି କରିଥାଏ । ବ୍ୟର୍ଥତା ନୈରାଶ୍ୟ, ବିଫଳତାର ଘନଅନ୍ଧକାର ମଧ୍ୟରେ ଯୁଗମାନବର ମହତ୍ତ୍ୱଜୀବନ ଚରିତରୁ ଅଭାବନୀୟ ପ୍ରେରଣା ଓ ଆଶୀର୍ବାଦ ଲାଭ କରେ ।

ଏହିପରି ଜୀବନଚରିତ ଆଲୋକବର୍ତ୍ତିକା ପରି ଦିଗଭ୍ରାନ୍ତ ପଥିକକୁ ଅଗ୍ରସର ହେବାପାଇଁ ସାହାଯ୍ୟ କରେ । ତାର ମନରେ ଭରିଦିଏ ଅସୀମ ଧୈର୍ଯ୍ୟ ଓ ସାହସ ।

"ଆତ୍ମଜୀବନୀ ଓ ଜୀବନଚରିତ ସମ୍ପର୍କରେ ଅଧ୍ୟାପକ ଚନ୍ଦ୍ରମଣି ବେହେରାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଏଠାରେ ଉଲ୍ଲେଖଯୋଗ୍ୟ । ଅଧ୍ୟାପକ ବେହେରା ବହୁ ଗ୍ରନ୍ଥରୁ ଉଦ୍ଧାର କରି ଜୀବନଚରିତ ଓ ଆତ୍ମଜୀବନୀର ମହତ୍ତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ଏକ ପ୍ରାମାଣିକ ଆଲୋଚନା କରିଅଛନ୍ତି । ସେଥିରେ ସେ ଲେଖିଛନ୍ତି—

"ପ୍ରକୃତ ସାହିତ୍ୟ ରସରେ ସମୃଦ୍ଧ ଜୀବନଚରିତ ବା ଆତ୍ମଚରିତ ମନୁଷ୍ୟ ମନ ଗଠନ ଦିଗରେ ସବିଶେଷ ସହାୟକ; ଏହାଦ୍ୱାରା କେବଳ ଯେ ସାହିତ୍ୟର ପରିପୁଷ୍ଟି ସାଧିତ ହୁଏ ତାହା ନୁହେଁ, ସମାଜ ଚେତନାର ମଧ୍ୟ ପରିପୁଷ୍ଟି ସଂସାଧିତ ହୋଇଥାଏ । କିନ୍ତୁ ଦୁଃଖର ବିଷୟ ଆମ ଦେଶରେ ଆଜି ପର୍ଯ୍ୟନ୍ତ ଏ ବିଷୟରେ ଅନେକଙ୍କ ମନରେ ସଠିକ୍ ଧାରଣା ଗଢ଼ି ଉଠିନି । ଜୀବନୀ ସାହିତ୍ୟର ପ୍ରକୃତ ତାତ୍ପର୍ଯ୍ୟ ଖୁବ୍ କମ୍ ପାଠକ ହିଁ ହୃଦୟଙ୍ଗମ କରିଥାନ୍ତି । ମହତ୍ ସାହିତ୍ୟ ଯାହାକୁ ଆମେ କହୁ ସୃଜନଧର୍ମୀ ସାହିତ୍ୟ ବା Creative literature, ମାନବ ଜୀବନର ହିଁ ଅଂଶବିଶେଷ । ଏଥିରେ ପ୍ରତିଫଳିତ ଶାଶ୍ୱତକାଳର ଅନୁଭୂତି ଓ ଚିନ୍ତା ଯୁଗଯୁଗାନ୍ତର ଧରି ମନୁଷ୍ୟ ମନକୁ ନବ ନବ ସୃଷ୍ଟି ପଥରେ ପ୍ରତ୍ୟକ୍ଷ ପ୍ରେରଣା ପ୍ରଦାନ କରିଥାଏ । ତାକୁ ହିଁ ଆମେ କହୁ ସାର୍ଥକ ଆତ୍ମଜୀବନୀ ବା ଜୀବନଚରିତ । ଯାହା ମହତ୍ ସାହିତ୍ୟର ଗୋଟିଏ ଅପରିହାର୍ଯ୍ୟ ଅଂଶ ଭାବରେ ଆମ ନିକଟରେ ଉପସ୍ଥିତ ହୋଇ ଆମ ଚିନ୍ତାକୁ ଉଦ୍ଦୀପ୍ତ କରେ ଏବଂ ଶକ୍ତିକୁ ସରସ କରେ ।

ଇଂରାଜୀ autobio-graphy କଥାଟି ହେଉଛି ଆଧୁନିକ କାଳର । କବି ରବାର୍ଟ ସାଉଦେ (ନେଲ୍‌ସନ୍‌ଙ୍କର ବିଖ୍ୟାତ ଜୀବନଚରିତକାର) ୧୮୯୦ ସାଲରେ ସର୍ବପ୍ରଥମ, 'ଅଟୋବାୟୋଗ୍ରାଫି' ଶବ୍ଦଟି ବ୍ୟବହାର କରନ୍ତି । ତା ପୂର୍ବରୁ ଆତ୍ମଜୀବନୀ ବିଭିନ୍ନ ନାମରେ ପରିଚିତ ଥିଲା—ଜାର୍ନାଲ, ଲାଇଫ୍ ମେମୋୟର୍‌ସ, କନ୍‌ଫେସନ୍ ଡାଏରୀ ଇତ୍ୟାଦି ଏବଂ ଏହି କଥାଗୁଡ଼ିକ ପୂର୍ବରୁ 'ମୋର' ବା ଏହି ରକମ କୌଣସି ଗୋଟିଏ ଶବ୍ଦ ସାଧାରଣତଃ ବ୍ୟବହୃତ ହେଉଥିଲା । ଏହା ହିଁ ଥିଲା ସାଉଦେ—ପୂର୍ବବର୍ତ୍ତୀ କାଳର ରୀତି ବା ଧାରା । ଇଂରାଜୀ ସାହିତ୍ୟର ଜଣେ ବିଶିଷ୍ଟ ସମାଲୋଚକଙ୍କ ମତରେ 'Autobiography frequently raflects national character and in so far as this is true, it can supply a rich source of materials for the under standing of diverse people.' ଏହି ଉକ୍ତିଟିର ତାତ୍ପର୍ଯ୍ୟ ଆମେ ଅନାୟାସରେ ଉପଲବ୍ଧି କରିପାରିବୁ, ଯଦି ଏ ପ୍ରସଙ୍ଗରେ ଆମେ ସ୍ମରଣ କରୁଁ ଗାନ୍ଧୀ ବା ଟଲଷ୍ଟୟଙ୍କର ଆତ୍ମଜୀବନୀ । ସେଠାରେ ସେମାନେ ନିଜ ନିଜର କଥା ଯେତେ ଅକପଟ ଭାବରେ ପ୍ରକାଶ କରିଛନ୍ତି, ତାଠୁଁ ବହୁଳାଂଶରେ ପ୍ରକାଶ କରିଛନ୍ତି ନିଜସ୍ୱ ଜୀବନର national back-ground ବା ଜାତୀୟ ପଟ୍ଟଭୂମିକୁ । ସମଗ୍ର ମାନବଜାତି ସହିତ ଏକାତ୍ମୀୟତା ବୋଧ ଶିକ୍ଷା କରିବାକୁ ଏବଂ ପୃଥିବୀର ସବୁ ମନୁଷ୍ୟ ଯେ ଏକ ଏହି ମହତ୍ ଚେତନା ଲାଭ କରିବାକୁ ପ୍ରେରଣାଦାନ କରେ ଆତ୍ମଚରିତ ।" (ବିଦଗ୍ଧ ପାଠକ—ପୃ. ୯୧-୯୬—୧୯୭୫)

ଜୀବନଚରିତ ବାସ୍ତବିକ୍ ରୋମାଞ୍ଚକର । ଏହା ଅତ୍ୟନ୍ତ ହୃଦ୍ୟ ଏବଂ ଆକର୍ଷଣୀୟ । ଏହା କେବଳ କୌଣସି ଲୋକର ଜୀବନର ସୁଖ ଦୁଃଖର କାହାଣୀ କହିଲେ ଅତିରଞ୍ଜନ ହେବ । ବରଂ ଜୀବନ ଚରିତ ହେଉଛି ସମକାଳୀନ ଜାତି ଓ ସମାଜର ଇତିହାସ । ଯେ କୌଣସି ଜୀବନ ସମ୍ପର୍କରେ ଲେଖିଲା ବେଳେ ଅତ୍ୟନ୍ତ ସାବଧାନତା ଆବଶ୍ୟକ । କାରଣ ସେହି ଜୀବନର ସମସ୍ତ ଘଟଣା ପାଠକର ଦରକାରୀ ନୁହେଁ । ସମାଜରେ ସେଗୁଡ଼ିକର ମୂଲ୍ୟବୋଧ ସ୍ୱୀକୃତ ହେବାର କୌଣସି କାରଣ ନାହିଁ । ସେଥିପାଇଁ ଜୀବନୀ ଲେଖକଙ୍କ ବ୍ୟାଖ୍ୟା ଓ ଅନୁଶୀଳନ ଉପରେ ଜୀବନ ଚରିତର ମହତ୍ତ୍ୱ ଉପଲବ୍ଧି କରାଯାଇଥାଏ । ସେହି କାରଣରୁ ଗୋଟିଏ ବିଷୟରେ ଦୁଇଟି ପୃଥକ ଚରିତ ଲେଖା ମଧ୍ୟରେ ଅନେକ ତାରତମ୍ୟ ଦୃଷ୍ଟିଗୋଚର ହୋଇଥାଏ । ଯେପରି ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ନିକଟ ଅତୀତରେ ଯେତେଗୁଡ଼ିଏ ଜୀବନଚରିତ ଲେଖା ଯାଇଛି, ବୋଧହୁଏ ଭାରତର ଆଉ କୌଣସି ରାଜନୀତିଜ୍ଞଙ୍କ ଭାଗ୍ୟରେ ତାହା ଘଟି ନାହିଁ । କାରଣ ମହାତ୍ମାଗାନ୍ଧୀ ଭାରତୀୟ ରାଜନୀତିକ ପାଣିପାଗର ଏକ ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ଆବିର୍ଭୂତ ହୋଇଥିଲେ ଏବଂ ତାଙ୍କର ନେତୃତ୍ୱରେ ସମଗ୍ର ଜାତୀୟ ଆନ୍ଦୋଳନର ସଂଗ୍ରାମୀ ଭୂମିକା ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ଭାରତର କୋଟି କୋଟି ନରନାରୀ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ଦ୍ୱାରା ଅନୁପ୍ରାଣିତ ଏବଂ ପ୍ରଭାବିତ ହେଲେ, ତେଣୁ ଗାନ୍ଧିଜୀଙ୍କ ଜୀବନକୁ ଉପଲକ୍ଷ୍ୟ କରି ଅସଂଖ୍ୟ ଜୀବନଚରିତ ଲେଖା ଯାଇଛି । ତେବେ ଅତୀତରେ ଜୀବନ ଚରିତ ଲେଖକଗଣ କେବଳ ଚରିତରେ ଉଜ୍ଜ୍ୱଳ ଓ ମହାନ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରୁଥିଲେ । ମହତ୍ ଚରିତର ଦୋଷ ଦୁର୍ବଳତା ପ୍ରଦର୍ଶନ କରିବା ସତେ ଯେପରି ଦୋଷାବହ ଥିଲା । ମାତ୍ର ଆଧୁନିକ ଜୀବନ ଚରିତ ଲେଖକ ସ୍ପଷ୍ଟ ଭାଷୀ । ସ୍ୱାଭାବିକ ଦୋଷ ଦୁର୍ବଳତା ମଧ୍ୟରେ ଚରିତ୍ରର ମହତ୍ତ୍ୱ ବିଶ୍ଳେଷଣ କରିଥାଏ । ଯେପରି କେହି କେହି ଗାନ୍ଧିଜୀଙ୍କୁ ମହାମାନବ ଏବଂ ଦେବତୁଲ୍ୟ ବ୍ୟକ୍ତିତ୍ୱ ବୋଲି ଚିତ୍ରଣ କରିଥିଲାବେଳେ ଅନ୍ୟମାନେ ଗାନ୍ଧି ଚରିତ୍ରର ଦୋଷ ଦୁର୍ବଳତା ଉଦ୍‌ଘାଟନ କରି ତାଙ୍କର ମାନବୀୟ ସ୍ନେହ, ପ୍ରୀତି ଓ ମମତାବୋଧ ନିର୍ଦ୍ଧାରିତ କରିବା ଦ୍ୱାରା ପାଠକ ସେହି ଚରିତ୍ର ପ୍ରତି ଅଧିକ ଆପଣାର ହୋଇଉଠେ । ଭାରତୀୟ ସ୍ୱାଧୀନତା ସଂଗ୍ରାମର ପଥପ୍ରଦର୍ଶକ ମହାତ୍ମାଗାନ୍ଧୀ ଏବଂ ଜବାହାରଲାଲ ପ୍ରଭୃତିଙ୍କ ବିଶାଳ ବ୍ୟକ୍ତିତ୍ୱ ଓ ସାଧନାପୂତଜୀବନ ମଧ୍ୟରେ ସାମାନ୍ୟ ଦୁର୍ବଳତା ଲକ୍ଷ୍ୟ କଲେ ପାଠକ ଆମୋଦିତ ହୁଏ ।

————

# ଜୀବନଚରିତ—ପାଶ୍ଚାତ୍ୟ ସାହିତ୍ୟରେ ତାର ଭୂୟୋବିକାଶ

ପାଶ୍ଚାତ୍ୟ ଦେଶର ସମାଜରେ ଜୀବନ ଚରିତ ଲେଖା ପ୍ରତି ଆଗ୍ରହ ଅତି ପ୍ରାଚୀନକାଳରୁ ଦେଖାଯାଇଥିଲା । ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀରୁ ବିଖ୍ୟାତ ଜୀବନଚରିତ ଲେଖାର ପ୍ରମାଣ ମିଳିଥାଏ । ଏହି ପ୍ରଥମ କାଳର ଜୀବନଚରିତ ଲେଖକ ମାନଙ୍କ ମଧ୍ୟରେ ଗ୍ରୀକ୍ ଲେଖକ ପ୍ଲୁଟାର୍କ ସର୍ବାଗ୍ରେ ସ୍ମରଣୀୟ । ପ୍ଲୁଟାର୍କଙ୍କ ରଚିତ 'ଜୀବନମାଳା' ବିଶ୍ୱ ସାହିତ୍ୟରେ ଏକ ଉଲ୍ଲେଖ-ଯୋଗ୍ୟ ଗ୍ରନ୍ଥ । ଏଥିରେ ସଂକ୍ଷେପରେ ବହୁ ବିଶିଷ୍ଟ ଗ୍ରୀକ୍ ଏବଂ ରୋମୀୟ ବ୍ୟକ୍ତିଙ୍କର ଜୀବନ ଚରିତ ଲିପିବଦ୍ଧ ହୋଇଅଛି । ତେବେ ପ୍ରଥମ କାଳର ଜୀବନଚରିତ ଗୁଡ଼ିକର ଲକ୍ଷ୍ୟ ଏବଂ ଆଭିମୁଖ୍ୟ ସମ୍ପର୍କରେ ଅବହିତ ନହେଲେ ପ୍ଲୁଟାର୍କ ଏବଂ ତାଙ୍କର ସମଧର୍ମୀ ମାନଙ୍କ ରଚନା ପ୍ରତି ଉପଯୁକ୍ତ ବିଚାର କରାଯାଇ ପାରିବ ନାହିଁ ।

"Early biography was mainly in the form of lives of saints or heroes. The author of such stories was not trying to portray an individual; he was attempting to teach a moral lesson and to give examples of goodness and bravery that people might imitate.

( The American Educator Encyclopedia--Vol.2. 1970 )

ଆଦି କାଳର ଜୀବନ ଚରିତ ଗୁଡ଼ିକ ଥିଲା କେବଳ ଶିକ୍ଷାପ୍ରଦ ଏବଂ ଆଦର୍ଶ ପରିପୂର୍ଣ୍ଣ । ନୈତିକ ଭାବନାର ପରିପ୍ରଚାର ଉଦ୍ଦେଶ୍ୟରେ ସାଧୁ, ସନ୍ଥ, ମହାପୁରୁଷ ଏବଂ ଋଷିମାନଙ୍କ ଜୀବନ କାହାଣୀ ଲିପିବଦ୍ଧ ହେଉଥିଲା । ଏଥି ସଙ୍ଗେ ସଙ୍ଗେ ସାହସୀ, ତ୍ୟାଗୀ ଏବଂ ବୀରପୁରୁଷମାନଙ୍କର ଚରିତ ମଧ୍ୟ ଲେଖକ ମାନେ ପ୍ରଚାର କଲେ । ପୃଥିବୀର ପ୍ରତ୍ୟେକ ସାହିତ୍ୟରେ ଜୀବନ ଚରିତର ଲେଖକଗଣ ପ୍ରଥମେ ଏହି ଆଦର୍ଶ ଅନୁସରଣ କରିଥିବା ଜଣାଯାଏ ।

ପ୍ଲୁଟାର୍କଙ୍କ ଜୀବନମାଳା ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ଇଂରେଜୀ ସାହିତ୍ୟରେ ଅନୂଦିତ ହେଲାପରେ ଏକ ଶୃଙ୍ଖଳା ସୃଷ୍ଟି ହୋଇଥିଲା । ଇଂରେଜୀପାଠକ ଏବଂ ଲେଖକଗଣ ବହୁଭାବରେ ଏହି ଲେଖାଦ୍ୱାରା ପ୍ରଭାବିତ ହେଲେ, ଏବଂ ପ୍ଲୁଟାର୍କଙ୍କ ଜୀବନଚରିତ ଅବଲମ୍ବନରେ

ଇଂରେଜୀ ସାହିତ୍ୟରେ ଅସଂଖ୍ୟ କାବ୍ୟ, ନାଟକ ରଚିତ ହେଲା । କେବଳ ଇଂରେଜୀ ସାହିତ୍ୟ ନୁହେଁ, ଇଉରୋପର ଅନ୍ୟାନ୍ୟ ଦେଶରେ ମଧ୍ୟ ପରବର୍ତ୍ତୀ କାଳରେ ପ୍ଲୁଟାର୍କଙ୍କ ଜୀବନ ଚରିତ ସାହିତ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା ବୋଲି ଜଣା ଯାଉଛି । ଅବଶ୍ୟ ପ୍ଲୁଟାର୍କଙ୍କ ପୂର୍ବରୁ ପ୍ଲାଟୋଙ୍କ "ସକ୍ରେଟୀସ୍-ସଂଳାପ" କେତେକାଂଶରେ ଜୀବନ ଚରିତର ପରିଚୟ ଜ୍ଞାପକ ହେଲେହେଁ ଏହା ଅଧିକ ଦାର୍ଶନିକ ଭାବାପନ୍ନ । ସେଥିପାଇଁ ଆଲୋଚକଗଣ ପ୍ଲାଟୋଙ୍କ ରଚନାକୁ ଜୀବନଚରିତ ହିସାବରେ ସ୍ୱୀକାର କରିପାରି ନାହାନ୍ତି । ବାସ୍ତବିକ ପ୍ଲୁଟାର୍କ ତାଙ୍କର ଜୀବନ କାହାଣୀରେ ଛୟାଳିଶ ଜଣ ରୋମୀୟ ଓ ଗ୍ରୀସୀୟ ରାଜନୀତିଜ୍ଞ ଓ ଯୋଦ୍ଧାଙ୍କର ବିବରଣୀ ପ୍ରଥମେ ଲିପିବଦ୍ଧ କଲେ । ସେମାନଙ୍କର ଚରିତ୍ରର ଉଜ୍ଜ୍ୱଳ ଆଦର୍ଶ ବହୁକାଳ ପର୍ଯ୍ୟନ୍ତ ସମାଜ ଓ ସାହିତ୍ୟରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ସେଥିପାଇଁ ପ୍ଲୁଟାର୍କଙ୍କ ଜୀବନ ଚରିତକୁ ଇଉରୋପୀୟ ଜୀବନୀ ସାହିତ୍ୟର ଗଙ୍ଗୋତ୍ରୀ ବୋଲି କୁହାଯାଇଥାଏ । ଏହି ସମୟରେ ଲାଟିନ ସାହିତ୍ୟରେ ମଧ୍ୟ ଅସଂଖ୍ୟ ଜୀବନଚରିତ ସଙ୍କଳିତ ହୋଇଥିଲା । ଆଉଜଣେ ପ୍ରାଚୀନ ଗ୍ରୀକ୍ ଲେଖକ ଦାର୍ଶନିକ ମାନଙ୍କର ଚରିତାବଳୀ ପ୍ରଣୟନ କରିଥିଲେ । Lives of philosophers—Diogenes Laertius (c.200-50) ପରେ ପରେ ଅନେକ କାଳ ପର୍ଯ୍ୟନ୍ତ କେବଳ ଧର୍ମ ପ୍ରଚାରକ ସନ୍ଥମାନଙ୍କର ଜୀବନ ଚରିତ ପ୍ରସ୍ତୁତ ହୋଇଥିଲା । ସେଗୁଡ଼ିକ ମଧ୍ୟରେ ନରମାନ୍ ରାଜାଙ୍କ ରାଜତ୍ୱ କାଳରେ ଲାଟିନ୍ ଭାଷାରେ ପ୍ରଚାରିତ Adamnanଙ୍କ ଲିଖିତ St Columba, Bedeଙ୍କ ଲିଖିତ St Cuthbert ପ୍ରଧାନ ।

ଆଧୁନିକ ଅର୍ଥରେ ଜୀବନୀ ସାହିତ୍ୟର ବିକାଶ ହୁଏ ସପ୍ତଦଶ ଖ୍ରୀଷ୍ଟାବ୍ଦରେ । ପରେ ଏହା ଅଷ୍ଟାଦଶ, ଊନବିଂଶ ଓ ବିଂଶ ଶତାବ୍ଦୀରେ ସମୃଦ୍ଧିର ଚରମ ସୋପାନରେ ଉପନୀତ ହୁଏ । ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ଜୀବନଚରିତ-ଅଭିଧାନ ସଙ୍କଳିତ ହୋଇଥିଲା । ତେବେ ଊନବିଂଶ ଶତାବ୍ଦୀରେ ଏହାର ପ୍ରାଧାନ୍ୟ ସ୍ୱୀକୃତ ହେଲା । ଏହି କାଳରେ ବିଭିନ୍ନ ପ୍ରାନ୍ତରେ ଯେଉଁ କେତେକ ବିଖ୍ୟାତ ଜୀବନୀ ଅଭିଧାନ ପ୍ରଣୟନ ହୋଇଥିଲା ସେଗୁଡ଼ିକ ମଧ୍ୟରେ Stephen and Lee—Dictionary of National Biography, Dictionary of American Biography ପ୍ରଧାନ । ପୁନଶ୍ଚ Moreri-Dictionaire Historique of critique (1671) Biographie Universella (85 vols-1811-1862) Nouvella Biographie Generale (46vols-1852-1866) Chalmer's General Biographical Dictionary (32vols-1812) Rose-Biogrphical Dictionary (12vols-1848-1850) Dictionay of National Biography (63vols.1885) Applton-Cyclopaedia of American Biography (7vols-1887-1900) A. M. Hyamnson-Dictionary of Universal Biography ପ୍ରଧାନ ।

ଏକ ସଂସ୍କୃତସମ୍ପନ୍ନ ଏବଂ ସମୃଦ୍ଧ ସମାଜରେ କେବଳ ଜୀବନଚରିତ ଲେଖାପ୍ରତି ଆଗ୍ରହ ସୃଷ୍ଟି ହୋଇଥାଏ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଏବଂ ତାର ଅବ୍ୟବହିତ ପରେ ରୋମ ସାମ୍ରାଜ୍ୟ ଖ୍ୟାତ ଲାଭକଲା । ରୋମୀୟ ଜାତୀୟ ଜୀବନରେ ଅଭୂତପୂର୍ବ ଅଭିବୃଦ୍ଧି ଯୋଗୁଁ ରୋମ ସଭ୍ୟତା ଓ ସଂସ୍କୃତିର ପ୍ରଭାବ ଥିଲା ସୁଦୂରପ୍ରସାରୀ । ଏହି ସଭ୍ୟତାର ଅଭ୍ୟୁଦୟ କାଳରେ ଜୀବନୀ ସାହିତ୍ୟ ପ୍ରତି ଦୃଷ୍ଟି ଫେରିଥିଲା । ବହୁ ମହାନ୍ ଚରିତ୍ର ସଂପର୍କରେ ସାହିତ୍ୟ ଲପିବଦ୍ଧ କରିଥିଲା । କେତେ ବୀର, ଦାର୍ଶନିକ, ରାଜପୁରୁଷ ଦୈନନ୍ଦିନ ସମାଜ ଜୀବନରେ ଆଲୋଡ଼ନ ସୃଷ୍ଟି କରିଥିଲେ । ଏହି ସମୟରେ ବାଇବେଲ ଓ ଖ୍ରୀଷ୍ଟଧର୍ମର ପ୍ରଚାରଦ୍ୱାରା ସମଗ୍ର ଇଉରୋପ ଖଣ୍ଡରେ ନବଜାଗରଣ ସୃଷ୍ଟି ହେଲା । ପ୍ରାଚୀନ କାଳର ଅନ୍ଧାନୁସରଣ ଦୂର ହୋଇ ସମଗ୍ର ଇଉରୋପୀୟ ସମାଜରେ ଏକ ଆଧ୍ୟାତ୍ମିକ ବେଦନାବୋଧ ଏବଂ ସାମାଜିକ ଜାଗରଣ ସମ୍ଭବ ହୋଇଥିଲା ।

ପ୍ରାଚୀନ ଉଚ୍ଛୃଙ୍ଖଳ ସମାଜକୁ ଯେଉଁ ରାଜନୈତିକ ବୀର ଏବଂ ଆଧ୍ୟାତ୍ମିକ ବୀର ପୁରୁଷ ଗଣ ପ୍ରେରଣା ଦେଇ ଥିଲେ, ସେମାନଙ୍କ ସ୍ମରଣ କରିବା ପାଇଁ ତତ୍‌କାଳୀନ ମନୁଷ୍ୟ ବ୍ୟାକୁଳ ହେବା ସ୍ୱାଭାବିକ । ସେଥିପାଇଁ ଧର୍ମଗ୍ରନ୍ଥ ହେଲେହେଁ ଏହି କାଳରେ ଜଗତ ପ୍ରସିଦ୍ଧ ଧର୍ମଗ୍ରନ୍ଥ 'ବାଇବେଲ୍‌ରେ' ଅସଂଖ୍ୟ ଚରିତ୍ର ସମ୍ପର୍କରେ ବିବରଣୀ ପ୍ରଦାନ କରାଯାଇଛି । ଉଦାହରଣ ସ୍ୱରୂପ ଆବ୍ରାହମ୍, ଡ୍ୟାଭିଡ୍, ଦେବୋରା Deborah, ଏଲିଜା (Elijah) ଏଲିସା Elisha, ଇସାକ Esaac, ଇଶା Isaiah, ଜାକୋବ, ମୋଜେସ, ସୋଲେମେନ, ଯୋଶେଫ, ମେରି ପ୍ରଭୃତି ଅସଂଖ୍ୟ ବ୍ୟକ୍ତି ମାନଙ୍କ ସ୍ମରଣ କରାଯାଇପାରେ । ପରବର୍ତ୍ତୀ କାଳରେ ଯେତେବେଳେ ସାହିତ୍ୟରେ ଜୀବନଚରିତ ବିଭାଗଟି ଲୋକପ୍ରିୟ ହେଲା, ଜନସାଧାରଣଙ୍କ ମନରେ ଆଧ୍ୟାତ୍ମିକ ଭାବର ପରିପ୍ରଚାର ପାଇଁ ଏହି ମହତ୍ ଚରିତ୍ରମାନଙ୍କ ସମ୍ପର୍କରେ ବହୁ ଜୀବନୀ ପୁସ୍ତକ ପ୍ରଚରିତ ହୋଇଥିଲା ।

ତେବେ ସପ୍ତଦଶ ଶତାବ୍ଦୀ ବେଳକୁ ଇଉରୋପର ସାହିତ୍ୟରେ ଏକ ଜୀବନ-ଜିଜ୍ଞାସା ଅଧିକ ଅନୁଭୂତ ହେଲା । ତେଣୁ ବହୁ ଉଚ୍ଚକୋଟୀର ଜୀବନୀ ସାହିତ୍ୟ ଇଉରୋପୀୟ ସାହିତ୍ୟରେ ପ୍ରଚାର ହେବା ସମ୍ଭବ ହୋଇଥିଲା । ଇଉରୋପରେ ପ୍ରଥମେ ଲାଟିନ୍ ସାହିତ୍ୟରେ ଜୀବନଚରିତ ବହୁଳ ଭାବରେ ପ୍ରଚାରିତ ହେଲା । ଖ୍ରୀଷ୍ଟଧର୍ମ ପ୍ରଚାର ଯୋଗୁ ବହୁ ସାଧୁସନ୍ଥ, ଧର୍ମପ୍ରଚାରକ ସ୍ୱାଭାବିକ ଭାବରେ ଲୋକମାନସରେ ଅଟଳ ଶ୍ରଦ୍ଧା ଭାବ ସୃଷ୍ଟିକରି ଚାଲିଥିଲେ । ଧର୍ମାନୁମୋଦିତ ଭାବନା ସୃଷ୍ଟିପାଇଁ ମଧ୍ୟ ଏହି ପ୍ରକାର ଜୀବନକାହାଣୀ ଯଥେଷ୍ଟ ସାହାଯ୍ୟ କରୁଥିଲା । ପୁନଶ୍ଚ ସନ୍ଥମାନଙ୍କ ଜୀବନର ଅଲୌକିକ କାହାଣୀ ପ୍ରତି ଧର୍ମପ୍ରାଣ ପାଠକ ସ୍ୱଭାବତଃ ଆକୃଷ୍ଟ ହେଉଥିଲେ । ତେଣୁ ଏହି ଶ୍ରେଣୀର କାହାଣୀ ଅବଲମ୍ବିତ ଜୀବନଚରିତ ଅଧିକ ପ୍ରଚାରିତ ହେଲା । ଏଥି ସହିତ ମଧ୍ୟ ପ୍ରଚାରିତ ହେଲା ମଧ୍ୟଯୁଗୀୟ ବୀରପୁରୁଷମାନଙ୍କର ଦୁଃସାହସିକ ଅଭିଯାତ୍ରୀ-ଜୀବନ । ସେମାନଙ୍କର ଦୁର୍ଦ୍ଧର୍ଷ ରୋମାଞ୍ଚକର ରୋଚକ ସ୍ୱର କାହାଣୀ ମଧ୍ୟ ପାଠକ କୁଳର ପ୍ରିୟ ହୋଇ ପଡ଼ିଥିଲା । ଲାଟିନ୍ ସାହିତ୍ୟର ଏହି ଧାରାଟି ପରବର୍ତ୍ତୀ କାଳରେ ଇଉରୋପୀୟ ସାହିତ୍ୟକୁ ଯଥେଷ୍ଟ ପ୍ରଭାବିତ କରିଥିବା ଜଣାଯାଏ । ତେଣୁ ଇଂରେଜୀ ସାହିତ୍ୟରେ ସପ୍ତଦଶ ଶତାବ୍ଦୀ ଏବଂ ପରେ ପରେ ଜୀବନୀ ସାହିତ୍ୟର ଯଥେଷ୍ଟ ଅଭିବୃଦ୍ଧି ସାଧିତ ହୋଇ-

ଥିଲା । ଲାଟିନ୍ ସାହିତ୍ୟର ଯେଉଁ କେତୋଟି ଜୀବନଚରିତ ଖୁବ୍ ପ୍ରଭାବଶାଳୀ ହୋଇଥିଲା ସେଗୁଡ଼ିକ ମଧ୍ୟରେ ଅଷ୍ଟମ ଶତାବ୍ଦୀର Adamnanଙ୍କ ଲିଖିତ St Columba Bedeଙ୍କ ଲିଖିତ St Cuthbert, ନରମାନ୍ ରାଜାମାନଙ୍କ ଅମଳରେ ଏହି ସାହିତ୍ୟ ଯଥେଷ୍ଟ ପ୍ରଚଳିତ ହୋଇଥିଲା । ଏକାଦଶ ଖ୍ରୀଷ୍ଟାବ୍ଦରେ କ୍ୟାଣ୍ଟରବେରିର ଜଣେ ମହାନ୍ ଲାଟିନ୍ ଭାଷାରେ St Anselmଙ୍କ ଜୀବନଚରିତ ଲେଖି ଅତ୍ୟନ୍ତ ଯଶସ୍ୱୀ ହୋଇଥିଲେ । ସେ ଥିଲେ ଜଗତ ବିଖ୍ୟାତ କାଣ୍ଟରବେରି ଚର୍ଚ୍ଚର ପ୍ରଧାନ ଧର୍ମଯାଜକ । ମଧ୍ୟ ଯୁଗରେ ଏହା ଏକ ସଫଳ ଏବଂ ପୂର୍ଣ୍ଣାଙ୍ଗ ଜୀବନଚରିତ କହିଲେ ଅତ୍ୟୁକ୍ତି ହେବନାହିଁ । ଏହିଯୁଗରେ ଅଧିକାଂଶ ଜୀବନୀ ଥିଲା ଧର୍ମଜଗତର । ବାଇବେଲ୍ ପ୍ରମୂତ କଥାବସ୍ତୁ ଥିଲା ଅବଲମ୍ବିତ । ତେବେ ପ୍ରଥମ ଧର୍ମ ନିରପେକ୍ଷ ଜୀବନୀ ହିସାବରେ ପ୍ରସିଦ୍ଧ ରାଜାମାନଙ୍କର ଜୀବନଚରିତ ରଚିତ ହେଲା । ନବମ ଶତାବ୍ଦୀରେ ଜଣେ ବିଶପ ଇଂଲଣ୍ଡର ରାଜା ଆଲ୍ଫ୍ରେଡ୍‌ଙ୍କ ଜୀବନୀ ଲେଖିଥିଲେ । ଏଥିରେ ଅନେକ ଦୋଷ ଦୁର୍ବଳତା ଥିଲେ ହେଁ ଏହି ପ୍ରଥମ ଧର୍ମ ନିରପେକ୍ଷ ଜୀବନରେ ରାଜା ଆଲଫ୍ରେଡ୍ ଏବଂ ତାଙ୍କର ରାଜତ୍ୱକାଳ ସମ୍ପର୍କରେ ଅନେକ କଥା ଲିପିବଦ୍ଧ ହୋଇଥିବା ଜଣାଯାଏ । ପରବର୍ତ୍ତୀକାଳରେ ରାଜାମାନଙ୍କର ବଂଶାନୁଚରିତ ଲିପିବଦ୍ଧ ହେବାର ଏକ ପରମ୍ପରା ସୃଷ୍ଟି ହେଲା । ପୃଥିବୀର ପ୍ରତ୍ୟେକ ସଭ୍ୟ ସମାଜରେ ଏହି ପରମ୍ପରା ଦେଖାଯାଇଥାଏ । ତେଣୁ ଆଧୁନିକ ଯୁଗର ଐତିହାସିକଗଣ ଏବଂ ଜୀବନଚରିତର ଲେଖକ ଏହି ବଂଶାନୁଚରିତ ଅଥବା ରାଜାଙ୍କ ପାଞ୍ଜିରୁ ଅନେକ ତଥ୍ୟ ଗ୍ରହଣ କଲେ । ଇଉରୋପରେ ଲାଟିନ୍ ଭାଷାରେ ଲିଖିତ ଚୋକାସିଁଙ୍କ ଜୀବନୀମାନ ଖୁବ୍ ପ୍ରସିଦ୍ଧ ଥିଲା । ତାହାକୁ ପ୍ରଥମେ ଇଂରେଜୀରେ ଅନୁବାଦ କରିଥିଲେ । John Lydgate. ଇଂରେଜୀ ଚରିତମାଳା ମଧ୍ୟରେ ପ୍ରଥମ ଦୃଷ୍ଟି ଆକର୍ଷଣକାରୀ ଜୀବନୀ ଥିଲା The History of Richard III, ବୋଧହୁଏ 'ମୋରେ' ଥିଲେ ଏହାର ଲେଖକ । ଏପରି ସରସ ଜୀବନଚରିତ ଇଂରେଜୀ ଭାଷାରେ ପୂର୍ବରୁ କେବେହେଲେ ଲିଖିତ ହୋଇ ନଥିଲା । ତେଣୁ ଏହି ପୁସ୍ତକ ଇଂରେଜୀ ସାହିତ୍ୟରେ ଉଚିତ ସାହିତ୍ୟିକ ସମ୍ମାନ ଓ ସ୍ୱୀକୃତି ଲାଭକରିଥିଲା । ଟିଉଡ଼ର ରାଜବଂଶ ରାଜତ୍ୱ କାଳରେ ଇଂରେଜୀ ସାହିତ୍ୟରେ ଚରିତ ଲେଖକ ଅଧିକ ଉତ୍ସାହିତ ହୋଇଥିଲେ । ଏହିକାଳରେ ଦୁଇଟି ବିଖ୍ୟାତ ଜୀବନ ଚରିତ ହେଲା Life of Cardinal Wolsey ଏବଂ The Life of Sir Thomas More. ରାଣୀ ପ୍ରଥମ ଏଲିଜାବେଥ ମଧ୍ୟ ଜୀବନୀ ଲେଖକମାନଙ୍କୁ ଯଥେଷ୍ଟ ଉତ୍ସାହିତ କରିଥିଲେ । ସପ୍ତଦଶ ଶତାବ୍ଦୀ ଇଂରେଜୀ ସାହିତ୍ୟରେ ଚରିତ-ସାହିତ୍ୟ ବିଭାଗର ସୁବର୍ଣ୍ଣ ଅଧ୍ୟାୟ ଉନ୍ମୋଚିତ ହୋଇଥିଲା ବୋଲି ଆଲୋଚକଗଣ ମତବ୍ୟକ୍ତ କରିଥାନ୍ତି । ଅତୀତରେ ଜୀବନୀ ଲେଖା ଏବଂ ଲେଖକ କୌଣସି ସ୍ୱୀକୃତି ଲାଭ କରି ନଥିଲେ । ମାତ୍ର ବର୍ତ୍ତମାନ ଜୀବନୀଲେଖା ସାହିତ୍ୟ ଭଣ୍ଡାରର ଏକ ମୂଲ୍ୟବାନ ଅଂଶ ରୂପେ ଗୃହୀତ ହେଲା । ଏହି ସମୟରେ ପ୍ରଥମ ଜୀବନୀ ଅଭିଧାନ Athenae Oxonienses ସଂକଳିତ ହୋଇଥିଲା ୧୬୯୧-୯୨ ଖ୍ରୀଷ୍ଟାବ୍ଦରେ । ଭିକ୍ଟୋରିଆ ଯୁଗ ଇଂରେଜୀସାହିତ୍ୟ ଏବଂ ଆଧୁନିକ କାଳର ଇଂରେଜୀ ସାହିତ୍ୟରେ ବହୁ ଉଲ୍ଲେଖଯୋଗ୍ୟ ଜୀବନୀ ଏବଂ ଆତ୍ମଜୀବନୀ ପୁସ୍ତକ ଲିଖିତ ହୋଇ ବିଶ୍ୱସାହିତ୍ୟର ଗୌରବ ବୃଦ୍ଧି କରିଅଛି ।

(Chamber's Encyclopeadia Vol II 1950-320-321)

ସପ୍ତଦଶ ଶତାବ୍ଦୀ ପରେ ଇଂରେଜୀ ସାହିତ୍ୟରେ ଆଧୁନିକ କାଳରେ ଜୀବନୀ ସାହିତ୍ୟ ନିଜର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିଥିଲା ବୋଲି କୁହାଯାଇଛି । ତେବେ ପୂର୍ବରୁ ଜୀବନଚରିତ କହିଲେ ଯେପରି କେବଳ ସନ୍ଥ, ସାଧୁ, ସନ୍ନ୍ୟାସୀ, କେତେକ ମଧ୍ୟଯୁଗୀୟ ବୀର ଏବଂ ରାଜା ମାନଙ୍କର ଜୀବନ କାହାଣୀ ବୁଝାଉଥିଲା, ଆଧୁନିକ କାଳରେ ଜୀବନୀ ସାହିତ୍ୟ ସେହିପରି ସୀମିତ ଅର୍ଥ ନେଇ ପ୍ରକାଶିତ ହେଲନାହିଁ । ଜୀବନୀ ଲେଖକ ନିଜେ ମହତ୍ ଜୀବନ ସମ୍ପର୍କରେ ବ୍ୟାଖ୍ୟା କରି ନୂତନ ମୂଲ୍ୟବୋଧ ପ୍ରଚାର କଲେ । କେବଳ ଅଭିଜାତ କୁଳର କଥାବସ୍ତୁ ଗ୍ରହଣ କରା ନ ଯାଇ ସାଧାରଣ ସ୍ତରରେ ବ୍ୟକ୍ତିତ୍ୱଧାରୀ ମନୀଷୀ ମାନଙ୍କର ଜୀବନ ଚରିତ ମଧ୍ୟ ଲିପିବଦ୍ଧ ହେଲା । ୧୬୦୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ Advancement of Learning ପୁସ୍ତକର ଦ୍ୱିତୀୟ ଖଣ୍ଡରେ ଜୀବନଚରିତ ଇତିହାସର ଏକ ଅଂଗ ବୋଲି ମତବ୍ୟକ୍ତ କରି ତାର ସର୍ବଜନୀନ ମୂଲ୍ୟ ବୋଧ ସମ୍ପର୍କରେ ଲେଖିଥିଲେ—He argued that biography should deal both with public and private actions and not only with sovereigns and commanders but with worthy persons of all ranks,, ତେଣୁ ଅଷ୍ଟାଦଶ ଶତାବ୍ଦୀରେ ବସ୍‌ୱେଲଙ୍କ ଲିଖିତ 'ଜନ୍‌ସନ୍'ଙ୍କ ଜୀବନଚରିତ (୧୭୯୧) ଇଂରେଜୀ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ଅବଦାନ । ତା ପରେ ଏହି ପର୍ଯ୍ୟାୟରେ ସାମୁଏଲ୍ ଜନସନ୍‌ଙ୍କ Lives of the Poets ପୁସ୍ତକ ଗ୍ରହଣ କରାଯାଇ ପାରେ । ଆଧୁନିକ କାଳର କେତେକ ବିଖ୍ୟାତ ଜୀବନଚରିତ ହିସାବରେ ନିମ୍ନଲିଖିତ ପୁସ୍ତକ ଗୁଡ଼ିକ ଉଲ୍ଲେଖଯୋଗ୍ୟ । ଲିଟନଷ୍ଟ୍ରାଚେଙ୍କ Queen Victoria, ଉଇନ୍‌ଷ୍ଟନ୍ ଚର୍ଚ୍ଚିଲଙ୍କ ଲିଖିତ Marlborough, ଆଲବର୍ଟ ବେଭରିଜଙ୍କ Life of John Marshall, ଇଭକ୍ୟୁରିଙ୍କ ଲିଖିତ Madam Curie, ଫିଲିପ୍ ଗୁଏଡ଼ାଲଙ୍କ Palmerston, ଏମିଲ ଲୁଡ୍‌ଵିଗଙ୍କ Goethe ଏବଂ Bismarch ପ୍ରଭୃତି ଉଲ୍ଲେଖ ଯୋଗ୍ୟ । ସେହିପରି ଇଂରେଜୀରେ ଲିଖିତ କେତେକ ବିଖ୍ୟାତ ଆତ୍ମଚରିତ ମଧ୍ୟ ଏ କ୍ଷେତ୍ରରେ ପ୍ରଣିଧାନଯୋଗ୍ୟ ଯଥା :—ବେଞ୍ଜାମିନ୍ ଫ୍ରାଙ୍କଲିନ ଆତ୍ମଚରିତ (୧୭୦୬-୯୦), କାସାନୋଭା (୧୭୨୫-୭୮) ଲିଓଟଲଷ୍ଟୟ (୧୮୭୯-୧୯୪୦) । ସାମ୍ପ୍ରତିକ କାଳରେ ବହୁ ରାଜନୀତିକ, ବୈଜ୍ଞାନିକ, ଲେଖକ ପ୍ରଭୃତି ଆତ୍ମକାହାଣୀ ପ୍ରକାଶ କରି ସମକାଳୀନ ସମାଜରେ ଚହଲ ପକାଇ ଦେଇଛନ୍ତି । ଆତ୍ମଚରିତର ଲେଖକ ପ୍ରାଞ୍ଜଳ ଭାବରେ ଘଟଣାକୁ ଲିପିବଦ୍ଧ କରିଥାଏ । ପ୍ରତ୍ୟେକ ଘଟଣା ସମ୍ପର୍କରେ ନିଜର ପ୍ରତିକ୍ରିୟା ପ୍ରକାଶ କରିଥାଏ । ସେ ଯେଉଁ ତଥ୍ୟ ଗୁଡ଼ିକୁ ପ୍ରକାଶ କରେ, ସେ ସମ୍ପର୍କରେ ସେ ହୁଏ ଅତ୍ୟନ୍ତ ସହାନୁଭୂତିସମ୍ପନ୍ନ ।

ପାଶ୍ଚାତ୍ୟ ସାହିତ୍ୟରେ ଜୀବନ ଚରିତ ଅଧ୍ୟାୟଟି ଆଜି ଅତ୍ୟନ୍ତ ସମୃଦ୍ଧ । ଆଜି ସେଗୁଡ଼ିକ କେବଳ ସୁଖପାଠ୍ୟ ନୁହନ୍ତି, ଅତ୍ୟନ୍ତ ପ୍ରଭାବଶାଳୀ ମଧ୍ୟ । ଉପନ୍ୟାସ ପରେ ବୋଧହୁଏ ଜୀବନ ଚରିତର ଲୋକପ୍ରିୟତା ଅଧିକ ବୋଲି ମନେ ହୋଇଥାଏ ।

# ପ୍ରାଚ୍ୟସାହିତ୍ୟରେ ଜୀବନଚରିତର ଧାରା

ପରାଧୀନ ଭାରତବର୍ଷରେ ଇଂରେଜୀଭାଷା ଶିକ୍ଷାର ମାଧ୍ୟମ ହେବାରୁ ଭାରତୀୟ ଶିକ୍ଷା ବ୍ୟବସ୍ଥାରେ ଇଂରେଜୀ ସାହିତ୍ୟ ଓ ଶିକ୍ଷାନୀତିର ପ୍ରଭାବ ବହୁକାଳ ପର୍ଯ୍ୟନ୍ତ ଅତୁଟ ରହିଥିଲା । ପ୍ରାଚ୍ୟ ଭାଷା, ସାହିତ୍ୟ, ଧର୍ମ ଓ ସଂସ୍କୃତି ଅନଭିଜ୍ଞ ବହୁ ପାଶ୍ଚାତ୍ୟ ପଣ୍ଡିତ ପାଶ୍ଚାତ୍ୟ ଆଦର୍ଶରେ ଏ ଦେଶର ଇତିହାସ ଓ ଅନ୍ୟାନ୍ୟ ବିଭାଗରେ ଲେଖନୀ ଚାଳନା କରିଥିଲେ । ଏ ଦେଶରେ ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ନୂତନ ଶିକ୍ଷିତଗୋଷ୍ଠୀ ଅତି କରୁଣ ଭାବରେ ପରମୁଖାପେକ୍ଷୀ ମନୋଭାବର ଦାସତ୍ୱ ସ୍ୱୀକାର କରି ଏ ଦେଶର ସମାଜ ଓ ଇତିହାସର ମୂଲ୍ୟାଙ୍କନ କଲେ । ତେଣୁ ସେମାନେ ପାଶ୍ଚାତ୍ୟ ଦେଶର ଅହଙ୍କାରୀ ଲେଖକମାନଙ୍କ ସହିତ ସମାନ ସ୍ୱରରେ ଘୋଷଣା କଲେ ଯେ ଏ ଦେଶର ଲୋକେ ଇତିହାସ ଲିପିବଦ୍ଧ କରିବା ଜାଣନ୍ତି ନାହିଁ । ଏ ଦେଶର ସାହିତ୍ୟରେ ଜୀବନଚରିତ ତେଣୁ ସମ୍ପୂର୍ଣ୍ଣ ଭାବରେ ପାଶ୍ଚାତ୍ୟ ପ୍ରଭାବିତ ଏକ ଧାରା ବୋଲି ସେମାନେ ମତବ୍ୟକ୍ତ କରନ୍ତି । ମାତ୍ର ଏପରି ଧାରଣା ସମ୍ପୂର୍ଣ୍ଣ ଭ୍ରମାତ୍ମକ ।

ଭାରତବର୍ଷ ଏକ ପ୍ରାଚୀନ ସଭ୍ୟଦେଶ । ଏ ଦେଶରେ ସାହିତ୍ୟ ପୃଥିବୀର ସାହିତ୍ୟ-ମାନଙ୍କ ମଧ୍ୟରେ ପ୍ରାଚୀନତମ ବୋଲି ଜଣାଯାଇଛି । ପ୍ରାଚୀନ ଭାରତୀୟ ସାହିତ୍ୟରେ ବହୁ ଋଷିମାନଙ୍କ ବିଷୟରେ ପରିଚୟ ଦେଖିବାକୁ ମିଳିଥାଏ । ସେହିପରି ପୁରାଣ ସାହିତ୍ୟରେ କେତେ ସାମନ୍ତ ପରିବାର, ରାଜପରିବାରର ବର୍ଣ୍ଣନା ସହିତ ବହୁ ବୀର ଏବଂ ଋଷିମାନଙ୍କର ଜୀବନକାହାଣୀ ଲିପିବଦ୍ଧ ହୋଇଥିବା ଜଣାଯାଏ । ସେହିପରି ବୌଦ୍ଧଧର୍ମ, ଜୈନଧର୍ମର ସାହିତ୍ୟ ଅତି ବିଶାଳ । ଏହି ସାହିତ୍ୟ ମାଧ୍ୟମରେ ବିଭିନ୍ନ ଧର୍ମଗୁରୁ ତୀର୍ଥଙ୍କରଙ୍କର ଜୀବନଗାଥା ଲିପିବଦ୍ଧ ହୋଇଅଛି । ଗୀତ ଆକାରରେ ଯୁଗ ଯୁଗ ଧରି ଏହିପରି ପ୍ରଚୁର ବର୍ଣ୍ଣନା ଦେଖିବାକୁ ମିଳେ । ତେଣୁ ଭାରତର ଏହି ପ୍ରାଚୀନ ସାହିତ୍ୟ ସମ୍ଭାରରେ ଜୀବନକାହାଣୀ ଲିପିବଦ୍ଧ କରିବାର ଯେ ପ୍ରୟାସ ହୋଇଥିଲା ଏହା ସ୍ୱୀକାର କରିବାକୁ ହେବ । ସାମ୍ପ୍ରତିକ କାଳର ଐତିହାସିକଗଣ ଆଧୁନିକ ଯୁଗର ଇତିହାସ ପ୍ରଣୟନ କଲାବେଳେ ଅନେକ ସମୟରେ ପ୍ରାଚୀନ ପୌରାଣିକ ଇତିବୃତ୍ତରୁ ସେମାନଙ୍କ ସତ୍ୟ ଉଦ୍‌ଘାଟନ ପ୍ରୟାସ କରିଥାନ୍ତି । ଯୁଗ ଯୁଗ ଧରି ଏ ଦେଶରେ ସାମନ୍ତବାଦୀ ସମାଜବ୍ୟବସ୍ଥା ପ୍ରଚଳିତ ହେଲା । ରାଜନ୍ୟମଣ୍ଡଳୀ ସମାଜର ନେତୃତ୍ୱ

ନେଉଥିଲେ । ବିଭିନ୍ନ ଉତ୍ସବ ଅନୁଷ୍ଠାନ ଉପଲକ୍ଷେ ରାଜା ରାଣୀଙ୍କର ଗୌରବଗାନ କରିବା ଏକ ବିଧି ଥିଲା । ବିଶେଷତଃ ରାଜସଭାରେ ସ୍ତୁତିପାଠକଗଣ ପ୍ରଶଂସାବାକ୍ୟ ଛଳରେ ରାଜବଂଶର ଏବଂ ରାଜପୁରୁଷଙ୍କର ଗୌରବକାହାଣୀ ବର୍ଣ୍ଣନା କରୁଥିଲେ । ସ୍ୱୟମ୍ବର ସଭାରେ ମଧ୍ୟ ଅଭିଜ୍ଞ ଦାସୀଗଣ ରାଜପୁରୁଷମାନଙ୍କର କୀର୍ତ୍ତିକଳାପ ଏବଂ ବଂଶାଭିମାନ ବର୍ଣ୍ଣନା କରିବାର ବ୍ୟବସ୍ଥା ରହିଥିଲା । ଅଧିକାଂଶ ରାଜଦରବାରରେ ପାଞ୍ଜିଆମାନେ ସ୍ଥାନ ଲଭ କରୁଥିଲେ । ରାଜବଂଶାନୁଚରିତ ସେମାନେ ପୁରୁଷାନୁକ୍ରମେ ଲିପିବଦ୍ଧ କରି ଆସୁଥିଲେ । ଏହି ସମ୍ପର୍କରେ କୁହାଯାଇଛି ଏହିପରି—"This is proved by the carefully preserved lists of teachers in various vedic texts as well as in writings of the Buddhists, Jains, and other religious sects. That this spirit also extended to the political field is shown not only by the songs and poems in praise of Kings and heroes referred to in Vedic literature, but also by the practice of reciting eulogies of kings and royal families on ceremonial occasions."

(The History and Culture of the Indian people. vol. I editor--R. C. Majumdar—1951—P. 47)

ଭାରତର ଅସଂଖ୍ୟ ପୁରାଣ ମଧ୍ୟରେ କଳ୍ପନା ବହୁଳତା ଅଧିକ ସ୍ଥାନଲାଭ କରିଥିଲେ ହେଁ ତାହାର ମଧ୍ୟରୁ ତତ୍କାଳୀନ ଇତିହାସ ଏବଂ ଜୀବନ-ଚରିତର ସୂଚନା ଗ୍ରହଣ କରିବାକୁ ହେବ । ପୁରାଣରେ ଲିପିବଦ୍ଧ ହୋଇଥିବା ଦୀର୍ଘ ରାଜବଂଶର କାହାଣୀ ମଧ୍ୟରେ କଳ୍ପନା ବିଳାସକୁ ବାଦ୍ ଦେଇ ଏ ଯୁଗର ଐତିହାସିକ ପଣ୍ଡିତଗଣ ପ୍ରଚଳିତ ଐତିହାସିକ ସତ୍ୟର ଅନୁସନ୍ଧାନ କରୁଅଛନ୍ତି । ଏତଦ୍‌ବ୍ୟତୀତ ବଂଶାନୁଚରିତ ଅଥବା ବିବରଣୀ ଲିପିବଦ୍ଧ କରିବାର ପ୍ରାଚୀନ କୌଶଳ ଭାରତୀୟମାନେ ଜାଣିଥିଲେ ଏବଂ ତହିଁରେ ଆମେ ସେ ଯୁଗର ଇତିହାସ ଏବଂ ବ୍ୟକ୍ତିମାନଙ୍କର କେତେକ ପରିଚୟ ଲାଭ କରିଥାଉଁ । ହୁଏନ୍‌ସା ନଙ୍କ ଏହି ସମ୍ପର୍କରେ ଅନେକ କଥା ଲିପିବଦ୍ଧ କରିଯାଇଥିବା ବିଷୟ ଐତିହାସିକଗଣ ସ୍ୱୀକାର କରିଅଛନ୍ତି—

"Even so late as the seventh century A. D. Hiuen Tsang noticed that each province in India had its own official for maintaining written records on which were mentioned good and evil events with calamities and fortunate occurrences. That this practice continued for centuries after Hiuen Tsang is proved by a large number of local chronicles and the preambles in old land and

grants which record the genealogies of royal families; sometimes for several generations."

(I B I D—P. 47—48)

ସପ୍ତମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନ୍‌ସାଙ୍ଗ ଭାରତ ବିବରଣୀ ଏଥିପାଇଁ ଏକ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ । ମହାନ ଚୀନ୍ ପରିବ୍ରାଜକ ପାଦରେ ଚାଲି ଚାଲି ଭାରତର ବହୁ ଅଞ୍ଚଳ ଭ୍ରମଣ କରିଥିଲେ, ଅନେକ ରାଜସଭାରେ ଆଦୃତ ହୋଇ ଅଭ୍ୟର୍ଥନା ଲାଭ କରିଥିଲେ । କେତେକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରେ ଛାତ୍ର ଭାବରେ ଅଧ୍ୟୟନ କରିଥିଲେ ଏବଂ ବହୁ ବୌଦ୍ଧପଣ୍ଡିତମାନଙ୍କ ମେଳରେ ଶାସ୍ତ୍ରାଲୋଚନାରେ ରତ ରହିଥିଲେ । ତାଙ୍କ ବିବରଣୀରେ ସମକାଳୀନ ବହୁ ନରପତି, ଏବଂ ଶ୍ରମଣ ତଥା ପଣ୍ଡିତମାନଙ୍କ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିବରଣୀ ଦେଖିବାକୁ ମିଳିଥାଏ ।

ସୁଖର କଥା ଏହି କାଳରେ ଅନେକ ଲେଖକ ନିଜର ପୃଷ୍ଠପୋଷକତା କରୁଥିବା ରାଜାମାନଙ୍କ ବିଷୟରେ ଲେଖିବାକୁ ଆରମ୍ଭ କରିଥିଲେ । ଏହି ସାହିତ୍ୟଗୁଡ଼ିକ ଜୀବନଚରିତ ସାହିତ୍ୟ ରୂପେ ଭାରତୀୟ ମଧ୍ୟଯୁଗୀୟ ଇତିହାସରେ ଅନ୍ତରାଳରେ ଲିପିବଦ୍ଧ ହୋଇଅଛି ।

ସଂସ୍କୃତ ସାହିତ୍ୟରେ ଗଦ୍ୟସମ୍ରାଟ ହିସାବରେ ମହାକବି ବାଣଭଟ୍ଟ ସୁପରିଚିତ । ସେ ସମ୍ରାଟ ହର୍ଷଙ୍କ ଜୀବନକାହାଣୀ ଲେଖି ସେହି ଗ୍ରନ୍ଥର ନାମ ଦେଇଥିଲେ ହର୍ଷଚରିତ । ସେହିପରି ବାକ୍‌ପତି (Vakpati) ଲେଖିଲେ ଯଶୋବର୍ମନଙ୍କ ସମ୍ବନ୍ଧରେ ଏବଂ ବିଲହଣ ଲେଖିଲେ ବିକ୍ରମାଙ୍କ ଚରିତ । ମଧ୍ୟଯୁଗରେ 'ରାମଚରିତ' ବୋଲି ଏକ ଗ୍ରନ୍ଥ ସନ୍ଧ୍ୟାକର ନନ୍ଦୀଙ୍କଦ୍ୱାରା ଲିଖିତ ହୋଇଅଛି । ଏଥିରେ ଗୋଟିଏ ଅର୍ଥ ରାମାୟଣ ବିଷୟ ବସ୍ତୁକୁ ମୂଳ କରି ଏବଂ ଅନ୍ୟ ଅର୍ଥଟି ବଙ୍ଗର ରାଜା ରାମପାଳଙ୍କ ଜୀବନଚରିତ ବିଷୟରେ । ସଂସ୍କୃତ କାବ୍ୟଯୁଗରେ ଏହି ସେଉଁ ଚରିତଧର୍ମୀ କାବ୍ୟଗୁଡ଼ିକ ରଚିତ ହେଲା ଏଗୁଡ଼ିକ ଇତିହାସ ସମ୍ମତ ନହୋଇ କାବ୍ୟାନୁଗତ କଳ୍ପନା ପ୍ରବଣତାକୁ ଅଧିକ ଆଶ୍ରୟ କରିବା ସ୍ୱାଭାବିକ ଥିଲା । ତଥାପି ଏଗୁଡ଼ିକରେ ସେହି ସେହି ଚରିତ୍ରଗୁଡ଼ିକ ସମ୍ପର୍କରେ ଉଜ୍ଜ୍ୱଳ ସୂଚନା ଦେଖିବାକୁ ମିଳିଥାଏ ।

ଐତିହାସିକ ଦୃଷ୍ଟିରେ ଜୟସିଂହଙ୍କ ଲିଖିତ କୁମାରପାଳ ଚରିତ ଏକ ଉଲ୍ଲେଖଯୋଗ୍ୟ ଚରିତଗ୍ରନ୍ଥ । ଏଥିରେ ଗୁଜୁରାଟର ଚାଲୁକ୍ୟ ରାଜାଙ୍କ ଅମଳର ଇତିହାସ ଉଦ୍‌ଘାଟିତ ହୋଇଅଛି । ଏହିକାଳରେ ଆଉ ଏକ ବିଖ୍ୟାତ ଗ୍ରନ୍ଥ ହେଉଛି ହେମଚନ୍ଦ୍ରଙ୍କ କୁମାରପାଳ ଚରିତ । ପଦ୍ମଗୁପ୍ତ ଲେଖିଥିଲେ 'Navasahasarika Charita' ସେହିପରି ବଲ୍ଲାଳଙ୍କ ଭୋଜପ୍ରବନ୍ଧ, ଚାନ୍ଦ ବୋରଦାଇଙ୍କ ପୃଥ୍ୱୀରାଜ ଚରିତ, ଅନ୍ୟ ଜଣେ କବିଙ୍କର ପୃଥ୍ୱୀରାଜ ବିଜୟ ପ୍ରଭୃତି ଉଲ୍ଲେଖ କରାଯାଇପାରେ । ଏହି ପୁସ୍ତକଗୁଡ଼ିକ ମୁଖ୍ୟତଃ କାବ୍ୟ । ତେଣୁ କଳ୍ପନାର ବାହୁଲ୍ୟ ରହିବା ସ୍ୱାଭାବିକ । ଇତିହାସ ଲିପିବଦ୍ଧ ହେବା ଉଦ୍ଦେଶ୍ୟରେ ଏହି ଚରିତଧର୍ମୀ କାବ୍ୟ ଲିଖିତ ହୋଇ ନଥିଲା । ବରଂ ଏଗୁଡ଼ିକରେ ଲେଖକଙ୍କର ପାଣ୍ଡିତ୍ୟ କାବ୍ୟଧର୍ମୀ ଅନୁଚିନ୍ତା

ଅଧିକ ପ୍ରକାଶିତ ହୋଇଅଛି । ତେବେ ବି ଏହି କାବ୍ୟଗୁଡ଼ିକ ଭାରତୀୟ ସାହିତ୍ୟର ଚରିତଧର୍ମୀ ପରଂପରାର ସୂଚନା ଦେଇଅଛି । ଦ୍ୱାଦଶ ଶତାବ୍ଦୀରେ ଲିଖିତ କଲ୍ହଣଙ୍କ ରାଜତରଙ୍ଗିଣୀର ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । ଏହି ଗ୍ରନ୍ଥକୁ କେହି କେହି କାଶ୍ମୀରର ଇତିହାସ ବୋଲି କହିଥାନ୍ତି । ମାତ୍ର ଏହା କେବଳ କାଶ୍ମୀରର ଇତିହାସ ନୁହେଁ, ତତ୍କାଳୀନ ପ୍ରାଚୀନ ଭାରତର ଏହା ଏକ ଐତିହାସିକ ଦଲିଲ୍ କହିଲେ ଅତ୍ୟୁକ୍ତି ହେବନାହିଁ । ରାଜା କନିଷ୍କଙ୍କ ବିଷୟରେ ଅନେକ କଥା ଏହି ଗ୍ରନ୍ଥରୁ ମିଳିଥାଏ । ସପ୍ତମ ଶତାବ୍ଦୀଠାରୁ ପ୍ରକୃତ ଏବଂ ବିଶୁଦ୍ଧ ଇତିହାସ ଓ ବିବରଣୀ ଏଥିରେ ଲିପିବଦ୍ଧ ହୋଇଅଛି । ତେଣୁ ଏହି ଗ୍ରନ୍ଥ ବହୁ ରାଜବଂଶ ଏବଂ ରାଜପୁରୁଷଙ୍କ ସମ୍ପର୍କରେ ପ୍ରାଞ୍ଜଳ ଚରିତାବଳୀର ଲିପିବଦ୍ଧ କାହାଣୀ ବୋଲି ସ୍ୱୀକାର କରିବାକୁ ହେବ । ଏହି ପୁସ୍ତକ ସମ୍ପର୍କରେ କୁହାଯାଇଛି ଏହିପରି—

"The author narrates the career of each king in chronological order with a fair amount of detail, showing scrupulous impartiality on his criticism of men and events and exhibiting soundness of judgement and healthy liberality on his general expression of views. As he gradually cames nearer of his own age the history becomes fuller and more real etc with interesting accounts of men and things. It ceases to be merely a chronicle of dry details and faithfully presents the ebb and flow of national life, the periods of glory and misery and the greatness and weakness of men and rulers ·····

(I.-B. I -D —P. 50)

ଏହିପରି ଆଲୋଚନା କଲେ ଭାରତର ପ୍ରତ୍ୟେକ ପ୍ରାନ୍ତରେ ସଂସ୍କୃତରେ ଏବଂ କେତେକ ସମୃଦ୍ଧ ପ୍ରାନ୍ତୀୟ ଭାଷାରେ ଇତିହାସର ଉପାଦାନବହନକାରୀ ଚରିତମାଳା ସଙ୍କଳନ ଉପଯୋଗୀ ଅନେକ ଗ୍ରନ୍ଥ ମିଳିପାରିବ । ଅବଶ୍ୟ ସେମାନେ କେବଳ ଚରିତ ଲିପିବଦ୍ଧ ଉଦ୍ଦେଶ୍ୟରେ ଏ ଗ୍ରନ୍ଥ ସେ ଲେଖି ନଥିଲେ, ଏକଥା ସ୍ୱୀକାର କରିବାକୁ ହେବ ।

ଏହି ପ୍ରସଙ୍ଗରେ ଭାରତରେ ବହୁକାଳରୁ ପ୍ରଚଳିତ ଶିଳାଲିପି ମଧ୍ୟ ଆଲୋଚନା କରାଯାଇପାରେ । ଭୁବନେଶ୍ୱରର ଖଣ୍ଡଗିରି ପର୍ବତ ଗାତ୍ରରେ ଖାରବେଳଙ୍କ ଖୋଦିତ ଲିପି ଭାରତ ପ୍ରସିଦ୍ଧ । ଏହି ଲିପିମାଳା ଅଧ୍ୟୟନ କଲେ ସମ୍ରାଟ୍ ଖାରବେଳଙ୍କ ଜୀବନଚରିତ ନାନାଭାବରେ ଉଦ୍ଭାସିତ ହୋଇଉଠେ । ମୂଳ ପାଲିଭାଷାରେ ଏହା ଲିଖିତ ହୋଇଥିବାରୁ ଏଠାରେ ତାହାର ଓଡ଼ିଆ ଅନୁବାଦ ପ୍ରଦତ୍ତ ହେଲା—

"୧ମ ଧାଡ଼ି—ଅର୍ହନ୍ତମାନଙ୍କୁ ନମସ୍କାର ସର୍ବସିଦ୍ଧମାନଙ୍କୁ ନମସ୍କାର ଆର୍ଯ୍ୟ (ବୀର) ମହାରାଜା ମହାମେଘବାହନ ଚେତ ରାଜବଂଶ ବର୍ଦ୍ଧନ ପ୍ରଶସ୍ତ ଶୁଭଲକ୍ଷଣ ଚତୁରନ୍ତ (ରକ୍ଷଣ) ଗୁଣୋପେତ କଳିଙ୍ଗାଧିପତି ଶ୍ରୀ ଖାରବେଳ ।

୨ୟ ଧାଡ଼ି—ପନ୍ଦର ବର୍ଷ ଶ୍ରୀ କଡ଼ାର ଶରୀର କୁମାର ରୂପେ କ୍ରୀଡ଼ା କଲେ ।

ତାହାପରେ ଲେଖ ରୂପେ ଗଣନା ବ୍ୟବହାର ବିଧି ବିଶାରଦ ସର୍ବବିଦ୍ୟାବଦାତ ଯୁବରାଜ ରୂପେ ନବବର୍ଷ ଶାସନ କଲେ । ସମ୍ପୂର୍ଣ୍ଣ ଚତୁର୍ବିଂଶତି ବର୍ଷ ସେ ବର୍ଦ୍ଧମାନ ଯୌବନାଭିଜୟ ।

୩ୟ ଧାଡ଼ି—ତୃତୀୟ କଳିଙ୍ଗ ରାଜବଂଶ ପୁରୁଷଯୁଗରେ ମହାରାଜାଭିଷିକ୍ତ ହେଲେ । ଅଭିଷିକ୍ତ ହେବାମାତ୍ରେ ପ୍ରଥମ ବର୍ଷରେ କଳିଙ୍ଗନଗରରେ ବାତବିହତ ଗୋପୁରପ୍ରାକାର ନିବେଶନର ପ୍ରତି ସଂସ୍କାର କରିଥିଲେ । ଗମ୍ଭୀର ଶୀତଳ ତଡ଼ାଗ ପ୍ରଣାଳୀ ବନ୍ଧାଇଲେ ।

୪ର୍ଥ ଧାଡ଼ି—ସର୍ବ ଉଦ୍ୟାନର ପ୍ରତି ସଂସ୍ଥାପନ ପଞ୍ଚତ୍ରିଶ ସହସ୍ର-ମୁଦ୍ରାରେ କଲେ । ସେ ପ୍ରଜାରଞ୍ଜନ କରିଥିଲେ । ଦ୍ୱିତୀୟ ବର୍ଷରେ ଅଚିନ୍ତିତରେ ପଶ୍ଚିମଦିଗକୁ ହସ୍ତି ଗଜନର ରଥ ବହୁଳ ଦଣ୍ଡ ପଠାଇଲେ । ଅସୁକ ନଗରକୁ କଳିଙ୍ଗାଗତ ସେନାଦ୍ୱାରା ଆକ୍ରମଣ କଲେ ।

୫ମ ଧାଡ଼ି—ତୃତୀୟ ବର୍ଷରେ ପୁଣି ଗନ୍ଧର୍ବବେଦ ବୁଧ ଦର୍ପ ଗୀତ ବାଦ୍ୟ ବାଦନ ସନ୍ଦର୍ଶନ କରି (ପ୍ରଦର୍ଶନ କରାଇ) ଉତ୍ସବ ସମାଜ ମଞ୍ଚ କରାଇ ନଗରରେ କ୍ରୀଡ଼ା କରିଥିଲେ । ସେହିପରି ଚତୁର୍ଥ ବର୍ଷରେ ବିଦ୍ୟାଧରାଧିବାସ ଅର୍ହତପୂର୍ବରେ କଳିଙ୍ଗ ପୂର୍ବରାଜାମାନଙ୍କର ଧର୍ମ ଓ ମତରେ ସର୍ବତ୍ର ଧର୍ମକୂଟରେ ଶାସନ କରିଥିଲେ । ସ୍ତ୍ରୀତବର୍ଜିତ ନିକ୍ଷିପ୍ତ-ଛତ୍ର-ଭୃଙ୍ଗାର-ହୃତ ରତ୍ନ-ସ୍ୱାପତେୟ ସର୍ବରାଷ୍ଟ୍ରିକ ଓ ଭୋଜକମାନଙ୍କୁ ପାଦ ବନ୍ଦନା କରାଇଥିଲେ ।

୧୬ ଧାଡ଼ି—ସେ କ୍ଷେମରାଜ ବର୍ଦ୍ଧରାଜ, ଭିକ୍ଷୁରାଜ, ଧର୍ମରାଜ ଦେଖି ଶୁଣି କଲ୍ୟାଣ ସମ୍ଭୂତ (ଅନୁଭବ କରୁଛନ୍ତି) ।

୧୭ ଧାଡ଼ି—ଗୁଣବିଶେଷ କୁଶଳ ସର୍ବପାଷଣ୍ଡ ପୂଜକ ସର୍ବଦେବାୟତନ ସଂସ୍କାରକାରକ ଅପ୍ରତିହତଚକ୍ରବାହନବଳ ଚକ୍ରଧର ଗୁପ୍ତଚକ୍ର, ପ୍ରବୃତ୍ତଚକ୍ର ରାଜର୍ଷିବଂଶକୁଳ ବିନିସୃତ ମହାବିଜୟୀ ରାଜା ଖାରବେଳ ଶ୍ରୀ । (ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ—ପ୍ରଥମ ଭାଗ—୧୯୬୮, ପୃ. ୩୪-୩୫)

ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀଠାରୁ ପ୍ରାୟ ମୁସଲମାନ ରାଜତ୍ୱକାଳ ପର୍ଯ୍ୟନ୍ତ ଭାରତର ବିଭିନ୍ନ ସ୍ଥାନରେ ବୌଦ୍ଧ, ଜୈନ ଏବଂ ହିନ୍ଦୁ ରାଜାମାନେ ଶିଳାଲିପି ଖୋଦିତ କରାଇ ଅଛନ୍ତି । ଏଗୁଡ଼ିକରେ ରାଜ୍ୟଶାସନ ପ୍ରଣାଳୀ ଏବଂ ରାଜବଂଶ ସମ୍ପର୍କରେ ତଥା ରାଜପୁରୁଷମାନଙ୍କ ସମ୍ପର୍କରେ ଅନେକ ତଥ୍ୟ ମିଳିଥାଏ । ବିବରଣୀ ପ୍ରଶସ୍ତିମୂଳକ ହେଲେ ହେଁ ତହିଁରୁ ଇତିହାସର ସତ୍ୟ ଉଦ୍‌ଘାଟନ କରାଯାଇଥାଏ । ବାସ୍ତବିକ ମୋଗଲ ରାଜତ୍ୱକାଳରେ ଭାରତର

ଖଣ୍ଡି ଆତ୍ମଚରିତ ଏବଂ ଜୀବନଚରିତ ଦେଖିବାକୁ ମିଳିଥାଏ । ମୋଗଲ ସମ୍ରାଟ୍ ବାବର, ଜାହାଙ୍ଗୀର ଅତି ଚମତ୍କାର ଆତ୍ମଚରିତ ଲେଖିଯାଇଅଛନ୍ତି । ଆବୁଲ୍‌ଫଜଲଙ୍କ ଲିଖିତ ଆଇନ ଆକବରୀ ଏବଂ ଆକବରନାମା ସମ୍ରାଟ୍ ଆକବରଙ୍କ ଜୀବନଚରିତ ସମ୍ପର୍କରେ ଅମୂଲ୍ୟ ଗ୍ରନ୍ଥ । ଏତଦ୍‌ବ୍ୟତୀତ ବହୁ ଆରବୀ ଏବଂ ପାର୍ସି ଲେଖକ ସମକାଳୀନ ରାଜା ଏବଂ ଶ୍ରେଷ୍ଠ ବ୍ୟକ୍ତିମାନଙ୍କ ସମ୍ପର୍କରେ ଜୀବନଚରିତ ଲେଖି ଯାଇଥିବା ଜଣାଯାଏ । ସେଗୁଡ଼ିକ ମଧ୍ୟରେ ମହମ୍ମଦ କାଶିମ୍ ଫିରସ୍ତାଙ୍କ ଲିଖିତ ଗୁଲ୍‌ସମ୍-ଇ-ଇବ୍ରାହିମ୍, ଜିୟାଉଦ୍ଦିନଙ୍କ ରଚିତ ତାରିକ୍-ଇ-ଫିରୁଜସାହି, ମିହାଁଜୁଦ୍ଦିନଙ୍କ ପ୍ରଣୀତ ତବାକତ୍-ଇ-ନାସିରି ଅବଦୁଲ୍ କାଦର ବଦୁଆନଙ୍କ ଲିଖିତ ମୁନ୍‌ତାଖାବ୍-ଉତ୍-ତୱାରିଖ ଇତ୍ୟାଦି ପ୍ରଣିଧାନ ଯୋଗ୍ୟ ।

ଏହାଛଡ଼ା ଏହି କାଳରେ କେତେକ ବିଦେଶୀ ଭ୍ରମଣ କାହାଣୀ ପାଠ କଲେ ଭାରତୀୟ ଚରିତ ସମ୍ପର୍କରେ ଆଲୋକପାତ ହୋଇଥିବା ଜଣାଯାଏ । ତ୍ରୟୋଦଶ ଶତାବ୍ଦୀର ଶେଷଭାଗରେ ଇଉରୋପୀୟ ମର୍କୋପୋଲ ଏ ଦେଶ ଭ୍ରମଣ କରି ଏକ ଉଚ୍ଚକୋଟୀର ଭ୍ରମଣ କାହାଣୀ ଛାଡ଼ିଯାଇଛନ୍ତି । ଏଥିରୁ ସେ କାଳର ଇତିହାସ ଏବଂ ଐତିହାସିକ ପୁରୁଷଙ୍କ ବିଷୟରେ ଧାରଣା କରାଯାଇଥାଏ । ଚତୁର୍ଦ୍ଦଶ ଶତାବ୍ଦୀରେ ବିଖ୍ୟାତ ଆଫ୍ରିକୀୟ ଭ୍ରମଣକାରୀ ଇବନ୍‌ବତୁତା ଭାରତ ଭ୍ରମଣ କରି ଏକ ଭ୍ରମଣ କାହାଣୀ ଲିପିବଦ୍ଧ କରିଥିଲେ । ଏହି ଗ୍ରନ୍ଥରେ ରାଜା ମହମ୍ମଦ ତୋଗଲକଙ୍କ ସମ୍ପର୍କରେ ବହୁ ତଥ୍ୟ ମିଳିଥାଏ । ପରବର୍ତ୍ତୀକାଳରେ ଏହି ଭ୍ରମଣ ସାହିତ୍ୟ ବିକଶିତ ହୋଇଅଛି । ବହୁ ବିଦେଶୀ ଭ୍ରମଣକାରୀ ଅତି ମୂଲ୍ୟବାନ୍ ତଥ୍ୟ ଲିପିବଦ୍ଧ କରାଯାଇଛି । ସେହି ପୁସ୍ତକମାନଙ୍କରୁ ସମକାଳୀନ ବିଶିଷ୍ଟ ଚରିତମାନଙ୍କ ସମ୍ପର୍କରେ ସବିଶେଷ ବିବରଣୀ ସଂଗ୍ରହ କରାଯାଇପାରେ ।

ଏତଦ୍‌ବ୍ୟତୀତ ସଂସ୍କୃତ ରାମାୟଣ, ମହାଭାରତ, ଭାଗବତ, ବିଷ୍ଣୁପୁରାଣ, ରଘୁବଂଶ, ବୁଦ୍ଧଚରିତ, ସଂସ୍କୃତ ଭକ୍ତମାଳା, ପାଲିସାହିତ୍ୟ ପ୍ରଭୃତିରେ ଜୀବନଚରିତ ସମ୍ବନ୍ଧରେ ବହୁ ମୂଲ୍ୟବାନ ବିବରଣୀ ମିଳିଥାଏ । ବିଶେଷତଃ ପ୍ରାଦେଶିକ ଭାଷାରେ ଅନୁବାଦ ପୁରାଣ ମାନଙ୍କରୁ ତତ୍କାଳୀନ ଐତିହାସିକ ପୁରୁଷମାନଙ୍କ ସମ୍ପର୍କରେ ବହୁ ବିବରଣୀ ସଂଗ୍ରହ କରାଯାଇଥାଏ । ଅବଶ୍ୟ ଆଲୋଚ୍ୟ ସାହିତ୍ୟରୁ ପରୋକ୍ଷ ଭାବରେ ଜୀବନଚରିତ ସଂଗ୍ରହ କରାଯାଇପାରେ ।

———

# ଓଡ଼ିଆ ସାହିତ୍ୟରେ ଜୀବନଚରିତର ଉଦ୍ଭବ ଓ ବିକାଶ

ସାମାଜିକ ଜୀବନରେ ବୀରପୂଜାର ମନୋଭାବ ଜାଗ୍ରତ ନହେଲେ ସାହିତ୍ୟରେ ଜୀବନଚରିତ ଲେଖାହେବା ସମ୍ଭବ ନୁହେଁ । ଯେ କୌଣସି ସମାଜ ବୀରପୂଜା କରିପାରିବ ନାହିଁ । ବୀରପୁରୁଷମାନଙ୍କୁ ସ୍ମରଣ କରି ପ୍ରତିଷ୍ଠିତ କରିବାର କାମନା କେବଳ ଏକ ସ୍ୱାଧୀନ ଜାତିର ଜୀବନରେ ସମ୍ଭବ ହୁଏ । ସମାଜ ବୈପ୍ଳବିକ ଭୂମିକା ପାଇଁ ପ୍ରସ୍ତୁତ ନହେଲେ ଏପରି ଜୀବନ-ଚରିତର ଅଲେଖ୍ୟ ଅଙ୍କିତ ହେବ କିପରି ? ଯେଉଁ ସମାଜ ସାମାଜିକ ଉନ୍ନତି ବିଷୟରେ ସଚେତନ ହୁଏ, ସେହି କେବଳ ସମାଜର ଉଲ୍ଲେଖଯୋଗ୍ୟ ବ୍ୟକ୍ତିମାନଙ୍କୁ ଲୋକଲୋଚନକୁ ଆଣିବା ପାଇଁ ବ୍ୟଗ୍ର ହୋଇଉଠେ । ସ୍ୱାଭିମାନ ଜାଗ୍ରତ ହେବାପାଇଁ ଜୀବନଚରିତର ଯେତିକି ଆବଶ୍ୟକତା ରହିଛି, ଏକ ଅଭିମାନୀ ସମାଜ ମଧ୍ୟ ସେହିପରିମାଣରେ ତାର ବୀରସନ୍ତାନମାନଙ୍କୁ ସ୍ମରଣ କରିବା ପାଇଁ ପଦକ୍ଷେପ ଗ୍ରହଣ କରିଥାଏ ।

ଓଡ଼ିଆସାହିତ୍ୟରେ ଦୀର୍ଘ ଦୁଇଶବର୍ଷର ରୀତିକାଳୀନ ସାହିତ୍ୟରେ ଏହି କାରଣରୁ ଜୀବନଚରିତର କୌଣସି ସଙ୍କେତ ଆମେ ଦେଖିବାକୁ ପାଉନାହିଁ । ଜାତୀୟ ଜୀବନର ଭୋଗାବଳୀ ଅନୁଚିନ୍ତା ସେହି ଯୁଗର ରୀତିରୀଣି କାବ୍ୟକବିତା, ଛାନ୍ଦ, ଚଉପଦୀ, ସଙ୍ଗୀତ ଇତ୍ୟାଦିରେ ପ୍ରକାଶିତ ହୋଇଅଛି । ମାତ୍ର ତତ୍କାଳୀନ ସମାଜର କୌଣସି ପ୍ରାଣସଙ୍କେତ, ଜ୍ୱାଳାମୟୀ ଉଚ୍ଛ୍ୱାସ ସେହି ବିଶାଳ ସାହିତ୍ୟରେ ଦେଖିବାକୁ ମିଳେ ନାହିଁ । ତାହାର କାରଣ ଏହି କାଳ ଥିଲା ଏକ ପରାଧୀନତାର ଯୁଗ; ଜଡ଼ତା, ହୀନମନ୍ୟତା, ସମଗ୍ର ଜାତୀୟ ଜୀବନକୁ କବଳିତ କରିଥିଲା । ଦୀର୍ଘକାଳ ସଂଗ୍ରାମ କରି ଏକ ରଣରଙ୍ଗ ଜାତି ହତଶ୍ରୀ, କ୍ଳାନ୍ତ ଏବଂ ହୀନବୀର୍ଯ୍ୟ ହୋଇପଡ଼ିଥିଲା । ସମାଜପତି ରାଜା ଜମିଦାରଗଣ କେବଳ ବିଳାସ ବ୍ୟସନରେ ଜୀବନ ଅତିବାହିତ କରି ଜାତୀୟ କର୍ତ୍ତବ୍ୟ ସାଙ୍ଗ କରୁଥିଲେ । ତେଣୁ ସେମାନଙ୍କ ବ୍ୟକ୍ତିତ୍ୱ ଏବଂ ଚରିତ୍ର ସମାଜକୁ ଅନୁପ୍ରାଣିତ କଲାପରି କୌଣସି ପଦଚିହ୍ନ ରଖିଯାଇ ପାରିଲା ନାହିଁ । "ଓଡ଼ିଆ ସାହିତ୍ୟରେ ଜୀବନୀ ଓ ଆତ୍ମଜୀବନୀ" ଶୀର୍ଷକ ଆଲୋଚନାରେ ଗବେଷକ ଡ. ନଟବର ସାମନ୍ତରାୟ ଲେଖିଛନ୍ତି—

"ଜୀବନୀ ରଚନା ଓ ଆତ୍ମଜୀବନୀ ବିଶ୍ଳେଷଣ ବ୍ୟକ୍ତିବିଶେଷଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିଲେ ହେଁ ସମସାମୟିକ ସମାଜର ଜୀବନ୍ତ ଉପାଦାନ ସେଇ ଜୀବନକୁ ଏପରି ଏକ

ସ୍ୱତନ୍ତ୍ର ରୂପ ବିଭବ ପ୍ରଦାନ କରେ ଯେ କୁଶଳୀ କଳାକାରର ପରିବେଷଣ ଚାତୁର୍ଯ୍ୟରେ ତାହା ଏକ ମୌଳିକ ବିଭବରେ ପରିଣତ ହୋଇଯାଏ । ଫଳରେ ବ୍ୟକ୍ତିର ଜୀବନ ବୃହତ୍ତର ସମାଜ ଜୀବନ ଭିତରେ ସ୍ୱତଃ ହୁଏ ବିକଶିତ, ସ୍ରଷ୍ଟାର ସଫଳ ରୂପାୟନ ଓ ବଳିଷ୍ଠ ଉପସ୍ଥାପନା ବଳରେ ତାହା ହୁଏ ଏକ ସାର୍ଥକ ସୃଷ୍ଟି । ଆମର ଆଲୋଚ୍ୟ ସମୟ ମଧ୍ୟରେ ଆମେ ଏଭଳି ସାହିତ୍ୟର କେତେକ ପରିଚୟ ମଧ୍ୟ ଦେଖିବାକୁ ପାଇଥାଉଁ । ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ରଚିତ କୀର୍ତ୍ତିକଳାପ କବିତା ପୁସ୍ତକ ଏ ଦିଗରେ ଏକ ଅଭିନବ ଉଦ୍ୟମ (ସମ୍ବାଦ ବାହିକା ୨୦ । ୫ । ୧୮୭୬) । ପାହାଡ଼ିଆ କେଦାର, ମୁନିବର ବାଣୀ, ମଙ୍ଗଳଗୁର୍ଜ୍ଜରୀ ପ୍ରଭୃତି ସ୍ୱରଚିତ ରାଗରାଗିଣୀରେ ଢେଙ୍କାନାଳ ମହାରାଜା ଭଗୀରଥୀ ମହେନ୍ଦ୍ର ବାହାଦୁରଙ୍କ କୀର୍ତ୍ତି ଏ ପୁସ୍ତକରେ ପ୍ରଖ୍ୟାପିତ । ବ୍ୟକ୍ତିର ଜୀବନୀ କିମ୍ବା ଜୀବନର ବିଶିଷ୍ଟ ଘଟଣାକୁ ଅବଲମ୍ବନ କରି ଆଲୋଚ୍ୟ ସମୟରେ ବିଭିନ୍ନ କବିତା ମଧ୍ୟ ରଚିତ ହୋଇଛି । ନିମ୍ନଲିଖିତ ଜୀବନୀମୂଳକ ସ୍ୱତନ୍ତ୍ର ପୁସ୍ତକ ମଧ୍ୟ ଏହି ସମୟରେ ପ୍ରକାଶିତ ହୋଇଥିଲା । ଯଥା :—ଜଗଦାନନ୍ଦ ରାଉଙ୍କର (କ) ଭିକ୍ଟୋରିଆ (କବିତା), ନୀଳମଣି ବିଦ୍ୟାରତ୍ନଙ୍କର (ଖ) ଭିକ୍ଟୋରିଆ ଚରିତ ଓ (ଗ) ସମ୍ରାଟ୍ ଚରିତ, ଭୋଳାନାଥ ସାମନ୍ତରାୟଙ୍କ (ଘ) ସ୍ୱର୍ଗୀୟ ମହାରାଜା ଧନୁର୍ଜ୍ଜୟ ନାରାୟଣ ଭଞ୍ଜଦେବ । ପାର୍ବତୀଚରଣ ଦାସଙ୍କର ପ୍ରଭୁ ଶ୍ୟାମାନନ୍ଦ (୧୯୧୭) ପ୍ରଭୃତି । ପରବର୍ତ୍ତୀ ସମୟରେ ରଚିତ କେତେକ ପୁସ୍ତକ ଯଥା :—ପଣ୍ଡିତ ସଦାଶିବ ମିଶ୍ରଙ୍କର ଅତିବଡ଼ି ଶ୍ରୀ ଜଗନ୍ନାଥ ଗୋସ୍ୱାମୀ (୧୯୧୧), ମୃତ୍ୟୁଞ୍ଜୟ ରଥଙ୍କର କର୍ମବୀର ଗୌରୀଶଙ୍କର (୧୯୧୫) ରାଘବ ମିଶ୍ରଙ୍କର 'ମେଟର ଜବି' (୧୯୧୫) । ପ୍ରଫୁଲ୍ଲଚନ୍ଦ୍ର ଦାସଙ୍କର ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବଙ୍କର ଜୀବନୀ (୧୯୧୮), ସତ୍ୟବାଦୀ ତ୍ରିପାଠୀଙ୍କର ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ (୧୯୨୮), ପଦ୍ମଚରଣ ଦାସଙ୍କର 'ଶ୍ରୀ ଶ୍ରୀରାୟ ରାମାନନ୍ଦଙ୍କ ଜୀବନୀ ଓ ଉତ୍କଳେ ଶ୍ରୀଚୈତନ୍ୟ,' ପଦ୍ମଚରଣ ପଟ୍ଟନାୟକଙ୍କର ଫକୀରମୋହନ ସେନାପତି ଓ ମାର୍ଟିନ୍ ଲୁଥର, ହରିପ୍ରସାଦ ପାଣିଗ୍ରାହୀଙ୍କର ମହାରାଜା ଶ୍ରୀ ରାମଚନ୍ଦ୍ର ଇତ୍ୟାଦି । ଫକୀରମୋହନ ସେନାପତିଙ୍କ ଜୀବନଚରିତ (୧୮୬୬) ଅନୁବାଦରୁ ଓଡ଼ିଆରେ ଜୀବନୀ ରଚନାର ପ୍ରଥମ ସୂତ୍ରପାତ ହୁଏ । ପରବର୍ତ୍ତୀ ସମୟରେ କେତେକ ପାଠ୍ୟ ପୁସ୍ତକରେ ଏହା ସ୍ଥାନ ପାଏ । ଯଥା :—ମଧୁସୂଦନଙ୍କର ପ୍ରବନ୍ଧମାଳା (୧୮୮୦)ର ରାଣୀ ଦୁର୍ଗାବତୀ, ବୁଦ୍ଧଦେବ, ସାର୍ ଆଇଜାକ୍ ନିଉଟନ୍, ନେପୋଲିୟନ୍, ସୀତାନାଥ ରାୟଙ୍କର 'ତୃତୀୟ ପାଠ'ର ପ୍ରତାପସିଂହ, ମହାତ୍ମା ଓ୍ୱାସିଂଟନ୍, ମହାତ୍ମା ପୀଟର୍, ମୃତ୍ୟୁଞ୍ଜୟ ରଥଙ୍କର 'ପ୍ରବନ୍ଧ ପାଠ' (୧୯୦୭)ର ପ୍ରତାପସିଂହ, ଜୀବନଚରିତ, ଉଇଲିୟମ୍ ହଣ୍ଟର, ସାର୍ ଉଇଲିୟମ୍ ଜୋନ୍ସ, ରାଣୀ ଅହଲ୍ୟାବାଈ, ଶଙ୍କରାଚାର୍ଯ୍ୟ, 'ରଥଙ୍କ ନାରୀଦର୍ପଣ' (୧୯୧୭)ର ସାବିତ୍ରୀ, ସୀତା, ପାନ୍ନା, ମହାରାଣୀ ସ୍ୱର୍ଣ୍ଣମୟୀ ସୁଲକ୍ଷଣା ଇତ୍ୟାଦି । ଏହିପରି ଜୀବନୀମୂଳକ ପ୍ରବନ୍ଧ ସମସାମୟିକ ପତ୍ରିକାରେ (ପ୍ରଥମ କେତେ ବର୍ଷର ଉତ୍କଳ ସାହିତ୍ୟ ପତ୍ରିକା) ପ୍ରକାଶିତ ହୋଇଥିବାର ଦେଖିବାକୁ ମିଳେ । ଯଥା :—ରେବା ରାୟଙ୍କ (କ) ରମାବାଈ ସରସ୍ୱତୀ, ବିଶ୍ୱନାଥ କରଙ୍କର (ଖ) ମହାତ୍ମା କେଶବଚନ୍ଦ୍ର ସେନ୍, (ଗ) ଆଚାର୍ଯ୍ୟ ଜଗନ୍ନାଥ ଶାସ୍ତ୍ରୀ, ଚନ୍ଦ୍ରମୋହନ ମହାରଣାଙ୍କ (ଘ) ଶ୍ରୀଧର ସ୍ୱାମୀ, ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ (ଙ) ମହାତ୍ମା ଚନ୍ଦ୍ରଶେଖର, ତାରିଣୀ ଚରଣଙ୍କର (ଚ) ଅହଲ୍ୟାବାଈ, ଧୀରେନ୍ଦ୍ରନାଥ ଚୌଧୁରୀଙ୍କର (ଛ)

ମହର୍ଷି ଦେବେନ୍ଦ୍ରନାଥ ଠାକୁର, ଆନନ୍ଦ ଚନ୍ଦ୍ର ପଣ୍ଡାଙ୍କର (ଜ) ଟୋଗୋ ଓ ଅନ୍ୟାନ୍ୟ ପ୍ରବନ୍ଧ ଆନନ୍ଦ ଚନ୍ଦ୍ର ଦତ୍ତଙ୍କର (ଝ) ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଓ (ଞ) ମହାତ୍ମା କେଶବ ଚନ୍ଦ୍ର, ପଞ୍ଚୁଚରଣ ପଟ୍ଟନାୟକଙ୍କର (ଟ) ଚନ୍ଦ୍ରଗୁପ୍ତ, କୃଷ୍ଣମୋହନ ପଟ୍ଟନାୟକଙ୍କର, (ଠ) ଲାଲା ଲଜପତ ରାୟ, ଚନ୍ଦ୍ରଶେଖର ନନ୍ଦଙ୍କର (ଡ) ବଳାଙ୍ଗୀ ବିଶ୍ୱନାଥ, ବେଣୀ ମାଧବ ଦାସଙ୍କର (ଢ) ମହର୍ଷି ଦେବେନ୍ଦ୍ରନାଥ, କୃଷ୍ଣପ୍ରସାଦ ଚୌଧୁରୀଙ୍କ (ଣ) ସ୍ୱର୍ଗୀୟ ପ୍ୟାରୀମୋହନ ସେନଗୁପ୍ତ, ମୃତ୍ୟୁଞ୍ଜୟ ରଥଙ୍କର (ତ) ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଗୋପୀନାଥ ଦାସଙ୍କର ମହାତ୍ମା ହରିହର ଦାଶ, ବୃନ୍ଦାବନ ଶର୍ମାଙ୍କର, (ଦ) ସାହିତ୍ୟ ଭକ୍ତ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ, ଅଗଣି ଦାସଙ୍କର (ଧ) ସିଦ୍ଧ ସାଧକ ରାମକୃଷ୍ଣ ଦେବ (ନ) ସ୍ୱାମୀ ବିବେକାନନ୍ଦ, ଚିନ୍ତାମଣି ଆଚାର୍ଯ୍ୟଙ୍କର (ପ) ସ୍ୱର୍ଗୀୟ ରାଜା ଦେବୀସିଂହ, ସୁବଳ ଦେବ (ଫ) ବାଲଗଙ୍ଗାଧର ତିଲକ, ଭୂପତି-ଭୂଷଣ ମୁଖୋପାଧ୍ୟାୟଙ୍କ (ବ) ରାଜା ରାମମୋହନ ରାୟ, ଜଗବନ୍ଧୁ ସିଂହଙ୍କର (ଭ) ଜୟଦେବ (ମ) ପ୍ରତାପରୁଦ୍ର, ଚନ୍ଦ୍ରଶେଖର ମିଶ୍ରଙ୍କର (ଯ) ସମୁଦ୍ରଗୁପ୍ତ (ର) ଚନ୍ଦ୍ରଗୁପ୍ତ ମୌର୍ଯ୍ୟ । ଜଗବନ୍ଧୁ କରଙ୍କ (ଲ) ଶଙ୍କରାଚାର୍ଯ୍ୟ, ଗୋଦାବରୀଶ ମିଶ୍ରଙ୍କର (ଶ) ମହାତ୍ମାଗାନ୍ଧୀ, ବାସୁଦେବ ମହାପାତ୍ରଙ୍କର (ଷ) ପୃଥ୍ୱୀରାଜ ଇତ୍ୟାଦି । ଜୀବନୀ ମୂଳକ ପ୍ରବନ୍ଧ ଆଲୋଚନା, ପ୍ରସଙ୍ଗରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରାଚୀନ କବିଙ୍କ ଜୀବନୀ ଆଲୋଚନା, ମୃତ୍ୟୁଞ୍ଜୟ ରଥଙ୍କର ପ୍ରାଚୀନ କବିଙ୍କ ସହ ମଧୁସୂଦନ, ଫକୀରମୋହନଙ୍କ ଜୀବନୀର ଗବେଷଣା, ବିଶେଷତଃ ପରବର୍ତ୍ତୀ ସମୟରେ ଲିଖିତ କୁଳମଣି ଦାସଙ୍କର ବିଭିନ୍ନ ପ୍ରବନ୍ଧ (ଉତ୍କଳ ସାହିତ୍ୟର ବିଭିନ୍ନ ସଂଖ୍ୟାରେ) ଯଥା :—(କ) ସ୍ୱର୍ଗୀୟ ମୃତ୍ୟୁଞ୍ଜୟ, (ଖ ସ୍ୱର୍ଗତ ଗଙ୍ଗାଧର, (ଗ) ସ୍ୱର୍ଗତଃ ବିଦ୍ୟାରତ୍ନ, (ଘ) କବିସୂର୍ଯ୍ୟ ବଳଦେବ ରଥ, (ଙ) ସ୍ୱର୍ଗତଃ ପୁରୀ ରାମଶଙ୍କର ଏକାନ୍ତ ସ୍ମରଣୀୟ । ଏହି ଶେଷୋକ୍ତ ପ୍ରବନ୍ଧମାନଙ୍କରେ ଜୀବନୀ ସହିତ ସାହିତ୍ୟାଲୋଚନା ପ୍ରଧାନ ସ୍ଥାନ ଅଧିକାର କରିଥିବାର ଦେଖିବାକୁ ମିଳେ । × × × × ମହାପୁରୁଷମାନଙ୍କର ମହତ୍ତ୍ୱ ଚରିତାବଳୀ ଲୋକଙ୍କ ସମ୍ମୁଖରେ ଉପସ୍ଥାପନ କରି ନୈତିକ ଜୀବନର ଉନ୍ନତି ସାଧନ କରିବା ଯେଉଁ ରଚନାର ଥିଲା ମୌଳିକ ଲକ୍ଷ୍ୟ ତାର ପ୍ରକାଶ ଆତ୍ମମୁଖ୍ୟ ସଙ୍ଗେ କେବଳ ଥିଲା ପ୍ରବନ୍ଧ ଧର୍ମୀ—ଚରିତାବଳୀର ଅନ୍ୟ ରୂପାୟନ କୌଶଳ ଆଲୋଚ୍ୟ ସମୟରେ ଅନ୍ୟତ୍ର କେଉଁଠି ଅନୁସୃତ ହୋଇ ନଥିଲା । ଫକୀରମୋହନଙ୍କ ଆତ୍ମଜୀବନ ଚରିତକୁ ବାଦ୍ ଦେଲେ ଏହି ସମୟରେ ଅନ୍ୟ ଆତ୍ମଜୀବନୀ ରଚନା ଆଦୌ ପରିଲକ୍ଷିତ ହୁଏ ନାହିଁ । ସ୍ଥୂଳତଃ ଏହି ସମୟର ଜୀବନୀ ଓ ଆତ୍ମଜୀବନୀ ରଚନା ପରିମାଣରେ ଯେପରି ଥିଲା ଅତି ଅଳ୍ପ, ତାର ସୃଷ୍ଟି ରୂପଟି ମଧ୍ୟ ସେମିତି ଥିଲା ସୀମିତ ।”

(ଓଡ଼ିଆ ସାହିତ୍ୟର ଇତିହାସ—୧୮୦୩-୧୯୨୦—ଡ. ନଟବର ସାମନ୍ତରାୟ ୧୯୬୪ ପୃ. ୫୪୦-୫୪୨)

ଉପରୋକ୍ତ ଆଲୋଚନାରେ ୧୯୨୦ ସୁଦ୍ଧା ଡ. ନଟବର ସାମନ୍ତରାୟ ଓଡ଼ିଆ ଜୀବନୀ ଓ ଆତ୍ମଜୀବନୀ ସାହିତ୍ୟ ସମ୍ପର୍କରେ ଏକ ଚମତ୍କାର ବିଶ୍ଳେଷଣ କରି ଅଛନ୍ତି । ତାଙ୍କ ମତରେ ଉନବିଂଶର ଶେଷ ଆଡ଼କୁ ପ୍ରଥମେ ଫକୀରମୋହନ ସେନାପତି ୧୮୭୭ ଖ୍ରୀଷ୍ଟାବ୍ଦରେ ବଙ୍ଗଳା ଜୀବନଚରିତର ଅନୁବାଦ ପ୍ରକାଶ କରିବାରୁ ଓଡ଼ିଆରେ ଜୀବନଚରିତ ଲେଖିବା ପାଇଁ ଅପୂର୍ବ

ପ୍ରେରଣା ସୃଷ୍ଟି ହେଲା । ଏହି କାଳରେ ପ୍ରଥମେ କବିତାରେ, ଜୀବନୀ ଲେଖିବା ଆରମ୍ଭ ହୋଇଥିଲେହେଁ ପରେ ପ୍ରବନ୍ଧଶୈଳୀ ମାଧ୍ୟମରେ ଜୀବନୀ ଲେଖିବା ଅନୁସୃତ ହେଲା । ପାଠ୍ୟ ପୁସ୍ତକ ଏବଂ ପତ୍ରପତ୍ରିକାରେ ମଧ୍ୟ ଅନେକ ଜୀବନୀ ପ୍ରକାଶିତ ହେଲା । ସ୍ୱତନ୍ତ୍ର ଭାବରେ କେତେକ ଜୀବନୀ ପୁସ୍ତକ ସଙ୍କଳିତ ହେଲା । ଡ. ସାମନ୍ତରାୟ ଆହୁରି ମଧ୍ୟ କହିଛନ୍ତି ଯେ ଏହି ସମସ୍ତ ମଧ୍ୟରେ ଏକମାତ୍ର ଫକୀରମୋହନଙ୍କୁ ଛାଡ଼ିଦେଲେ ଆଉ କେହି ଆତ୍ମଚରିତ ଲେଖି ନାହାନ୍ତି । ଅବଶ୍ୟ ଡ. ସାମନ୍ତରାୟ ୧୮୦୩ ସାଲଠାରୁ ୧୯୨୦ ସାଲ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ଆଲୋଚନା କରିଥିବାରୁ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଜୀବନୀ ସାହିତ୍ୟ ସମ୍ପର୍କରେ ଆଲୋଚନା କରିବାପାଇଁ ତାଙ୍କୁ ଅବସର ମିଳିନାହିଁ । ବୋଧହୁଏ ଓଡ଼ିଆ ସାହିତ୍ୟରେ ପ୍ରାଚୀନତମ ଚରିତ ଗ୍ରନ୍ଥ ହିସାବରେ ଦିବାକର ଦାସ କୃତ ଶ୍ରୀଜଗନ୍ନାଥ ଚରିତାମୃତକୁ ଗ୍ରହଣ କରାଯାଇ ପାରେ । ପଣ୍ଡିତ ସୂର୍ଯ୍ୟନାରାୟଣ ତାଙ୍କର ବିଶାଳ ଓଡ଼ିଆ ସାହିତ୍ୟର ଇତିହାସ ଦ୍ୱିତୀୟଭାଗ (୧୯୬୫) ରେ ଦିବାକର ଦାସଙ୍କ ସମ୍ପର୍କରେ ଆଲୋଚନାକରି ତାଙ୍କୁ ସୂର୍ଯ୍ୟବଂଶଯୁଗ ପରବର୍ତ୍ତୀ କବିପର୍ଯ୍ୟାୟରେ ଆଲୋଚନା କରିଛନ୍ତି । ଅଥଚ ତାଙ୍କର କୌଣସି ନିର୍ଦ୍ଦିଷ୍ଟକାଳ ସମ୍ପର୍କରେ ସୂଚନା ପ୍ରଦାନ କରିନାହାଁନ୍ତି । ତେବେ ପଣ୍ଡିତ ସୂର୍ଯ୍ୟନାରାୟଣ ଜଗନ୍ନାଥ ଚରିତାମୃତ ସମ୍ପର୍କରେ ଆଲୋଚନା କରି ରଖିଛନ୍ତି—"ଜୀବନୀ ଲେଖା ଦିଗରୁ ଦେଖିଲେ ଦିବାକର ଦାସ ଓଡ଼ିଆ ସାହିତ୍ୟରେ ସର୍ବପ୍ରଥମ, ବିସ୍ତୃତ ଭାବରେ ଜୀବନୀ ଆଲୋଚନା କରି ମତବାଦର ବ୍ୟାଖ୍ୟା କରିବା କିଛି କମ୍ ସାହସର କଥା ନୁହେଁ । ଜୀବନୀ ଲେଖା ଦିଗରେ ଓ ତତ୍ତ୍ୱ ବିଚାର ଦିଗରେ ସେ ଖୁବ୍ କୃତିତ୍ୱ ଦେଖାଇଛନ୍ତି ।

ଜଗନ୍ନାଥ ଦାସଙ୍କ ଚରିତ ବର୍ଣ୍ଣନା ସଙ୍ଗେ ସଙ୍ଗେ ଶ୍ରୀଜଗନ୍ନାଥ ଦେବଙ୍କ ତତ୍ତ୍ୱର ବ୍ୟାଖ୍ୟା ମଧ୍ୟ ଏ ଗ୍ରନ୍ଥରେ କରାଯାଇଛି । × × ×

ଦିବାକର ଦାସ ଜଗନ୍ନାଥଦାସଙ୍କୁ ଏହି ଗ୍ରନ୍ଥରେ ନୂତନ ଜୀବନ ଦାନ କରିଛନ୍ତି, କହିଲେ ଅତ୍ୟୁକ୍ତି ହେବନାହିଁ । ଭାଗବତ ଲେଖି ଜଗନ୍ନାଥ ଦାସ ଅମର ହୋଇଥିଲେ ମଧ୍ୟ 'ବିପ୍ର ଜଗନ୍ନାଥ ଦାସ' ଏହି ସଂକ୍ଷିପ୍ତ ପରିଚୟରେ କେବଳ ସେ ଲୋକରେ ପ୍ରସିଦ୍ଧ ହୋଇ ରହିଥାଆନ୍ତେ । ଅତିବଡ଼ୀ ସମ୍ପ୍ରଦାୟ, ସମ୍ପ୍ରଦାୟର ମତବାଦ, ଆଚାର ବ୍ୟବହାର, ଧ୍ୟାନଧାରଣା ପ୍ରଭୃତି ବିଷୟ, ଜଗନ୍ନାଥଦାସଙ୍କ ଭକ୍ତ ଜୀବନ ଓ ସାଧନା, ସାହିତ୍ୟିକ ସାଧନା ଓ ପ୍ରଭୁ ଜଗନ୍ନାଥଙ୍କ ତତ୍ତ୍ୱ ପ୍ରଭୃତି ବିଷୟରେ ବିସ୍ତୃତ ବିବରଣୀ ଲୋକ ଚକ୍ଷୁରୁ ଅନ୍ତର୍ହିତ ହୋଇଯାଇ ଥାଆନ୍ତା । କେତେକ ସଂସ୍କୃତ ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କ ମତବ୍ୟକ୍ତ ହୋଇଥିଲେ ମଧ୍ୟ ଜନସାଧାରଣଙ୍କ ଭିତରେ ଏଗୁଡ଼ିକର ପ୍ରସାର ସେତେ ନାହିଁ । ବିଭିନ୍ନ ପାଠଭେଦ ଓ ଅଶୁଦ୍ଧି ସତ୍ତ୍ୱେ ଜଗନ୍ନାଥ ଚରିତାମୃତ ଗ୍ରନ୍ଥଟି ଜଗନ୍ନାଥ ଦାସଙ୍କ ଜୀବନୀ, ସାଧନା, ଭଜନ ପ୍ରଭୃତି ସମ୍ବନ୍ଧରେ ଅତିବଡ଼ୀ ସମ୍ପ୍ରଦାୟର ପ୍ରଧାନ ପ୍ରାମାଣିକ ଗ୍ରନ୍ଥ ହୋଇ ରହିଛି ।

ଓଡ଼ିଆରେ ଜୀବନୀ ଲେଖକ ହିସାବରେ ଦିବାକର ଦାସ ଓଡ଼ିଶାରେ ସର୍ବପ୍ରଥମ ବୋଲି ମନେ ହୁଅନ୍ତି । ଏହାଙ୍କ ପୂର୍ବରୁ କେହି ଏତେ ବିସ୍ତୃତ ଭାବରେ ଅନ୍ୟ କାହାର

ଜୀବନୀ ଲେଖିଥିବା ଜଣାଯାଏ ନାହିଁ । × × × ଜୀବନୀଲେଖାରେ ଅତିବଡ଼ଙ୍କ ତତ୍ତ୍ୱ ବ୍ୟାଖ୍ୟାନକୁ ନିର୍ଦ୍ଦିଷ୍ଟ ରୂପଦାନ କରି ଦିବାକର ଅମର ହୋଇଛନ୍ତି ।
(ଓଡ଼ିଆ ସାହିତ୍ୟର ଇତିହାସ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ—୧୯୬୫-ପୃ ୨-୮୫)

ଜଗନ୍ନାଥ ଚରିତାମୃତର ବିଭିନ୍ନ ପାଠ ଭେଦଥିବା ଏବଂ ଅଶୁଦ୍ଧ ପ୍ରକାଶନ ବଜାରରେ ଅନେକ ଦିନୁ ପ୍ରଚଳିତ ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ତା ଉଲ୍ଲେଖ କରିଛନ୍ତି । ମାତ୍ର ସୁଖର କଥା ନାନା ପୋଥିର ତୁଳନାତ୍ମକ ବିଚାରରେ ୧୯୬୩ ଖ୍ରୀଷ୍ଟାବ୍ଦରେ ପୁରୀ ବଡ଼ ଓଡ଼ିଆମଠ ଜଗନ୍ନାଥ ଚରିତାମୃତର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ କରିଅଛନ୍ତି । ଏହି ଗ୍ରନ୍ଥର ମୁଖବନ୍ଧ ଲେଖକ ପଣ୍ଡିତ ବୀର ହନୁମାନ ଶାସ୍ତ୍ରୀ ଦିବାକର ଦାସଙ୍କ ପରିଚୟ ଏବଂ କାଳ ନିରୂପଣ ନିମ୍ନମତେ କରି ଅଛନ୍ତି —

"ଗ୍ରନ୍ଥର ରଚୟିତା ଦିବାକର ଦାସେ ଓଡ଼ିଶୀ ବୈଷ୍ଣବ ପରମ୍ପରାରେ ଜଗନ୍ନାଥ-ଦାସଙ୍କ ପ୍ରେମ ଭକ୍ତି ଓ ହରେ ରାମମନ୍ତ୍ରର ଉପାସକ ଥିଲେ । ସେ ଗୃହୀ ବୈଷ୍ଣବ ଥାଇ କଟକ ଜିଲ୍ଲାର ଠେଙ୍ଗଣ ଗ୍ରାମରେ ଅଧିକାରୀ ଥିବା ଏବଂ ତାଙ୍କ ବଂଶର ଲୋକେ ଏହି ଗ୍ରାମରେ ଅଦ୍ୟାପି ବସବାସ କରୁଥିବା କଥା ବଡ଼ ଓଡ଼ିଆ ମଠର ବର୍ତ୍ତମାନ ଅଧିକାରୀ କହନ୍ତି । ଏହି ପ୍ରକାରେ ସ୍ୱୟଂ ଦିବାକର ଦାସେ ଦେଇଥିବା ଗୁରୁ ପରମ୍ପରାରୁ ଜଣାଯାଏ ବନମାଳୀ ଦାସ ଜଗନ୍ନାଥ ଦାସଙ୍କ ଶିଷ୍ୟ । ତାଙ୍କର ଶିଷ୍ୟ ନୀଳକୃଷ୍ଣ । ତାଙ୍କ ଶିଷ୍ୟ କିଶୋରୀ କିଶୋର ଓ ଏହାଙ୍କର ଶିଷ୍ୟ ଦିବାକର । ସ୍ଥୂଳତଃ ଗୋଟିଏ ପୁରୁଷକୁ ୨୫ ବର୍ଷ ଧରିଲେ ଶ୍ରୀ ଚୈତନ୍ୟଙ୍କ ପରେ ପ୍ରାୟ ୧୦୦ ବର୍ଷ ଠାରେ ଦିବାକରଙ୍କ ଏ ଲେଖା ମାନିବାକୁ ହେବ । ତା ହେଲେ ଦିବାକର ଦାସେ ୧୭ଶ ଶତାବ୍ଦୀର ମଧ୍ୟ ଭାଗରେ ଜଗନ୍ନାଥ ଚରିତାମୃତ ଲେଖିଥିବା ନିଶ୍ଚିତ ।
(ଶ୍ରୀ ଜଗନ୍ନାଥ ଚରିତାମୃତ-ପ୍ରକାଶକ ବଡ଼ ଓଡ଼ିଆ ମଠ ପୁରୀ—୧୯୬୩ ମୁଖବନ୍ଧ)

ଏହି ଗ୍ରନ୍ଥରେ ମହାପ୍ରଭୁ ଶ୍ରୀ ଚୈତନ୍ୟ ଏବଂ ମହାପୁରୁଷ ଜଗନ୍ନାଥଦାସଙ୍କ ଭୌତିକ ଅଲୌକିକ କଥା ଲେଖା ହୋଇ ଥିବାରୁ ଏହି ଜଡ଼ବିଜ୍ଞାନ ଯୁଗରେ ସାଧାରଣ ପାଠକର ସନ୍ଦେହ ଉପୁଜିବା ସ୍ୱାଭାବିକ କିନ୍ତୁ ଷୋଡ଼ଶ ଶତାବ୍ଦୀରେ ସାମାଜିକ ଜୀବନରେ ଆଧ୍ୟାତ୍ମିକତା ରାଜପଣ କରୁଥିଲା । ଦେଶ ଥିଲା ସ୍ୱାଧୀନ ଏବଂ ସମୃଦ୍ଧ । ଅଲୌକିକ ବ୍ୟକ୍ତି ହୋଇଥିଲେ ହୁଏତ ଲୋକ କଥାରେ ଅନେକ ପ୍ରମାଦ ରହିଯିବା ସ୍ୱାଭାବିକ । ମାତ୍ର ଜଣେ ଧର୍ମଗୁରୁ ହୋଇଥିବାରୁ ଶିଷ୍ୟ ପରମ୍ପରାରେ ଜଗନ୍ନାଥଙ୍କର ବୃତ୍ତ ଆଲୋଚିତ ହେବା ସ୍ୱାଭାବିକ । ପୁନଶ୍ଚ ନିଜେ ଦିବାକର ଦାସ ଲେଖିଛନ୍ତି ଯେ ସେ ତାଙ୍କ ଗୁରୁମାନଙ୍କ ଲିଖିତ ବିବରଣୀ ସାହାଯ୍ୟରେ ଏହି ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ସ୍ୱ ଗ୍ରନ୍ଥର ଉପସଂହାରରେ କବି ଦିବାକର ଦାସ ଲେଖିଛନ୍ତି —

ବିପ୍ର ଦିବାକର କହଇ । ଭବ ଜଳକୁ ନାବ ଏହି ।
ମୁଁ ଅଟେ ମୂଢ଼ ଅକିଞ୍ଚନ । କିବା ବର୍ଣ୍ଣିବାକୁ ଭାଜନ ।
ଗୁରୁଙ୍କ ଲେଖାରୁ ସୂଚନା । ପାଇ ଯା କରିଛି ବର୍ଣ୍ଣନା ।

(ଶ୍ରୀଜଗନ୍ନାଥ ଚରିତାମୃତ—୧୯୬୩ ପୃ. ୩୦୯)

ଓଡ଼ିଆ ସାହିତ୍ୟରେ ଆଜକୁ ତିନିଶହ ବର୍ଷ ପୂର୍ବେ ଏପରି ଏକ ଚରିତଗ୍ରନ୍ଥ ଲିଖିତ ହେବା ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ଘଟଣା । କୌଣସି ପରମ୍ପରା ନଥାଇ କବି ଦିବାକର ଜଣେ କବି ଏବଂ ଆଧ୍ୟାତ୍ମିକ କ୍ଷେତ୍ରର ସାଧାରଣଙ୍କର ଯେପରି ବିସ୍ତୃତ ବିବରଣୀ ପ୍ରଦାନ କରିଅଛନ୍ତି ତାହାର ତୁଳନା ନାହିଁ । ସେ କେବଳ ଶୁଣାକଥା ବା କିମ୍ବଦନ୍ତୀରେ ଆସ୍ଥା ପୋଷଣ ନ କରି ନିଜ ମଠରେ ଗୁରୁପରମ୍ପରାରେ ସୁରକ୍ଷିତ ବିବରଣୀ ସାହାଯ୍ୟରେ ଏହି ଚରିତଗ୍ରନ୍ଥ ସଂକଳନ କରିବା ଅତ୍ୟନ୍ତ ସୌଭାଗ୍ୟର କଥା । ପୂର୍ବରୁ ପ୍ରଚଳିତ ପୁରାଣ ସାହିତ୍ୟରେ ସାରଳା ଦାସ ଏବଂ ବଳରାମ ଦାସ ଅଥବା କାବ୍ୟକାର ଦୀନକୃଷ୍ଣ ଏବଂ ଉପେନ୍ଦ୍ରଭଞ୍ଜ ପ୍ରଭୃତି ନିଜ ସମ୍ପର୍କରେ ଯେଉଁ ପରିଚୟ ଦେଇଯାଇଛନ୍ତି, ତାହା ସେମାନଙ୍କ ବିଷୟରେ ଜାଣିବା ପାଇଁ ଯଥେଷ୍ଟ ଉପାଦାନ ଯୋଗାଇ ପାରୁନାହିଁ । ମୋଟ ଉପରେ କବିମାନେ ନିଜ ବିଷୟରେ ଲେଖିବା ପାଇଁ ବିମୁଖ ଥିଲାବେଳେ ଏବଂ ଲିପିବଦ୍ଧ ଇତିହାସର ଏକ ସୁସ୍ଥ ପରମ୍ପରାର ଅଭାବରେ କୌଣସି ବିଶିଷ୍ଟ ଜୀବନୀର ବୈଜ୍ଞାନିକ ଅନୁଶୀଳନ ଅତ୍ୟନ୍ତ ଆୟାସ-ସାଧ୍ୟ ବ୍ୟାପାର । ତଥାପି ଦିବାକର ଦାସ ଜଗନ୍ନାଥ ଦାସଙ୍କ ଜନ୍ମ ପରିଚୟ, ସମକାଳୀନ ଭକ୍ତି ଆନ୍ଦୋଳିତ ସମାଜ ଏବଂ ଉଚ୍ଚ ସ୍ତରର ଆଭିମୁଖ୍ୟ, ଜଗନ୍ନାଥ ଦାସଙ୍କ ଭକ୍ତିମତ୍ତା ଏବଂ ଅଲୌକିକ ବାତୁଳତ୍ୱ, ଗୁରୁଭକ୍ତିକ ନିଷ୍ଠା, ରାଜା ପ୍ରତାପରୁଦ୍ରଙ୍କ ପରୀକ୍ଷା, ପରିଶେଷରେ ତାଙ୍କର ମହାପ୍ରସ୍ଥାନ ସମ୍ପର୍କରେ ବିସ୍ତୃତ ବିବରଣୀ ନବାକ୍ଷରୀ ବୃତ୍ତରେ ସୁଲଳିତ ଭାଷାରେ ଲିପିବଦ୍ଧ ହୋଇଅଛି । ପ୍ରସଙ୍ଗକ୍ରମେ ଏଠାରେ କେତେକାଂଶ ଉଦ୍ଧାର କରିଯାଇପାରେ—

ଦିବାକର ଦାସ ଜଗନ୍ନାଥ ଦାସଙ୍କୁ ରାଧାଙ୍କର ଅଂଶ ବିଶେଷ ବୋଲି କଳ୍ପନା କରି-ଅଛନ୍ତି । ହୁଏତ ଶିଷ୍ୟ ପରମ୍ପରାରେ ଏହି ବିଶ୍ୱାସ ଦିବାକରଙ୍କ ପର୍ଯ୍ୟନ୍ତ ପ୍ରଚଳିତ ହୋଇ-ଆସିଛି । ଶ୍ରୀକୃଷ୍ଣ ଚୈତନ୍ୟ ରୂପରେ ନଦିଆ ନଗରରେ ଜନ୍ମଗ୍ରହଣ କରିଥିଲେ ଏବଂ ଶ୍ରୀରାଧା ପୁରୀ ନିକଟରେ କପିଳେଶ୍ୱରପୁର ଶାସନରେ ଅବତୀର୍ଣ୍ଣ ହୋଇ ଲୀଳା କରିଥିଲେ ।

"ପୁଣି ଅଂଗିନା ରାଧା ଗୃହିଁ । ବୋଇଲେ ଜାତ ହୁଅ ମହୀ ।
ଉତ୍କଳ ଯେ ପୁରୁଷୋତ୍ତମ । କପିଳେଶ୍ୱର ପୁର ଗ୍ରାମ ।
ତହିଁ ଜନମ ହୁଅ ଯାଇ । ଆମ୍ଭର ଏ ଆଜ୍ଞା ପାଇ ।
ମନ୍ତ୍ରରାଜ ରାମାଦିନାମ । ସଂସାରରେ କରିଅ କୀର୍ତ୍ତନ ।
ଆଜ୍ଞା ପ୍ରମାଣେ ଯେ ଆସିଲେ । ଓଡ଼ିଶା ରାଜ୍ୟେ ଜନ୍ମ ହେଲେ ।
ନାମ କପିଳେଶ୍ୱର ପୁର । ଶାସନ ମଧ୍ୟେ ତାଙ୍କ ଘର ।
ପୁରାଣ ପଣ୍ଡା ଭଗବାନ । ସ୍ୱ ପତ୍ନୀ ପଦ୍ମାବତୀ ନାମ ।
ପୂର୍ବେ ତପସ୍ୟା ସାଧିଥିଲେ । ତେଣୁ ସେ ତାହାକୁ ପାଇଲେ ।
ତେଣୁ ସେ ପଦ୍ମାର ଉଦରେ । ନବାସ ଗର୍ଭ ପ୍ରବାହରେ ।
ଏମନ୍ତ ହେଲେ କିଛୁଦିନ । ଆନନ୍ଦ ସବୁଙ୍କର ମନ ।
ଭାଦ୍ର ଯେ ଶୁକ୍ଳାଷ୍ଟମୀ ଦିନ । ମଧ୍ୟାହ୍ନ କାଳେ ହେଲେ ଜନ୍ମ ।
ବୁଧ ଅନୁରାଧା ବାସରେ । ମାହେନ୍ଦ୍ର ଗୁରୁଙ୍କ ବେଳାରେ ।

ରବି ଶଶୀ ତେଜ ଗଞ୍ଜନ । ଶୁଦ୍ଧ ସୁବର୍ଣ୍ଣ କାନ୍ତି ବର୍ଣ୍ଣ ।
ତେଜଃ ପୁଞ୍ଜରେ ଦୀପ୍ତିମାନ । ସୁତିକା ଗୃହ ଶୋଭମାନ ।
ଉଦିତ ହୋଇ ମୂର୍ତ୍ତିମନ୍ତ । କି ଅବା ତହିଁ ବିରାଜିତ ।
କି ଅବା ପୁଣ୍ୟ ପୁଞ୍ଜ ଏଥି । ମୂର୍ତ୍ତିମନ୍ତ ହୋଇ ଅଛନ୍ତି ।

× × × ×

ପିତା ଅତ୍ୟନ୍ତ ହରଷରେ । ଜନମ ଲଗ୍ନ ସ୍ଥିର କଲେ ।
ପଣ୍ଡିତ ଜନେ କରି ମତ । ନାମ ଦେଲେକ ଜଗନ୍ନାଥ ।

ଦିନକୁ ଦିନ ତେଜସ୍ୱୀ ପରି ଜଗନ୍ନାଥ ଦାସ ବଢ଼ିବାକୁ ଲାଗିଲେ । ଏହି ବାଲ୍ୟ ବୟସରୁ ତାଙ୍କର ଅସାଧାରଣ ଧୀମତ୍ତା ପ୍ରକାଶ ହୋଇଥିଲା ବୋଲି କବି ଉଲ୍ଲେଖ କରିଛନ୍ତି । ତେଣୁ ସେ ଅନାୟାସରେ ସଂସ୍କୃତ ସାହିତ୍ୟର ସମସ୍ତ ଶାସ୍ତ୍ର ପୁରାଣ ଆୟତ୍ତ କରି ପାରିଥିଲେ । ସେ କାଳର ପ୍ରଥାନୁସାରେ ଜଗନ୍ନାଥ ଦାସ ଦ୍ୱାଦଶ ବର୍ଷରେ ପଦାର୍ପଣ କରନ୍ତେ ପିତା ଭଗବାନ ତାଙ୍କୁ ବିବାହ ଦେବାପାଇଁ ପ୍ରସ୍ତାବ କଲେ । ମାତ୍ର ସେ ଅଧ୍ୟୟନରତ ଥିବାରୁ ଏପରି ପ୍ରସ୍ତାବକୁ ଆଦୌ ଗ୍ରହଣ କଲେ ନାହିଁ । ତାଙ୍କର ଅଧ୍ୟୟନ ସମ୍ପର୍କରେ କବି ଲେଖିଛନ୍ତି -

"ଋକୁ ଯଜୁ ସେ ସାମ ତିନ । ବେଦ ଅଭ୍ୟାସ କଲେ ପୁଣି ।
ସକଳ ଶାସ୍ତ୍ରେ ପୂର୍ଣ୍ଣ ହେଲେ । ଭାରତ ସମସ୍ତ ପଢ଼ିଲେ ।
ଶ୍ରୀରାମାୟଣ ଗ୍ରନ୍ଥ ସାଧି । ଶ୍ରୀଭାଗବତେ ଦେଲେ ବୁଦ୍ଧି ।
ଦ୍ୱାଦଶସ୍କନ୍ଧ ଭାଗବତ । ଟୀକା ଟିପ୍ପଣୀହିଁ ସହିତ ।
ଏମାନ ସାଧିଲେ ବିଶେଷ । ହୋଇଲା ଅଷ୍ଟାଦଶ ବର୍ଷ ।
ବଟ ଗଣେଶଙ୍କ ଅଗ୍ରତ । ରଚିଲେ ଭାଷା ଭାଗବତ ।"

ଜଗନ୍ନାଥ ଦାସ ବଟ ଗଣେଶଙ୍କ ଆଗରେ ଭାଗବତର ଦଶମସ୍କନ୍ଧ ରଚନା କରି ଶ୍ରୋତା ମାନଙ୍କୁ ଶୁଣାଇ ମୁଗ୍ଧ କରୁଥିବା ସମୟରେ ମହାପ୍ରଭୁ ଚୈତନ୍ୟ ସୁଷ୍ଣବେ ଶିଷ୍ୟ ପରିବେଷ୍ଟିତ ହୋଇ ପଦାର୍ପଣ କରିଥିଲେ । ସେ ଜାଇ ମଠରେ ଅବସ୍ଥାନ କରି ପ୍ରତିଦିନ ଜଗନ୍ନାଥଙ୍କୁ ଦର୍ଶନ କରୁଥାନ୍ତି । ଯେପରି—

"ପ୍ରକୃତ ଭାଗବତ ବାଣୀ । ଶ୍ରୀକୃଷ୍ଣ ଲୀଳା ତରଙ୍ଗିଣୀ ।
ନିର୍ମଳ ସୁଧା ପାନକରି । ସମସ୍ତେ ଛନ୍ତି କର୍ଣ୍ଣ ଡେରି ।
ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ।
ବଟ ତଳରେ ବିଜେ କଲେ । ପୁରାଣ ଶୁଣି ତୋଷହେଲେ ।
ପ୍ରେମ ଭାବରେ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ।

ଏତଦ୍‌ବ୍ୟତୀତ ଆଲୋଚ୍ୟ ଚରିତ ଗ୍ରନ୍ଥରେ ଜଗନ୍ନାଥ ଦାସଙ୍କ ଭାବାବେଶ, ଦାସଙ୍କ ଭବିଷ୍ୟଦ୍‌ବକ୍ତା ସେବା କରିବା, ବୋଇତ ବେପାରୀ କାଶ ରାମ ଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଚନ୍ଦନ-କାଠ ଅର୍ପଣ ଏବଂ ତହିଁରେ ଜଗନ୍ନାଥ ଦାସଙ୍କର ଅଲୌକିକତା ପ୍ରଦର୍ଶନ ପ୍ରଭୃତି ଅନେକ ଘଟଣା ବର୍ଣ୍ଣିତ ହୋଇଛି । ବିଜ୍ଞାନ ଯୁଗର ପାଠକମାନେ ଏଗୁଡ଼ିକୁ ପୁରାଣର କଥାନକ ବୋଲି ଗ୍ରହଣ କରିପାରନ୍ତି, ମାତ୍ର ଭାରତବର୍ଷ ଯୋଗୀ ଋଷି ଏବଂ ତାନ୍ତ୍ରିକମାନଙ୍କର ଦେଶ । ଏପରିକି ଏହି ଅତ୍ୟାଧୁନିକ କାଳରେ ମଧ୍ୟ କେତେକ ମହାପୁରୁଷ ନାନା ଅଲୌକିକ ଘଟଣା ପ୍ରଦର୍ଶନ କରୁଥିବା ଅତ୍ୟନ୍ତ ଜଣାଶୁଣା କଥା । ତେଣୁ ପରମ ସାଧକ ଜଗନ୍ନାଥ ଦାସଙ୍କ ଜୀବନ ଚରିତ ଅଧ୍ୟୟନ କାଳରେ ଏସବୁ କେବଳ ପୁରାଣର କଳ୍ପନା କହିବା ଠିକ୍ ହେବନାହିଁ । ଅବଶ୍ୟ ପୁରାଣ ଯୁଗର ରାଜତ୍ୱ କାଳରେ ସାହିତ୍ୟରେ ଏହି ଅତ୍ୟଦ୍ଭୁତ କଳ୍ପନା ସ୍ଥାନ ଲାଭ କରିବା ସ୍ୱାଭାବିକ । ତେଣୁ ପରବର୍ତ୍ତୀ କାଳରେ ଜଗନ୍ନାଥ ଦାସଙ୍କ ଜୀବନ ଚରିତକୁ କେନ୍ଦ୍ର କରି ଯେଉଁ ନାଟକ ଏବଂ ଜୀବନୀ ପ୍ରସ୍ତୁତ ହେଲା, ତହିଁରେ ଏଭଳି ଅଲୌକିକ ଘଟଣାଗୁଡ଼ିକ ସ୍ଥାନ ଲାଭ କଲା । ମନେହୁଏ ଜୀବନଚରିତର ଏହି ପରମ୍ପରା ବହୁକାଳ ଅକ୍ଷୁଣ୍ଣ ରହିଲା । ଏହି ପ୍ରସଙ୍ଗରେ ଓଡ଼ିଆ ସାହିତ୍ୟର ଆଉ ଏକ ଚରିତ ଗ୍ରନ୍ଥ 'ଦାଢ୍ୟତାଭକ୍ତି' ଏଠାରେ ଉଲ୍ଲେଖ ଯୋଗ୍ୟ ।

ଭକ୍ତକବି ରାମଦାସଙ୍କ 'ଦାଢ୍ୟତାଭକ୍ତି' ଉତ୍କଳର ଘରେ ଘରେ ବହୁକାଳରୁ ସୁପରିଚିତ । ଲୋକସାଧାରଣ ଅତ୍ୟନ୍ତ ଆଦର ଏବଂ ଭକ୍ତି ଭାବର ସହିତ ଏହି ଗ୍ରନ୍ଥ ପାରାୟଣ କରିଥାନ୍ତି ଏବଂ ଏଥିରେ ବର୍ଣ୍ଣିତ ଜୀବନଚରିତ ଲୋକ ଚରିତକୁ ବହୁଭାବରେ ପ୍ରଭାବିତ ଓ ଅନୁପ୍ରାଣିତ କରିଥିବା ଜଣାଯାଏ । ପରବର୍ତ୍ତୀକାଳର ଗୀତ କବିମାନେ ବନ୍ଦନା ଗୀତରେ ଏହି ଭକ୍ତମାନଙ୍କ ପ୍ରସଙ୍ଗ ସ୍ମରଣ କରିଛନ୍ତି ।

ରାମଦାସଙ୍କ ସମ୍ପର୍କରେ ଐତିହାସିକ ସୂର୍ଯ୍ୟନାରାୟଣ ଦାସଙ୍କ ଆଲୋଚନା ଅତ୍ୟନ୍ତ ଉପାଦେୟ । ସେ ଲେଖିଛନ୍ତି ଏହିପରି—

'ଦାଢ୍ୟତାଭକ୍ତି' ବା 'ଦାଢ୍ୟତାଭକ୍ତି ରସାମୃତ' ନାମକ ବିଖ୍ୟାତ ଭକ୍ତ ଜୀବନ ଗ୍ରନ୍ଥର ପ୍ରଣେତା ରାମଦାସ ଅଷ୍ଟଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜନ୍ମଗ୍ରହଣ କରିଥିଲେ ଏବଂ ଦ୍ୱିତୀୟାର୍ଦ୍ଧରେ ଗ୍ରନ୍ଥଟି ରଚନା କରିଥିଲେ । ଜୀବନୀଗ୍ରନ୍ଥ ହିସାବରେ ଦାଢ୍ୟତାଭକ୍ତି ରସାମୃତ ଓଡ଼ିଆରେ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ରାମଦାସ ପ୍ରାୟ ପଞ୍ଚାଶ ଜଣ ଭକ୍ତଙ୍କ ଜୀବନର ବିଶିଷ୍ଟ ଘଟଣା ଏଥିରେ ବର୍ଣ୍ଣନା କରିଛନ୍ତି; ଭକ୍ତଜୀବନରେ ଭଗବାନଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ଦର୍ଶାଇବା ଏହି ଜୀବନୀମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଦୃଢ଼ଭକ୍ତି ଭଗବାନଙ୍କୁ ବଶ କରାଏ । ଭକ୍ତ ଭଗବାନଙ୍କ ଠାରେ ଭରସା ରଖି ମହା ବିପଦର ସମ୍ମୁଖୀନ ହୋଇ ସେଥିରୁ ଉଦ୍ଧାର ଲାଭ କରିଥିବା ବିଷୟ କବି ବର୍ଣ୍ଣନା କରିଛନ୍ତି । 'ଦାଢ୍ୟତାଭକ୍ତି ରସାମୃତରେ' ରାମଦାସ ବହୁ ଐତିହାସିକ ଭକ୍ତ ଓ ଶାସକଙ୍କ ବିଷୟ ଲିପିବଦ୍ଧ କରିଛନ୍ତି । ଐତିହାସିକ ଯୁଗର କେତେକ ଭକ୍ତ, କବି, ରାଜା ଓ ମନ୍ତ୍ରୀ ପ୍ରଭୃତିଙ୍କ ସମ୍ବନ୍ଧରେ କେତେକ ବିଶିଷ୍ଟ ତଥ୍ୟ କବି

ପରିବେଷଣ କରି ଜାତୀୟ ଇତିହାସ କ୍ଷେତ୍ରକୁ ଅମରଦାନ କରିଯାଇଛନ୍ତି ।
( ଓଡ଼ିଆ ସାହିତ୍ୟର ଇତିହାସ-ସୂର୍ଯ୍ୟନାରାୟଣ ଦାଶ ତୃତୀୟଭାଗ ୧୯୬୬ ପୃ. ୭୧୪)

କବି ରାମଦାସ ଖୋର୍ଦ୍ଧା ରାଜା ବୀରକେଶରୀ ଦେବ (୧୭୩୬-୧୭୯୩) ଙ୍କ ରାଜତ୍ୱର ୪୬ ଅଙ୍କରେ ଅର୍ଥାତ୍ ୧୭୭୦ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥ ଶେଷ କରିଥିଲେ । ଏହାର ତେତିଶ ବର୍ଷ ପରେ ଓଡ଼ିଶାରେ ପାଶ୍ଚାତ୍ୟ ଯୁଗ ପ୍ରଭାବିତ ସଭ୍ୟତା ଆରମ୍ଭ ହେଲା ଏବଂ ଓଡ଼ିଆ ସାହିତ୍ୟରେ ନୂଆ ଯୁଗର ଅଭ୍ୟୁଦୟ ହେଲା । ନୂତନ ଯୁଗର ଚେତନାବୋଧ ଜାଗ୍ରତ ହେବାର ବହୁପୂର୍ବରୁ ରାମଦାସ ଦାର୍ଢ୍ୟତାଭକ୍ତିର ପୁରାଣ ଶୈଳୀ ଜରିଆରେ ଜୀବନଚରିତ ପରିବେଷଣ କରି ଯେଉଁ ଅଭିମୁଖ୍ୟର ସଙ୍କେତ ଦେଇଛନ୍ତି । ଏହି ପୁରାଣସେବିତ ଦେଶର ମନୋଭାବ ଅଧ୍ୟୟନ କରି ଲେଖକ ବଳରାଜା ଚରିତ, ହରିଶ୍ଚନ୍ଦ୍ର ରାଜା ଚରିତ, କର୍ମାବୋଇ ଚରିତ ପ୍ରଭୃତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ମଧ୍ୟଯୁଗର କବି ବଳରାମ ଦାସ, ଜଗନ୍ନାଥଦାସ, କୃଷ୍ଣଦାସ, କମ୍ପା ଭକ୍ତ ଶିରୋମଣି ଜୟଦେବ, ମୀରାବାଈ, ତୁଳସୀଦାସ ପ୍ରଭୃତିଙ୍କ ଜୀବନୀ କଥା ମଧ୍ୟ ପରିବେଷଣ କରିଛନ୍ତି । ଅତ୍ୟନ୍ତ ଆନନ୍ଦର କଥା ଯେ ଆଲୋଚ୍ୟ ପୁସ୍ତକରେ କବି ଭାରତୀୟ ଜୀବନକଥା ସହିତ ଓଡ଼ିଶାର ପ୍ରସିଦ୍ଧ ଜୀବନ କାହାଣୀ ବିବୃତ କରି ଉଦାର ମନୋଭାବର ପରିଚୟ ଦେଇଛନ୍ତି । ଏଥିରେ ଓଡ଼ିଶାର ଭକ୍ତ ରଘୁ ବେହେରା, ବିଶ୍ୱମ୍ଭର ଦାସ, ଗଙ୍ଗାଧର, ବନ୍ଧୁ ମହାନ୍ତି, ମଣିଦାସ ପ୍ରଭୃତି ଭକ୍ତ ମାନଙ୍କ ଜୀବନୀ ସମ୍ପର୍କରେ ଅତ୍ୟନ୍ତ ଅଦ୍ଭୁତ ଘଟଣାମାନ ପ୍ରଚାର କରି ଅଛନ୍ତି । ଏ ଦେଶର ଜାତି ବର୍ଣ୍ଣ ଆଧିପତ୍ୟ ଥିବା ସମାଜରେ ଅତି ସାଧାରଣ ସ୍ତରର ମହତ୍ତ୍ୱପୂର୍ଣ୍ଣ ଜୀବନୀ ରଚନା କରି କବି ନିଜର ଦୂରଦୃଷ୍ଟିସମ୍ପନ୍ନତା ତଥା ନିଜର ଗଣତାନ୍ତ୍ରିକ ଅଭିମୁଖ୍ୟର ପରିଚୟ ଦେଇଛନ୍ତି । କାରଣ ବିଶ୍ୱମ୍ଭର ପୂର୍ବତନ ଗଡ଼ଜାତ ରାଜା ଢେଙ୍କାନାଳର ଜଣେ ବଣିଆ କରଣ । ରଘୁ ବେହେରା ପୁରୀ ନିକଟସ୍ଥ ପିପିଲି ଗ୍ରାମର ଜଣେ ସାଧାରଣ ଲୋକ । ଗଙ୍ଗାଧର ଜାତିରେ ବଣିଆ, ବନ୍ଧୁ ମହାନ୍ତି ଯାଜପୁରର କରଣ , ମଣିଦାସ ପୁରୁଷୋତ୍ତମପୁରରେ ଜଣେ ନଗଣ୍ୟ ମାଳାକାର ମାତ୍ର । ଦାସିଆ ବାଉରୀ ଅଛୁଆଁ ପରିବାରର ସନ୍ତାନ ଏବଂ ଅନନ୍ତା ଶବର ଜଣେ ଗିରିଜନ । ଏଥିରୁ ଲେଖକଙ୍କର ଚରିତ୍ର ନିର୍ବାଚନରେ ସାର୍ବଜନୀନତା ଲକ୍ଷ୍ୟ କରାଯାଏ । ଏଥିରୁ ପ୍ରମାଣିତ ହେଉଛି ଯେ ମହତ୍ ବ୍ୟକ୍ତିତ୍ୱ କେବଳ ଉଚ୍ଚବଂଶ ଅଥବା କୌଳିନ୍ୟକୁ ଅନୁସରଣ କରେ ନାହିଁ । ନିଜର ସାଧନା, ତପସ୍ୟା ଏବଂ ନିଷ୍ଠା ବଳରେ ଯେ କୌଣସି କ୍ଷେତ୍ରରେ ମଧ୍ୟ ବିଶିଷ୍ଟ ଚରିତ୍ରର ଉଦୟ ହୋଇପାରେ । ତେଣୁ ସେ ଲୋକପୂଜ୍ୟ ହେବାରେ କୌଣସି ପ୍ରତିବନ୍ଧକ ନାହିଁ । ଉଦାହରଣ ସ୍ଥଳରେ ରଘୁ ବେହେରା ଚରିତ ସମ୍ପର୍କରେ କବିଙ୍କର ସୂଚନା ଦ୍ରଷ୍ଟବ୍ୟ ।

'ପୁରୁଷୋତ୍ତମ ମହାକ୍ଷେତ୍ର । ଯେ କ୍ଷେତ୍ରମାନଙ୍କ ପବିତ୍ର ।
ତହିଁର ଦଶକୋଶ ଠାରେ । ଶ୍ରୀନୀଳାଚଳ ପାରୁଶରେ ।
ପିପିଲି ଗ୍ରାମ ନାମ ତାର । ସେହି ଗ୍ରାମରେ ତାର ଘର ।
ଜାତିରେ ଅଟଇ ଧୀବର । ରଘୁବେହେରା ନାମ ତାର ।
ତାହାର ଘରେ ତିନି ପ୍ରାଣୀ । ମାତା ସହିତେ ତା ଘରଣୀ ।

ଏମନ୍ତେ ଉଦନଜଣ ଥାନ୍ତି । କରି ତାହାଙ୍କ ନିଜ ବୃତ୍ତି ।
ଜାଲ ପକାଇ ମୀନ ମାରି । ପ୍ରାଣ ପୋଷନ୍ତି ବର୍ଣ୍ଣୀ କରି ।
ଏମନ୍ତେ କେତେଦିନ ଅନ୍ତେ । ପୁଙ୍ଗନ ଜନ୍ମିଲା ତା ଗର୍ଭେ ।'
(ଦାଢ଼୍ୟତାଭକ୍ତି)

ଏହାପରେ ରଘୁ କେଉଟର ଜୀବନରେ ଆସିଛି ଅପ୍ରତ୍ୟାଶିତ ପରିବର୍ତ୍ତନ । ସଂସାରର ଜଞ୍ଜାଳ ସଂଘର୍ଷ ମଧ୍ୟରେ ସେ କିପରି ନିଜର ନିଷ୍ଠାବଳରେ ଅପୂର୍ବ ଭକ୍ତିମତ୍ତା ପ୍ରଦର୍ଶନ କରି ବିଷ୍ଣୁକୃପା ଲାଭ କରିଛି, ତାହା ହିଁ ଏଠାରେ ଉଲ୍ଲିଖିତ । ଦାଢ଼୍ୟତାଭକ୍ତିରୁ ଏହିପରି ବହୁ ଉଦାହରଣ ଦିଆଯାଇପାରେ । ରାଧାମୋହନ ପୁସ୍ତକାଳୟ ପ୍ରକାଶିତ ଦାଢ଼୍ୟତାଭକ୍ତି ପୁସ୍ତକରେ ସର୍ବମୋଟ ୫୫ଟି ଜୀବନଚରିତ ଦିଆଯାଇଛି । ଉପଯୁକ୍ତ ସମ୍ପାଦନା ଅଭାବରେ ଏଥିରୁ କେତେକ ଚରିତ ଯେ ରାମଦାସଙ୍କ ନାମରେ ପରେ ଯୋଡ଼ାଯାଇ ନଥିବ ଏହା କିଏ କହିବ ? ତଥାପି ରାମଦାସଙ୍କ ଏହି ପଦକ୍ଷେପ ଅତ୍ୟନ୍ତ ଅଭିନନ୍ଦନୀୟ । ସମକାଳୀନ କାବ୍ୟସାହିତ୍ୟରେ ପଡ଼ୋଶୀଭାଷା ସାହିତ୍ୟରେ ଏତେ ଜୀବନଚରିତ ସମ୍ବଳିତ ଏପରି ଏକ ପୁସ୍ତକ ଦେଖିବାକୁ ମିଳେନାହିଁ । ଅବଶ୍ୟ ରାମଦାସଙ୍କ ଜୀବନଚରିତରେ ଐତିହାସିକ ସତ୍ୟତା ଖୋଜିଲେ ନିଶ୍ଚିତ ହତାଶ ହେବାକୁ ହେବ । କେବଳ ସ୍ତୁତି ଓ କିମ୍ବଦନ୍ତୀକୁ ଆଶ୍ରୟ କରି କବି ରାମଦାସ ଏହି ଜୀବନଚରିତ ସଙ୍କଳନ କରିଛନ୍ତି । ମୋଟ ଉପରେ ଓଡ଼ିଆ ଜୀବନୀ ସାହିତ୍ୟର ପୃଷ୍ଠଭୂମି ଓ ପରମ୍ପରା ନିର୍ମାଣରେ ଦାଢ଼୍ୟତାଭକ୍ତି ସ୍ଥାନ ଆଦୌ ନଗଣ୍ୟ ନୁହେଁ ।

ଏହି ପ୍ରସଙ୍ଗରେ ସେହି ମଧ୍ୟଯୁଗୀ ସାହିତ୍ୟରେ ଈଶ୍ୱର ଦାସଙ୍କ ରଚିତ ଶ୍ରୀଚୈତନ୍ୟ ଭାଗବତ ମଧ୍ୟ ଆଲୋଚନା କରାଯାଇପାରେ । ଈଶ୍ୱର ଦାସ ଭକ୍ତ । ସେ ତାଙ୍କର ଆରାଧ୍ୟ ଚୈତନ୍ୟଚନ୍ଦ୍ରଙ୍କୁ ଭଗବାନଙ୍କ ଅବତାର ରୂପେ କଳ୍ପନା କରିଛନ୍ତି । ଯେଣୁ ଚୈତନ୍ୟ ଏକ ଐତିହାସିକ ବ୍ୟକ୍ତି ହେଲେ ହେଁ ଭକ୍ତିଭାବରେ ଗଦଗଦ୍ ଚିତ୍ତରେ ଈଶ୍ୱର ଦାସ ସମ୍ପୂର୍ଣ୍ଣ ପୁରାଣ ଆକାରରେ ଚୈତନ୍ୟଙ୍କର ଚରିତ ଲେଖନ କରିଛନ୍ତି । ସେ ତାଙ୍କୁ ସମ୍ପୂର୍ଣ୍ଣ ଭାବରେ ଏକ ଅଲୌକିକ ଐଶୀ ବ୍ୟକ୍ତି ରୂପରେ ଚିତ୍ରଣ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ଏହି ଗ୍ରନ୍ଥ ଅତିମାନୁଷିକ ବ୍ୟାପାରରେ ପରିପୂର୍ଣ୍ଣ ହେଲେ ହେଁ ପ୍ରାଚୀନ ଜୀବନଚରିତ ହିସାବରେ ଏହାର ସ୍ଥାନ ସ୍ୱୀକାର କରିବାକୁ ହେବ । ଉତ୍କଳବିଶ୍ୱବିଦ୍ୟାଳୟ ୧୯୫୩ ଖ୍ରୀଷ୍ଟାବ୍ଦରେ ଏହି ଗ୍ରନ୍ଥର ଶୁଦ୍ଧ ସଂସ୍କରଣ ପ୍ରକାଶ କରିଥିଲେ । ସେହି ଗ୍ରନ୍ଥର ପରିଚୟ ପ୍ରଦାନ କରି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଥିଲେ—

''ଶ୍ରୀଚୈତନ୍ୟ ଚନ୍ଦ୍ର ଧରାଧାମରେ ଅବତୀର୍ଣ୍ଣ ହୋଇ ଯେ ଲୀଳା କରିଅଛନ୍ତି ତାହା ଅସାଧାରଣ । ସେ ଜଗତକୁ ଉଦ୍ଧାର କରିବା ନିମିତ୍ତ ଯେ ପ୍ରେମସମୁଦ୍ର ପ୍ରବାହିତ କରିଥିଲେ ତାହା ଅଭୂତପୂର୍ବ । ତାଙ୍କ ମହିମାରେ ଆକୃଷ୍ଟ ହୋଇ ନାନା ଧର୍ମର ଉପାସକମାନେ ତାଙ୍କର ସମୀପସ୍ଥ ହୋଇଥିଲେ ଏବଂ ତାଙ୍କର କୀର୍ତ୍ତନମଣ୍ଡଳୀରେ ଯୋଗଦାନ କରିଥିଲେ । ଏପରି ସ୍ୱତଃ ଯୋଗଦାନରେ ଚୈତନ୍ୟ ପରମ ପ୍ରୀତି ଲାଭ କରି ପ୍ରୀତିରସରେ ବିଶ୍ୱକୁ ପ୍ଲାବିତ କରିଥିଲେ ।

ସେ ଭାରତୀୟ ତୀର୍ଥାବଳୀ ପରିଦର୍ଶନପୂର୍ବକ କଳାନ୍ତ ଜୀବମାନଙ୍କର ଉଦ୍ଧାରକ ରୂପେ ହରି ପ୍ରେମଲୀଳା ବିତରଣ ପୂର୍ବକ ଭାରତୀୟ ଭୂମିକୁ ଆପ୍ୟାୟିତ କରିଥିଲେ ଏବଂ ତତ୍ପରେ ନିଜ ଜୀବନର ଶେଷ ଅଷ୍ଟାଦଶ ବର୍ଷ ଅନବଚ୍ଛିନ୍ନ ଭାବରେ ପୁରୀଧାମରେ ଉତ୍କଳୀୟ ଶୁଦ୍ଧ ଭକ୍ତିବାଦର ବୈଭବ ତଥା ଜ୍ଞାନମିଶ୍ରା ଭକ୍ତିବାଦର ସାଧକ ବୈଷ୍ଣବମାନଙ୍କ ସହିତ ପ୍ରେମାନନ୍ଦମୟ ଜୀବନ ଅତିବାହିତ କରିଥିଲେ । ଉତ୍କଳୀୟମାନେ ତାଙ୍କର ମହତ୍ତ୍ୱ ଉପଲବ୍ଧି କରି ତାଙ୍କୁ ମହାପୁରୁଷ ରୂପେ ଆପ୍ୟାୟିତ କଲେ ।

ଏ ବିଷୟ ଉତ୍କଳର ପଞ୍ଚସଖାଙ୍କର ତଥା ତାଙ୍କର ଅନୁଗତମାନଙ୍କର ଗ୍ରନ୍ଥାଦି ପାଠ କଲେ ସ୍ପଷ୍ଟ ପ୍ରତିପନ୍ନ ହୁଏ । ଉତ୍କଳରେ ଚୈତନ୍ୟଙ୍କର ମହିମା ପ୍ରାୟ ସର୍ବଜନ ସ୍ୱୀକୃତ । କାରଣ ଦୋଳପୂର୍ଣ୍ଣିମା ଦିନ ଉତ୍କଳରେ ପ୍ରାୟ ସର୍ବତ୍ର ତାହାଙ୍କର ଜନ୍ମୋତ୍ସବ ପାଳିତ ହୁଏ । ଈଶ୍ୱର ଦାସ ଚୈତନ୍ୟଙ୍କର ଚରିତ ପଦ୍ୟାକାରରେ ରଚନା କରି ଚୈତନ୍ୟଙ୍କଠାରେ ସ୍ୱଭକ୍ତିମତ୍ତା ଦର୍ଶାଇଛନ୍ତି । ବଙ୍ଗଦେଶରେ ତାଙ୍କର ଲୀଳା ପ୍ରଦର୍ଶନ ଗ୍ରନ୍ଥ 'ଚୈତନ୍ୟ ଭାଗବତ', ଚୈତନ୍ୟ ମଙ୍ଗଳ', ଚୈତନ୍ୟଚରିତାମୃତ, ଆଦି ପ୍ରଧାନ ଅଟନ୍ତି । ସଂସ୍କୃତରେ ମଧ୍ୟ ଚୈତନ୍ୟ ଚନ୍ଦ୍ରୋଦୟ ନାମକ ନାଟକ ଲିଖିତ ଅଛି । ସେହି ଗ୍ରନ୍ଥଶ୍ରେଣୀର ଓଡ଼ିଆରେ ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତ' । ଉକ୍ତ ଭାଗବତରେ ଚୈତନ୍ୟଙ୍କର ଅତିମାନୁଷିକ ବ୍ୟାପାର ବଙ୍ଗୀୟ ଚୈତନ୍ୟ ଲୀଳା ପ୍ରଖ୍ୟାପକ ଗ୍ରନ୍ଥ ସଦୃଶ । × × × ଐତିହାସିକ ଦୃଷ୍ଟିରେ ଚୈତନ୍ୟ ଭାଗବତର ମୂଲ୍ୟ ସ୍ୱଳ୍ପ ହେଲେ ହେଁ ଭକ୍ତ ସମାଜରେ ତାହାର ମୂଲ୍ୟ ଅତ୍ୟଧିକ ।

(ପ୍ରାରମ୍ଭିକ ଶ୍ରୀଚୈତନ୍ୟ ଭାଗବତ—ଉ: ବିଶ୍ୱବିଦ୍ୟାଳୟ)

ଚୈତନ୍ୟ ଚନ୍ଦ୍ରଙ୍କ କଟକ ରହଣି ସମ୍ପର୍କରେ ଦୀର୍ଘ ବର୍ଣ୍ଣନା ଥିଲେ ହେଁ ଏଠାରେ ତାହାର ସୂଚନା ମାତ୍ର ପ୍ରଦାନ କରାଗଲା—

"ବିଜୟେ କଟକର ଦାଣ୍ଡ
ଦେଖନ୍ତି ଚଉଦ ବ୍ରହ୍ମାଣ୍ଡ ।
ପ୍ରବେଶ ବାରବାଟୀ ଯାଇଁ
ସେଠାରେ ନ ରହି ଗୋସାଇଁ ।
ନଗ୍ର ବାହାର ହୋଇଗଲେ
ତୁଳସୀପୁରରେ ହେଲେ ।
ଦଧିବାମନ ମଣ୍ଡପର
ବିଜୟେ ଚୈତନ୍ୟ ଠାକୁର ।
ସେଠାରେ ବିଜୟ ଗୋସାଇଁ
ସୁଖ କରାଇ ନୃପସାଇଁ ।
ସବୁ ଲୋକଙ୍କୁ ସୁଖ କଲେ
ନାନା ପ୍ରକାରେ ଦୟା ଦେଲେ ।"

ମୋଟ ଉପରେ ଏହି ଗ୍ରନ୍ଥରେ ଚୈତନ୍ୟଙ୍କର ଜନ୍ମ, ବାଲ୍ୟଲୀଳା, ବିଦ୍ୟାପଠନ, ବିବାହ, ସନ୍ନ୍ୟାସ, ପଞ୍ଚସଖା ସଙ୍ଗ ଏବଂ ନୀଳାଦ୍ରି ପ୍ରବେଶ, ପ୍ରତାପରୁଦ୍ର ଉପଦେଶ, ସର୍ବଭୌମଙ୍କଥନ କଟକରେ ପ୍ରବେଶ, ସ୍ୱର୍ଗାରୋହଣ ପ୍ରଭୃତି ବର୍ଣ୍ଣନା କରାଯାଇଛି । ମାତ୍ର ତାଙ୍କୁ ଜଣେ ଅଲୌକିକ ବ୍ୟକ୍ତିତ୍ୱ ରୂପରେ ଚିତ୍ରଣ କରିବା ଲେଖକଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିବାରୁ ଚୈତନ୍ୟ ଭାଗବତ ଏକ 'ଜୀବନଚରିତ' ଅପେକ୍ଷା ଜୀବନୀ 'ପୁରାଣ' ପରି ମନେ ହୋଇଥାଏ । ତେବେ ଏହି ଗ୍ରନ୍ଥର ଏକ ବୈଶିଷ୍ଟ୍ୟ ହେଲା ଚୈତନ୍ୟଚନ୍ଦ୍ରଙ୍କ ଓଡ଼ିଶା ଲୀଳାର ବିସ୍ତୃତ ବର୍ଣ୍ଣନା । ଚୈତନ୍ୟଙ୍କ ଜୀବନୀ ସମ୍ପର୍କରେ ବଙ୍ଗଳାରେ ବହୁ ଚରିତଗ୍ରନ୍ଥ ରଚିତ ହୋଇଥିଲେ ହେଁ କୌଣସିଥିରେ ତାଙ୍କର ଓଡ଼ିଶା ଲୀଳା ବିଷୟରେ ସବିଶେଷ ବିବରଣୀ ନାହିଁ । ଅଥଚ ସେ ଜୀବନର ଅନ୍ତିମ ଅବସ୍ଥାରେ ବହୁବର୍ଷ ଉତ୍କଳଭୂମିରେ କଟାଇଥିଲେ ଏବଂ ଶେଷରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରେ ଦେହତ୍ୟାଗ କରିଥିଲେ । ତେଣୁ ଚୈତନ୍ୟଙ୍କ ପୂର୍ଣ୍ଣାଙ୍ଗ ଜୀବନ-କାହାଣୀ ସମ୍ପର୍କରେ ଈଶ୍ୱର ଦାସଙ୍କ ଚୈତନ୍ୟ ଭାଗବତର ଗୁରୁତ୍ୱ ଉଲ୍ଲେଖଯୋଗ୍ୟ ।

ଏହି ପ୍ରସଙ୍ଗରେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଜୀବନୀର ସଙ୍କେତ ପାଇଁ ମାଦଳା-ପାଞ୍ଜିକୁ ଆଲୋଚନା କରିବାକୁ ହେବ । 'ମାଦଳା ପାଞ୍ଜି' ଓଡ଼ିଆ ସାହିତ୍ୟରେ ଏକ ପ୍ରାଚୀନ ଗଦ୍ୟ ଲେଖା, ଯାହା ପରମ୍ପରା କ୍ରମେ ଶ୍ରୀମନ୍ଦିରର ସେବକମାନଙ୍କଦ୍ୱାରା ଲିଖିତ ହୋଇ ଆସୁଛି । ମାଦଳାପାଞ୍ଜିର ଐତିହାସିକ ମୂଲ୍ୟବୋଧ ସମ୍ପର୍କରେ ଐତିହାସିକମାନଙ୍କ ମଧ୍ୟରେ ନାନା ମତଵିରୋଧ ରହିଥିଲେ ହେଁ ଏବଂ ତାହାର ପ୍ରାଚୀନତା ସମ୍ପର୍କରେ ନାନା ସନ୍ଦେହ ଉପୁଜିଥିଲେ ହେଁ ମୁସଲମାନ ରାଜତ୍ୱ କାଳ ଏବଂ ମରହଟ୍ଟା ରାଜତ୍ୱକାଳ ଓଡ଼ିଶାର ରାଜନୈତିକ ପୁରୁଷମାନଙ୍କ ସମ୍ପର୍କରେ ଯେଉଁ ବିବରଣୀ ଦିଆଯାଇଛି, ତାହାକୁ ଇତିହାସ ସମର୍ଥନ କରିଥାଏ । ତେଣୁ ଭୋଇବଂଶ ଏବଂ ତାହାର ପରବର୍ତ୍ତୀ ରାଜବଂଶମାନଙ୍କ ରାଜପୁରୁଷମାନଙ୍କର ଜୀବନଚରିତ ସମ୍ପର୍କରେ ମାଦଳାପାଞ୍ଜି ବହୁଭାବରେ ଆଲୋକପାତ କରିଥାଏ । ଉଦାହରଣ-ସ୍ୱରୂପ ଏଥିରେ ପ୍ରଦତ୍ତ ଭୋଇବଂଶ ପ୍ରତିଷ୍ଠାତା ରାମଚନ୍ଦ୍ର ଦେବଙ୍କ ସମ୍ପର୍କରେ ବିବରଣୀ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ।

"ଯଦୁବଂଶ ରାଜା ଏଣେ ଉଦିତ ହୋଇଲେ । ଦନେଇ ବିଦ୍ୟାଧରଙ୍କ ପୁଅ ଚୋଟମୀ ଗଡ଼ରେ ଥିଲେ । ରାମଚନ୍ଦ୍ର ଦେବ ରାଜା ହୋଇଲେ; ବଡ଼ ପ୍ରତାପୀ ରାଜା ହୋଇଲେ । ଖୁରୁଧା ନାଆ ଦେଇ ଜଗନ୍ନାଥପୁରେ କଟକ କରି ରହିଲେ ବରୁଣାଇ ପର୍ବତ ତଳେ । ଏ ରାଜାଙ୍କ ୫ଅଙ୍କ ପାତଶାଙ୍କ ତୋଡ଼ରମଲ୍ଲ ଅଇଲେ । ଏଦନେ ଓଡ଼ିଶାରେ ମହାରଗ କଲା । ବିଶା ଶହେ କାହାଣ ଧାନ ଭରଣେ ହୋଇଲା । ଯେ ତୋଡ଼ରମଲ୍ଲ ନଉଚ୍ଛୁକ କଲେ । ୯ ଅଙ୍କେ ରାଜା କୁଜଙ୍ଗଗଡ଼ରୁ ବ୍ରହ୍ମ ଅଣାଇଲେ । ଖୁରୁଧା କଟକେ ବନଯାଗ କରି ସୁମୁରୁତି କରାଇଲେ । ୧୧ଙ୍କ କକଡ଼ା ଦି୧୮ନ ଶ୍ରାବଣ ଶୁକ୍ଳଦଶମୀ ଦିନ ଶ୍ରୀ ପୁରୁଷୋତ୍ତମ ବଡ଼-ଦେଉଳେ ରତ୍ନସିଂହାସନେ ବିଜେ କରାଇଲେ । ବ୍ରହ୍ମ ଆଣିଲା ବିଶର ମହାନ୍ତିଙ୍କି ପୋଇନା ଏକ କଲେ । ଏ ଦାରୁବ୍ରହ୍ମ ପେନ ଅଇଲା । ଏ ତାଙ୍କି ଭିତରେ ପଶିବ ବୋଲି ଶାଢ଼ି ଦେଲେ । ପରମେଶ୍ୱର ମାଂସ ଯାଏ ଜନସଙ୍ଗ ରୁ ମଶୋହି କରୁଥିଲେ । ଉପୁରେ ରାଜା ସଙ୍ଗ ଡ଼ ନ

କରାଇଲେ । ବ୍ରାହ୍ମଣ ସାଆନ୍ତ ଭକ୍ତମିଶ୍ରମାନଙ୍କୁ ସ୍ୱଦେଶୀ ପ୍ରଦେଶୀ ପଣ୍ଡିତମାନଙ୍କୁ ଘେନି ବଡ଼ୁଣ ପସ୍ତୁଣ ପଟେଶ୍ୱରଙ୍କ ଗହଣେ ଉପସ୍ଥିତ ହୋଇଲା ସେ ସେବକମାନଙ୍କୁ ଘେନି ସଙ୍କୁଳି ଭୋଗ ମୋଣୋହି କରାଇଲେ । ସକାଳ ଧୂପ ମଣୋହି ବଢ଼ିଲା ଉତ୍ତାରେ ଖେଚଡ଼ି ମହାପ୍ରସାଦ କାଖରେ ବୀର ଶ୍ରୀ ରାମଚନ୍ଦ୍ର ଦେବ ମହାରାଜା ଜୟ ବିଜୟେ ଦ୍ୱାର କଳାପାହାଡ଼ ଉପରେ ଛିଡ଼ା ହୋଇ ସମସ୍ତ ଭକ୍ତମିଶ୍ରମାନେ ପଚ୍ଛୋଆର କରୁଥିଲେ । ସମସ୍ତଙ୍କୁ ପୁଛିଲେ, ରାମଚନ୍ଦ୍ର ଭଞ୍ଜ, ଗୋବର୍ଦ୍ଧନ ପ୍ରହରାଜେ, ମିଶ୍ର ଗୋସାଇଁ ତନଲୋକେ ରାଜାଙ୍କ ହାତରୁ ଉଚ୍ଛିଷ୍ଟ ମହାପ୍ରସାଦ ସେବା କରି ମୁଣ୍ଡରେ ହାତ ବୋଲିଲେ । ହରି ଶବଦ କରି ସମସ୍ତ ସନ୍ନ୍ୟାସୀ ବ୍ରହ୍ମଚାରୀ ଭକ୍ତମିଶ୍ରମାନେ ମହାପ୍ରସାଦ ପାଇଲେ । ସମସ୍ତ ସନ୍ନ୍ୟାସୀ ବ୍ରହ୍ମଚାରୀମାନେ ବ୍ରାହ୍ମଣମାନେ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜାଙ୍କୁ ଦୁଇ ଚନ୍ଦ୍ରଚାମର ବୋଲି ଗାଢ଼ି ଦେଲେ । ଏ ମହାରାଜାଙ୍କ ଅଂଶରେ ତେଲେଙ୍ଗେ ମୁକୁନ୍ଦଦେବଙ୍କ ପୁଅ ଜ୍ୱଳା ପାତଶା ହାତୁରେ ଫେରାଦ ହୋଇଲେ । ପାତିଆରାଜା ମାନସିଂ ତାଙ୍କୁ ଓଡ଼ିଶାକୁ ପଠାଇଲେ । କହିଲେ ଓଡ଼ିଶାକୁ ଯେ ନାୟକ ହୋଇବ ତାହାକୁ ରାଜା କରିବ । ରାଜା ମାନସିଂହ ଅଇଲେ । ଏହାଙ୍କ ସଙ୍ଗେ ମୁକୁନ୍ଦଦେବଙ୍କ ପୁଅ ଥିଲେ । ସେ ପୁରୁଷୋତ୍ତମ ବୋଲି ଅଇଲେ । ତାହାଙ୍କୁ ରାମଚନ୍ଦ୍ର ଦେବ ଭେଟିଲେ । ଏ ଉତ୍ତାରୁ ଚନ୍ଦନଯାତ୍ରା ହୋଇଲେ । ଖଡ଼ିପ୍ରସାଦ କାହାକୁ ଦେବୁ ଏମନ୍ତେ ବୋଲି ସେବକମାନଙ୍କୁ ପଚାରିଲେ । ମାନସିଂହଙ୍କ ସଙ୍ଗେ ରାମଚନ୍ଦ୍ର ଥିଲେ । ମୁକୁନ୍ଦଦେବଙ୍କ ପୁଅ ଥିଲେ । ମାନସିଂହେ ପଣ୍ଡାଙ୍କୁ ଏ ବୁଦ୍ଧିଙ୍କୁ ପୁଛିଲେ । ସେବକଙ୍କୁ ବୋଇଲେ ଖଡ଼ି ପ୍ରସାଦ ଆଣ । ସେବକେ ଖଡ଼ିପ୍ରସାଦ ଆଣିଲେ । ବଡ଼ନାୟକଙ୍କ ଆଗେ ରାଜା ମାନସିଂହେ ରାମଚନ୍ଦ୍ର ଦେବଙ୍କୁ ପ୍ରସାଦ ଲାଗି କରାଇଲେ । ଓଡ଼ିଶା ରାଜ୍ୟରେ ରାଜା କଲେ ।"

(ମାଦଳା ପାଞ୍ଜି—ପ୍ରାଚୀସମିତି—'୧୯୪୦—ପୃ. ୭୨ ରୁ ୭୪)

ଏଣୁ ଜୀବନ କାହାଣୀ ଲିପିବଦ୍ଧ କରିବା ପାଇଁ ଓଡ଼ିଆ ସାହିତ୍ୟରେ ଯେଉଁ କେତେକ ଉଦ୍ୟମ କରାଯାଇଥିଲା, ତାହାର ଐତିହାସିକ-ଭୂମିକା ଅନସ୍ୱୀକାର୍ଯ୍ୟ । ସଂଖ୍ୟା ଦୃଷ୍ଟିରୁ ଅଧିକ ନହେଲେହେଁ ଗୁଣମୂଳକ ଦୃଷ୍ଟିରୁ ଏଗୁଡ଼ିକୁ ଅବହେଳା କରାଯାଇପାରିବ ନାହିଁ । ପରମ୍ପରା ଓ ପୂର୍ବସୂରୀ ଦିଗରୁ ଏ ଗୁଡ଼ିକ ବାଞ୍ଛନୀୟ ।

———

# ପତ୍ର ପତ୍ରିକାରେ ଜୀବନଚରିତର ପ୍ରଚାର ଓ ପ୍ରସାର

ଊନବିଂଶ ଶତାବ୍ଦୀ ଆଧୁନିକ ଓଡ଼ିଆ ସାହିତ୍ୟ ପକ୍ଷରେ ଏକ ସନ୍ଧିକ୍ଷଣ ବୋଲି କୁହାଯାଇଥାଏ । ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶା ଦଖଲ କଲେହେଁ ଏଠାରେ ଶାସନ ବ୍ୟବସ୍ଥା ସୁଦୃଢ଼ ଏବଂ ପ୍ରତିଷ୍ଠିତ କରିବାପାଇଁ ଇଂରେଜମାନଙ୍କୁ ବହୁକାଳ ଅପେକ୍ଷା କରିବାକୁ ପଡ଼ିଥିଲା । ୧୮୧୭ରେ ପାଇକ ବିଦ୍ରୋହ ପରି ଏକ ବ୍ୟାପକ ବିଦ୍ରୋହକୁ ଇଂରେଜମାନେ ଦମନ କରି ପାରିଥିଲେ ହେଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ୧୮୪୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିପ୍ଳବ ଏବଂ ବିଦ୍ରୋହ ଲାଗି ରହିଥିଲା । ମୋଟ ଉପରେ ଏଠାରେ ଶାସନ କଳକୁ ଅଧିକାର କରି କଳର ମୂଳଦୁଆ ପ୍ରତିଷ୍ଠା କରିବାର ପ୍ରାକ୍କାଳରେ ପୁନଶ୍ଚ ଦେଶବ୍ୟାପୀ ସିପାହୀ ବିଦ୍ରୋହ ଇଂରେଜ ରାଜଶକ୍ତିକୁ ବିଚଳିତ କରିଦେଲା । ୧୮୬୦ରେ ସେହି ବିଦ୍ରୋହର ଅବସାନ ହୋଇ କମ୍ପାନୀ ଶାସନ ବିଲୟପ୍ରାପ୍ତ ଏବଂ ଇଂରେଜ ପାର୍ଲାମେଣ୍ଟରେ ପ୍ରତ୍ୟକ୍ଷ ଶାସନ ପ୍ରତିଷ୍ଠିତ ହେଲେ ହେଁ ଓଡ଼ିଶାର ସମ୍ବଲପୁର ଅଞ୍ଚଳରେ ବୀର ସୁରେନ୍ଦ୍ରସାଏଙ୍କ ନେତୃତ୍ୱରେ ବହୁକାଳ ପର୍ଯ୍ୟନ୍ତ ଆନ୍ଦୋଳନ ଅକ୍ଷୁଣ୍ଣ ରହିଥିଲା । ଏହି ସମୟରେ ଶାସନ କଳର ଅବହେଳା ଏବଂ ଦୈବୀ ଦୁର୍ଘଟଣା ଯୋଗୁଁ ୧୮୬୬ ସାଲରେ ନଅଙ୍କ ଦୁର୍ଭିକ୍ଷରେ ଓଡ଼ିଶାର ଜାତୀୟ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଲା । ଏକ ବିଦେଶୀ ଶାସନ କଳ ଏବଂ ରାଜନୈତିକ ଅସ୍ଥିରତା ଯୋଗୁ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ହୋଇ ପାରିଲା ନାହିଁ । ବରଂ ଏହା ସବୁ କ୍ଷେତ୍ରରେ ଏକ ଅବହେଳିତ ଅଞ୍ଚଳ ଭାବରେ ପରିଗଣିତ ହେଲା । ସର୍ବୋପରି ଇଂରେଜ ରାଜଶକ୍ତି ଅନ୍ୟସ୍ୱାର୍ଥବଶ ହୋଇ ଓଡ଼ିଆ ଜାତୀୟ ଜୀବନର ସମୃଦ୍ଧି କରି ନଦେବା ପାଇଁ ବଦ୍ଧ-ପରିକର ଥିଲେ । ସେ ଯାହା ହେଉ ଏହି ସମୟରେ ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷ ଭାଗରେ କେତେକ ଓଡ଼ିଆ ପତ୍ରପତ୍ରିକା ସାମାଜିକ ଆନ୍ଦୋଳନ ପାଇଁ ନେତୃତ୍ୱ ଗ୍ରହଣ କରିଥିଲେ । ଏହି ସମୟରେ ବାଲେଶ୍ୱରରୁ ଏକ ଲୋକପ୍ରିୟ ସାପ୍ତାହିକ ପତ୍ରିକା "ଓଡ଼ିଆ ଓ ନବସମ୍ବାଦ" ଆତ୍ମପ୍ରକାଶ କରିଥିଲା । ଏହି ପତ୍ରିକାର ୧୮ । ୧ । ୧୮୮୮ ସଂସ୍କରଣରେ "ଘରଢ଼େଙ୍କି କୁମ୍ଭୀର ଶୀର୍ଷକ ଆଲୋଚନାଟି ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ଏକ ଦୀର୍ଘ ପ୍ରବନ୍ଧରେ ବିଭିନ୍ନ ଓଡ଼ିଆ ଭାଷୀ ଅଞ୍ଚଳରେ ଓଡ଼ିଆମାନେ ଅବହେଳିତ ଅବସ୍ଥାରେ ଥିବାରୁ ସେମାନଙ୍କର ଅବସ୍ଥା ଯେପରି ସନ୍ତୋଷଜନକ ନୁହେଁ ତାହା ଦର୍ଶାଇ ଦିଆଯାଇଛି । ପୁନଶ୍ଚ ଓଡ଼ିଆଙ୍କ ମଧ୍ୟରେ କୌଣସି ଐକ୍ୟ ନାହିଁ । ବଙ୍ଗଦେଶରେ କିପରି ଓଡ଼ିଆ ଲୋକ ଅବହେଳିତ ଓ ଘୃଣ୍ୟ । ଆମର ପ୍ରାଚୀନ ଐତିହ୍ୟ କିପରି ନଷ୍ଟ ହୋଇ ଯାଉଅଛି । ଏହିସବୁ ଉପଲବ୍ଧି କରି ଓଡ଼ିଆ ଲୋକେ ଜାଗ୍ରତ ହେବାପାଇଁ ପତ୍ରିକା ଆହ୍ୱାନ ଜଣାଇଛନ୍ତି । ସେହିପରି ୧୮୮୮ ଖ୍ରୀଷ୍ଟାବ୍ଦର ଏପ୍ରିଲ ୪ ତାରିଖ ସଂସ୍କରଣରେ "ଓଡ଼ିଆଭାଷା" ଶୀର୍ଷକ ଆଲୋଚନାଟି ପ୍ରତି ଦୃଷ୍ଟି

ଆକର୍ଷଣ କରାଯାଇପାରେ । ଏହି ପ୍ରବନ୍ଧରେ ଓଡ଼ିଆ ସାହିତ୍ୟର ଇତିହାସ, ନାଟକ, ଉପନ୍ୟାସ, ଜୀବନ, ଦର୍ଶନ, ପାଠ୍ୟ ପୁସ୍ତକ ପ୍ରଭୃତିର ଅଭାବ ଥିବାରୁ ପତ୍ରିକା ଦୁଃଖ ପ୍ରକାଶ କରିଛନ୍ତି, ସେ ବିଶେଷ କରି ଲେଖିଛନ୍ତି "ଓଡ଼ିଆ ଭାଷାରେ ଜୀବନଚରିତ ଦୁର୍ଲଭ" । କେବଳ ଅଭାବ ଦର୍ଶାଇ କ୍ଷୋଭ ପ୍ରକାଶ କରି ଓଡ଼ିଆ ଓ ନବସମ୍ବାଦ ନୀରବ ରହିନାହାନ୍ତି ବରଂ ସେହି ମାସର ୩୦ ତାରିଖ (୯ । ୪ । ୧୮୮୮) ସମ୍ବରଣରେ ଏକ ବିଶେଷ ବିଜ୍ଞାପନ ପ୍ରଚାର କରାଯାଇଥିବା ଲକ୍ଷ୍ୟ କରାଯାଏ । ଏଥିରେ ଅନୁରୋଧ କରାଯାଇଛି ଯେ ଓଡ଼ିଶାର ବିଶିଷ୍ଟ ରଜା, ଜମିଦାର ପ୍ରଭୃତି ଘରର ଲୋକେ ବଂଶ ଇତିହାସ ପ୍ରେରଣ କଲେ ପ୍ରକାଶ ପାଇବ । ମନେ ହୁଏ ଓଡ଼ିଆ ଭାଷାରେ ଜୀବନଚରିତ ଲେଖିବା ପାଇଁ ଏହାହିଁ ବୋଧହୁଏ ପ୍ରଥମ ଉଲ୍ଲେଖଯୋଗ୍ୟ ଉଦ୍ୟମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅବଶ୍ୟ ଏହି କାଳରେ ପ୍ରକାଶିତ ସାହିତ୍ୟ ପାଠ୍ୟପୁସ୍ତକ ମାନଙ୍କରେ କିଛି କିଛି ଜୀବନଚରିତ ପ୍ରସ୍ତୁତ ହୋଇଥିବ ଅଥବା ପାଠ୍ୟ ପୁସ୍ତକ ଉଦ୍ଦେଶ୍ୟରେ ବଙ୍ଗଳା ଭାଷାରୁ ଅନୂଦିତ ହୋଇ ପ୍ରଚାର କରାଯାଇଥିବ । ୧୮୬୭ ଖ୍ରୀଷ୍ଟାବ୍ଦରେ ଫକୀରମୋହନ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ରଚିତ ଜୀବନଚରିତ ଅନୁବାଦ କରି ପ୍ରକାଶ କଲେ । କାଳକ୍ରମେ ଊନବିଂଶ ଶତାବ୍ଦୀର ଏହି ଶେଷଭାଗରେ ସମ୍ବଲପୁର ହିତୈଷିଣୀ, ନବସମ୍ବାଦ, ଓଡ଼ିଆ ଓ ନବସମ୍ବାଦ, ଉତ୍କଳସାହିତ୍ୟ ପ୍ରଭୃତି ଯେଉଁ ସାମୟିକ ଓ ମାସିକ ପତ୍ରିକା ଗୁଡ଼ିକ ପ୍ରକାଶିତ ହେଲେ ସେମାନେ ଜୀବନଚରିତ ପ୍ରଚାର କରିବା ପାଇଁ ଉଦ୍ୟମ କରିଥିଲେ । ଓଡ଼ିଆ ସାହିତ୍ୟରେ ଆଲୋଚନା ଉଦାହରଣ ପ୍ରସଙ୍ଗରେ ମଧ୍ୟ ପ୍ରାଚୀନ ଓଡ଼ିଆ କବିମାନଙ୍କର ଜୀବନ କଥା ମଧ୍ୟ ଆଲୋଚିତ ହୋଇଥିଲା । ନବସମ୍ବାଦ ପତ୍ରିକାର କେତୋଟି ସଂଖ୍ୟାରେ କବିତା ଓ କବି ଶିରୋ-ନାମାରେ ଆଲୋଚନା ଏହି ପ୍ରସଙ୍ଗରେ ଦ୍ରଷ୍ଟବ୍ୟ । ତେବେ ଏହି ପ୍ରବନ୍ଧରେ ବିଶେଷ କରି ଭାଗବତର କବି ଜଗନ୍ନାଥ ଦାସ ଏବଂ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଜୀବନଚରିତ ଲିପିବଦ୍ଧ କରାଯାଇଛି । ମାତ୍ର ଏଗୁଡ଼ିକୁ ପାଠକଲେ ମନେ ହେବ ପୁରାଣର କାହାଣୀ ଦ୍ୱାରା ଲେଖକ ଅନୁପ୍ରାଣିତ ହୋଇଛନ୍ତି । ଇତିହାସ ସମର୍ଥନ ନକରୁଥିବା କେତେକ ବିଷୟ ପ୍ରସଙ୍ଗକ୍ରମେ ଯୋଡ଼ିଦେଇ ଭଞ୍ଜ ଜୀବନର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି । (୧୬।୭।୧୮୮୭)—ନବସମ୍ବାଦ)

ଆଧୁନିକ ଓଡ଼ିଆ ସାହିତ୍ୟରେ ପତ୍ରପତ୍ରିକାରେ ପ୍ରଥମେ ଯେଉଁ କେତେଜଣ ଜୀବନଚରିତ ଲେଖି ପୁଣ୍ୟଶ୍ଳୋକ ବ୍ୟକ୍ତିମାନଙ୍କୁ ପାଠକ ସମାଜରେ ପ୍ରଚାର କରିବାର ଉଦ୍ୟମ କରିଥିଲେ ସେମାନଙ୍କ ମଧ୍ୟରେ କବିବର ରାଧାନାଥ ଅନ୍ୟତମ । ୧୮୮୭ ଖ୍ରୀଷ୍ଟାବ୍ଦରେ 'ନବସମ୍ବାଦରେ' "ଭ୍ରମଣକାରୀର ପତ୍ର" ଶୀର୍ଷକ ଏକ ଲେଖା ଧାରାବାହିକ ଭାବରେ କବି ରାଧାନାଥ ପ୍ରକାଶ କରିଥିଲେ । ଏଥିରେ ତାଙ୍କର ତାଳଚେର ଓ ବାମଣ୍ଡା ଭ୍ରମଣ ସମ୍ପର୍କରେ ଉଲ୍ଲିଖିତ ଥିଲା ହେଁ ବାମଣ୍ଡା ପ୍ରସଙ୍ଗରେ ରାଧାନାଥ ଲେଖିବାକୁ ଯାଇ ବାମଣ୍ଡାର ଆଦର୍ଶ ନରପତି ବାସୁଦେବ ସୁଢ଼ଳଦେବଙ୍କ ଜୀବନଚରିତ ସମ୍ପର୍କରେ ଅନେକ ସମ୍ବାଦ ଦେଇଛନ୍ତି । ସେହିପରି ୧୮୯୭ ଖ୍ରୀଷ୍ଟାବ୍ଦରେ "ଓଡ଼ିଆ ଓ ନବସମ୍ବାଦରେ" ବାମଣ୍ଡା ଶୀର୍ଷକ ଆଲୋଚନାରେ ମଧ୍ୟ ରାଧାନାଥ ସୁଢ଼ଳ ଦେବଙ୍କ ସମ୍ପର୍କରେ ଅନେକ ସମ୍ବାଦ ଦେଇଅଛନ୍ତି । ସେହିପରି ୧୯୦୭

ସାଲରେ ଉତ୍କଳ ସାହିତ୍ୟ (୭ମ ଭାଗ—୧୧ଶ ସଂଖ୍ୟା—୧୩୧୧)ରେ ରାଧାନାଥ ସାର୍ ରାଜା ବାସୁଦେବ ସୁଢ଼ଳଦେବ ବୋଲି ଏକ ମୂଲ୍ୟବାନ୍ ଜୀବନୀ ରଚନା କରି ପ୍ରକାଶ କରିଥିଲେ । ଏହି କାଳରେ ଉତ୍କଳବନ୍ଧୁ ମଧୁସୂଦନ ରାଓ ପାଠ୍ୟ ପୁସ୍ତକ ଉଦ୍ଦେଶ୍ୟରେ ଯେଉଁ ଗଦ୍ୟ ଲେଖା ସଙ୍କଳନ କରିଥିଲେ, ସେଗୁଡ଼ିକ ମଧ୍ୟରେ ନିମ୍ନଲିଖିତ ଜୀବନଚରିତ ଦେଖିବାକୁ ମିଳିଥାଏ । ଯଥା :—ମହର୍ଷି ଦେବେନ୍ଦ୍ରନାଥ, ରାମତନୁ ଲାହିଡ଼ୀ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ହାଜୀ ମହମ୍ମଦ ମୋସିନ୍, ମହାରାଣୀ ଭିକ୍ଟୋରିଆ, ରଙ୍ଗନାଥ ଶାସ୍ତ୍ରୀ, ଅକ୍‌ବର୍, ସାବିତ୍ରୀ, ସାର୍ ସୟଦ ଅହମ୍ମଦ, ପ୍ୟାରୀମୋହନ ଆଚାର୍ଯ୍ୟ, ରାଣୀ ଅହଲ୍ୟାବାଈ, ବୁଦ୍ଧଦେବ, ବାବର, ରାଣୀ ଦୁର୍ଗାବତୀ, ସାର୍ ଆଇଜାକ୍ ନିଉଟନ୍, କୁମାରୀ ଫ୍ଲୋରେନ୍‌ସ ନାଇଟିଙ୍ଗେଲ୍, ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏହି ଜୀବନଚରିତଗୁଡ଼ିକ ତତ୍କାଳୀନ ଶିଶୁ ଓ ବାଳକମାନଙ୍କ ପାଠ୍ୟ ହେବା ଉଦ୍ଦେଶ୍ୟରେ ରଚନା କରାଯାଇଥିଲା । ଏଥିରେ ପୁରାଣ ଓ ଇତିହାସର ଚରିତାବଳୀ ବ୍ୟତୀତ ସମକାଳୀନ ଦେଶୀୟ ଓ ବିଦେଶୀ ତଥା ପ୍ରବାସୀ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିବର୍ଗ ସ୍ଥାନଲାଭ କରି ଅଛନ୍ତି । ଏହି ପ୍ରସଙ୍ଗରେ ମଧୁବାବୁଙ୍କ ଦୁଇଟି ଜୀବନଚରିତରୁ ଉଦ୍ଧାର କରି ତାଙ୍କର ଆଭିମୁଖ୍ୟ ବିଚାର କରାଯାଇପାରେ ।

"ପୃଥିବୀର ଇତିହାସରେ ସଙ୍କୀର୍ତ୍ତିତ ଯେଉଁ ନରପତିମାନେ ନିଜର ଦେବୋପମ ସୁନିର୍ମଳ ଚରିତ୍ର ଏବଂ ଲୋକହିତକର ଜୀବନର ଶୁଭ୍ରାଲୋକଦ୍ୱାରା ନିଖିଳ ସଂସାରରେ ମୁଖଉଜ୍ଜ୍ୱଳ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ପ୍ରାଚୀନ ଭାରତର ବୌଦ୍ଧନୃପତି ପୁଣ୍ୟଶ୍ଳୋକ ମହାରାଜ ଅଶୋକ ଜଣେ ଅଗ୍ରଗଣ୍ୟ ରାଜା ଥିଲେ । ହିଂସା ପ୍ରଣୋଦିତ ତରବାରିର ଜୟ ଜୟ ନୁହେଁ । ଧର୍ମର ଅର୍ଥାତ୍ ଅହିଂସା, ଦୟା ଓ ପବିତ୍ରତାର ଜୟ ଏକା ଜୟ ଅଟେ । ଏହି ମହୋଦାର ସ୍ୱର୍ଗୀୟ ନୀତି ତାହାଙ୍କର ଭାରତ ସାମ୍ରାଜ୍ୟ ଶାସନର ମୂଳନୀତି ଥିଲା । ଭାରତବର୍ଷରେ ତାହାଙ୍କର ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି ରାଜା ତାଙ୍କ ଅପେକ୍ଷା ବିପୁଳତାର ପ୍ରଭାବ ବିସ୍ତାର ବା ମହତ୍ତ୍ୱର କୀର୍ତ୍ତି ସଂସ୍ଥାପନ କରିପାରି ନାହାନ୍ତି ।" (ଅଶୋକ)

"ପ୍ରାଚୀନ କାଳରେ ଏହି ଉତ୍କଳଭୂମି ଧର୍ମ ଓ ଜ୍ଞାନର ଚର୍ଚ୍ଚା ବିଷୟରେ ଉନ୍ନତ ପଦବୀ ଅଧିରୂଢ଼ ହୋଇଥିଲେ ହେଁ, ଆଧୁନିକ ଯୁଗରେ ଏହା ଭାରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଅନୁନ୍ନତ ବୋଲି ପରିଗଣିତ ହେଉଅଛି । ବାସ୍ତବରେ ବର୍ତ୍ତମାନ ଯୁଗର ଜ୍ଞାନ ଶିକ୍ଷାର ଆଲୋକ ଅଦ୍ୟାପି ଉତ୍କଳରେ ସମ୍ୟକ ରୂପେ ପ୍ରକାଶିତ ହୋଇ ନାହିଁ ଏବଂ ଅଜ୍ଞାନ ସଂସ୍କାରର ଅନ୍ଧକାର ଲୋକ ସାଧାରଣଙ୍କ ବୁଦ୍ଧିକୁ ଆବୃତ କରି ରଖିଅଛି । ଏହି ଆଶାହୀନ ଅବସାଦମୟ ଅଜ୍ଞାନାନ୍ଧକାର ମଧ୍ୟରେ ବିଧାତାଙ୍କ ଅଦ୍ଭୁତ ବିଧାନରେ ଜଣେ ମହା ମନୀଷୀଙ୍କର ଆବିର୍ଭାବ ଦେଖି ଉତ୍କଳୀୟମାନଙ୍କର ଆଶା ଓ ଉଦ୍ୟମ ଧୀରେ ଧୀରେ ଜାଗରିତ ହେଉଅଛି ।

(ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ)

ବାସ୍ତବିକ ଓଡ଼ିଆ ଜାତିର ଏକ ଅଧଃପତିତ ଅବସ୍ଥା ଏବଂ ମାନସିକ ଗ୍ଳାନି ଅବସ୍ଥାରେ ମଧୁସୂଦନ ରାଓ ଚପଳମତି ବାଳକ ମାନଙ୍କ ହୃଦୟରେ ନୂତନ ଆଦର୍ଶ ସଞ୍ଚାରିତ କରିବାପାଇଁ

ଜୀବନଚରିତ ପ୍ରଣୟନ କରିଥିଲେ । ଏଠାରେ ବିଂଶ ଶତାବ୍ଦୀର ପ୍ରଥମ ଦଶକର ଅନ୍ୟ ଜଣେ ଖ୍ୟାତନାମା ପ୍ରାବନ୍ଧିକଙ୍କର ବିଷୟ ଆଲୋଚନା ନକଲେ ବିଷୟଟି ଅପୂର୍ଣ୍ଣ ରହିଯିବ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ ୧୯୦୭ ଖ୍ରୀଷ୍ଟାବ୍ଦରେ ତାଙ୍କର 'ପ୍ରବନ୍ଧପାଠ' ପୁସ୍ତକ ପ୍ରକାଶ କରିଥିଲେ । ଏହି ପୁସ୍ତକର ଅଧିକାଂଶ ପ୍ରବନ୍ଧ ଉତ୍କଳ ସାହିତ୍ୟ', 'ମୁକୁର', 'ଉତ୍କଳ ମଧୁପ', 'ଉତ୍କଳବାସୀ', ପ୍ରଭୃତି ବିଖ୍ୟାତ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ବିଶେଷ କରି "ଲୋକଚରିତ" ଲେଖିବା ବ୍ୟତୀତ ତାହା ପାଠକରିବାର ଆବଶ୍ୟକତା ସମ୍ପର୍କରେ ଏକ ଚମତ୍କାର ଆଲୋଚନା ପ୍ରବନ୍ଧ ପଣ୍ଡିତ ମୃତ୍ୟୁଞ୍ଜୟ ପ୍ରକାଶ କରିଛନ୍ତି । ଏଠାରେ ତାଙ୍କର କେତେକ ମତାମତ ଅତ୍ୟନ୍ତ ଉପାଦେୟ ମନେ ହୋଇଥାଏ । ସେ କହିଥିଲେ ଯେ, "ପ୍ରକୃତି ରୂପ ଅନନ୍ତ ଗ୍ରନ୍ଥ ଯେପରି ଆମ୍ଭ ମାନଙ୍କର ମହାଶିକ୍ଷା ସ୍ଥଳ, ସେହିପରି ମହାତ୍ମା ମାନଙ୍କର ଜୀବନ ମଧ୍ୟ ଗୋଟିଏ ଶିକ୍ଷାସ୍ଥଳ । ସେମାନଙ୍କର ମାର୍ଗ ଅନୁସରଣ ନକଲେ ଆମ୍ଭେମାନେ ଗନ୍ତବ୍ୟପଥ ନିରୂପଣ କରିପାରିବୁ ନାହିଁ କିମ୍ବା ପ୍ରକୃତ ମନୁଷ୍ୟତ୍ୱ ଲାଭ କରି ପାରିବୁ ନାହିଁ । ମନୁଷ୍ୟ ଚରିତ୍ର କେବଳ ଭ୍ରମ ପ୍ରମାଦ ପୂର୍ଣ୍ଣ । ଯଥା ସମ୍ଭବ ନିର୍ଦ୍ଦୋଷ ମାର୍ଗରେ ଜୀବନକୁ ଚଳାଇବାକୁ ହେଲେ ମହାତ୍ମାମାନଙ୍କର ଚରିତ୍ର ଗୋଟିଏ ପ୍ରଧାନ ଅବଲମ୍ବନ । ସେଥିପାଇଁ କଥାରେ କହନ୍ତି 'ମହା ଜନୋ ଯେନ ଗତଃ ସ ପନ୍ଥା', ଯେପରି ଗୋଟିଏ ଗ୍ରନ୍ଥରେ ପଦ ଠିକ୍ ସୁନ୍ଦର ଓ ସୁଗଠିତ ହୁଏ, ସେହିପରି ମହାତ୍ମାମାନଙ୍କ ଜୀବନର ଆଦର୍ଶରେ ଚରିତ୍ର ସୁଗଠିତ ହୋଇଥାଏ । ସମୁନ୍ନତ ଦେଶମାନଙ୍କରେ ଏ ବିଷୟରେ ଆଲୋଚନା ବହୁଳ ଭାବରେ ଦେଖାଯାଏ । ସେହି ଦେଶବାସୀମାନେ ବିଭିନ୍ନ ଲୋକ ଚରିତ୍ର ପାଠକରି ସେଥିରୁ ହଂସବତ୍ ସାର ଗ୍ରହଣ ପୂର୍ବକ ସ୍ୱୀୟ ଜୀବନର ଉତ୍କର୍ଷ ସାଧନ କରନ୍ତି, ସେହିପରି ଗୋଟିଏ ଜାତି ଅନ୍ୟ ଜାତିର ଶ୍ରେଷ୍ଠ ଗୁଣରାଜି ଗ୍ରହଣ କରି ପୁଷ୍ଟ ଓ ଉନ୍ନତ ହୁଏ । ଯେଉଁ ଜାତି ଆଜିକାଲି ଅତ୍ୟୁଚ୍ଚ ସୋପାନରେ ଆରୂଢ଼, ସେ ଅବଶ୍ୟ ଆନ୍ୟାନ ଜାତି ଠାରୁ ସାର ଗ୍ରହଣ ପୂର୍ବକ ନିଜର ଉତ୍କର୍ଷ ସାଧନ କରିଅଛି ।

ମହାତ୍ମାମାନଙ୍କର ଚରିତ୍ର ପାଠର ପ୍ରଥମ ପ୍ରୟୋଜନୀୟତା ଏହି ଯେ ତାହା ପାଠ କଲେ ପାଠକ ହୃଦୟକୁ ଗୋଟିଏ ନବବଳ ଆସେ । ତାହାଙ୍କ ଜୀବନର ଛାୟା ପାଠକ ହୃଦୟରେ କଥିତ ପ୍ରତିଫଳିତ ହୁଏ । ସେ ଯେତିକି ଅବହିତ ଓ ତଦ୍‌ଗତ ହୋଇ ଆଲୋଚନା କରିବେ ସେ ତେତିକି ଉକ୍ତ ମହାତ୍ମାମାନଙ୍କର ମହାଭାବ ହୃଦୟଙ୍ଗମ କରି ପାରିବେ ଏବଂ ଉକ୍ତ ଛାୟା ତାଙ୍କ ହୃଦୟରେ ତଦବୃତ ସଂଶ୍ଳିଷ୍ଟ ରହିବ । ଭିନ୍ନ ଭିନ୍ନ ମହାତ୍ମାଙ୍କ ଚରିତ ପାଠରେ ବିଭିନ୍ନ ମନୋବୃତ୍ତିର ପୁଷ୍ଟି ସାଧିତ ହୁଏ । ଜଣେ ମହାବୀରଙ୍କ ଚରିତ ପାଠକଲେ ଅପୂର୍ବ ଉତ୍ସାହ ଓ ସାହସ ଜନ୍ମେ । କର୍ମବୀରଙ୍କ ଚରିତ ପାଠରେ କର୍ମଶୀଳତା ବୃଦ୍ଧିପ୍ରାପ୍ତ ହୁଏ ଏବଂ ଧର୍ମାତ୍ମାଙ୍କ ଜୀବନ ବୃତ୍ତାନ୍ତ ପାଠଦ୍ୱାରା ଧର୍ମଭାବ ଦୃଢ଼ୀଭୂତ ହୁଏ । ଏହିପରି ନାନା ପ୍ରକାର ଲୋକ ଚରିତ ପାଠଦ୍ୱାରା ଜୀବନର ଗୋଟିଏ ଗୋଟିଏ ଅଭାବ ପୂର୍ଣ୍ଣ ହେଉଥିବ ଏବଂ ବାରମ୍ବାର ଆଲୋଚନା ଦ୍ୱାରା ଉକ୍ତ ବୃତ୍ତି ଗୁଡ଼ିକ ଦୃଢ଼ୀଭୂତ ହେଉଥିବ । ଏହି ବୃତ୍ତିମାନଙ୍କର ଦୃଢ଼ୀ-କରଣ ନିମନ୍ତେ ଆମ୍ଭ ଦେଶର ପୁରାଣାଦିରେ ସର୍ବଗୁଣାଦର୍ଶ ପୁରୁଷ ଓ ସ୍ତ୍ରୀମାନଙ୍କର ଚରିତ

ବର୍ଣ୍ଣିତ ହୋଇଅଛି । ରାମାୟଣ ଓ ମହାଭାରତ ଭାରତବାସୀ ମାନଙ୍କ ଚରିତ୍ର ଗଠନ ପକ୍ଷରେ ପ୍ରଧାନ ସହାୟ ।

ଲୋକଚରିତ ପାଠ ଶିକ୍ଷା କର୍ମର ଅଙ୍ଗ ବିଶେଷ । କାରଣ ଯେଉଁ ମହାତ୍ମା ସ୍ୱଜୀବନ କାଳ ମଧ୍ୟରେ କିପରି ଅଦମ୍ୟ ଅଧ୍ୟବସାୟ ପ୍ରଦର୍ଶନ ଦ୍ୱାରା ମହତ୍ କର୍ମମାନ ସାଧନ କରିଯାଇଛନ୍ତି, ତାହା ଆଲୋଚନା କଲେ ପ୍ରଭୁତ ଶିକ୍ଷା ମିଳେ, ଯାହା ଉପଦେଶ ପ୍ରଭୃତି ଦ୍ୱାରା ଦେବା ଅସମ୍ଭବ । ଆହୁରି ମଧ୍ୟ ମହାତ୍ମାମାନଙ୍କ ଚରିତ ପାଠରେ ଆନୁଷଙ୍ଗିକ ରୂପେ ତତ୍‌ତ୍‌ଦେଶୀୟର ଆଚାର ବ୍ୟବହାର, ସଂସ୍କାର, ଏବଂ ପୂରାବୃତ୍ତ ପ୍ରଭୃତିରେ ଅଭିଜ୍ଞତା ଜନ୍ମେ । ସେଥିପାଇଁ ଜୀବନ ବୃତ୍ତାନ୍ତ ପ୍ରଗାଢ଼ ଅଭିନିବେଶ ସହକାରେ ପାଠ କରିବା ଉଚିତ । ସାଧାରଣଙ୍କ ଅପେକ୍ଷା ତାଙ୍କର କି ବିଶେଷତ୍ୱ, ଶୈଶବକାଳରେ ତଦୀୟ ବୁଦ୍ଧି ବୃତ୍ତି କେଉଁ ମାର୍ଗରେ ଗତି କରୁଥିଲା, କେଉଁ ବିଷୟରେ ତାଙ୍କର କି ପ୍ରକାର ମତ ଏସବୁ ପ୍ରତି ପାଠକର ତୀକ୍ଷ୍ଣ ଦୃଷ୍ଟିଥିବା ଆବଶ୍ୟକ । ପାଠାନ୍ତେ ଉକ୍ତ ମହାତ୍ମାଙ୍କର ଜୀବନ ସମ୍ବନ୍ଧରେ କିଛିକାଲ ଆଲୋଚନା କରିବା ଏବଂ ତଦ୍‌ପ୍ରଦତ୍ତ ଉପଦେଶ ଗୁଡ଼ିକ ସମ୍ୟକ୍ ରୂପେ ହୃଦୟଙ୍ଗମ କରି ପାଳନ କରିବା ନିମନ୍ତେ ଯଥାଶକ୍ତି ଚେଷ୍ଟା କରିବା ସର୍ବଥା ବିଧେୟ ।"

(ପ୍ରବନ୍ଧପାଠ—ମୃତ୍ୟୁଞ୍ଜୟ ରଥ—ନୂତନ ସଂସ୍କରଣ—୧୯୬୦—ପୃ ୨୮—୩୯)

ଜୀବନଚରିତର ମୂଲ୍ୟବୋଧ ସ୍ୱୀକାର କରି ପଣ୍ଡିତ ମୃତ୍ୟୁଞ୍ଜୟ, ପ୍ରତାପ ସିଂହ, ଉଇଲିୟମ୍ ହଣ୍ଟର, ସାର୍ ଉଇଲିୟମ ଜୋନ୍ସ, ରାଣୀ ଅହଲ୍ୟାବାଈ, ଶଙ୍କରାଚାର୍ଯ୍ୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି ପ୍ରବନ୍ଧ ପିଲଙ୍କ ପାଠ୍ୟ ପାଇଁ ପ୍ରଣୟନ କରିଥିଲେ । ଓଡ଼ିଆ ସାହିତ୍ୟରେ ମୌଳିକ ଜୀବନଚରିତର ଅଭାବରେ ମୃତ୍ୟୁଞ୍ଜୟ ବଙ୍ଗଳା ସାହିତ୍ୟର ଅନୁସରଣରେ କେତେକ ବିଦେଶୀ ଏବଂ ଭାରତୀୟ ଐତିହାସିକ ବୀର ପୁରୁଷ ମାନଙ୍କର ଜୀବନଚରିତ ଲେଖିଥିଲେ । ପ୍ରତ୍ୟେକ ଜୀବନ ପ୍ରଣୟନ କାଳରେ ସେହି ଜୀବନଚରିତ ତତ୍କାଳୀନ ନବଜାଗରଣ ପ୍ରତି କି ଆଭିମୁଖ୍ୟ ଓ ପ୍ରେରଣା ପ୍ରଦାନ କରିବ ଏ ଦିଗରେ ଲେଖକ ଅତ୍ୟନ୍ତ ସଚେତନ ଏବଂ ଯତ୍ନଶୀଳ ଥିଲେ ବୋଲି ଜଣାଯାଏ । ଜଣେ ବିଦେଶୀ ପଣ୍ଡିତ ଭାରତୀୟ ମାନଙ୍କ ପାଇଁ ସେ କାଳରେ ଯାହା କରିଯାଇଛନ୍ତି, ତାହାର ତୁଳନା ନାହିଁ । ଭାରତୀୟ ସାହିତ୍ୟ କଳା ଓ କୃଷ୍ଟିର ବିକାଶ ପାଇଁ ସେହି ମହାତ୍ମାଙ୍କର ସାଧନା ଅତ୍ୟନ୍ତ ଅଭିନନ୍ଦନୀୟ । ତେଣୁ ପଣ୍ଡିତ ରଥ ଲେଖିଲେ—

ଯେଉଁ ମହାତ୍ମାମାନେ ସ୍ୱୀୟ ବହୁତୋମୁଖୀ ପ୍ରତିଭା ବଳରେ ପୃଥିବୀର ମୁଖ ଉଜ୍ଜ୍ୱଳ କରି ଅମରତ୍ୱ ଲାଭ କରିଅଛନ୍ତି ଏବଂ ଯେଉଁ ଅଗାଧ ବିଦ୍ୟା ପାଶ୍ଚାତ୍ୟ ମନୀଷୀମାନେ ଭାରତର ବିପୁଳ ଶାସ୍ତ୍ର ସମୁଦ୍ର ସମ୍ୟକ ଅଧ୍ୟୟନ ଓ ଆଲୋଚନା ପୂର୍ବକ ଅଭିନବ ବେଶରେ ସାଧାରଣଙ୍କ ସମ୍ମୁଖରେ ଉପସ୍ଥିତ କରି ଅଛନ୍ତି, ତନ୍ମଧ୍ୟରେ ସାର୍ ଉଇଲିୟମ୍ ଜୋନ୍‌ସଙ୍କର ନାମ ଉଲ୍ଲେଖ-ଯୋଗ୍ୟ । ତାହାଙ୍କ ଦ୍ୱାରା ପ୍ରତିଷ୍ଠିତ ରୟାଲ ଆସିୟାଟିକ ସୋସାଇଟି ନାମକ ରାଜକୀୟ ମହାସଭା ପ୍ରାଚ୍ୟ ଜ୍ଞାନ ବିଜ୍ଞାନର କିପରି ଉନ୍ନତି ଏବଂ ପୁଷ୍ଟି ସାଧନ କରୁଅଛି, ତାହା ଶିକ୍ଷିତ

ବ୍ୟକ୍ତି ମାତ୍ରକେ ଅଳ୍ପାଧିକ ପରିମାଣରେ ଅବଗତ ଅଛନ୍ତି । ଏହି ମହାତ୍ମା ନିଜର ଜୀବନକାଳ ମଧ୍ୟରେ ପୃଥିବୀର ଭାଷା ରାଜ୍ୟରେ କି ପ୍ରକାର ଯୁଗାନ୍ତର ଉପନୀତ କରି ଅଛନ୍ତି, ତାହା ତାହାଙ୍କ କର୍ମମୟ ଜୀବନର ଆଲୋଚନାରୁ ପ୍ରତିପନ୍ନ ହେବ ।

( ପ୍ରବନ୍ଧପାଠ-ମୃତ୍ୟୁଞ୍ଜୟ ରଥ-ପୃ ୫୩ )

ସେହିପରି ଈଶ୍ବରଚନ୍ଦ୍ର ବିଦ୍ୟାସାଗରଙ୍କୁ ସେ ବଙ୍ଗଦେଶର ଅନ୍ୟତମ ଜ୍ୟୋତି ଭାବରେ ଉଲ୍ଲେଖ କରିଥିଲେ । ସେ ଆବିର୍ଭୂତ ହୋଇ ବଙ୍ଗ ଭୂମିକୁ ଆଲୋକ ପ୍ରାପ୍ତ କରିଥିଲେ ଓ ନିଜର ସାଧନା ଦ୍ୱାରା ତତ୍କାଳୀନ ସାମାଜିକ ଜୀବନରେ ଅଭୂତପୂର୍ବ ବିପ୍ଳବ ଆନୟନ କରିଥିଲେ । ପଣ୍ଡିତ ରଥ ପରବର୍ତ୍ତୀ କାଳରେ ବହୁ ପ୍ରସିଦ୍ଧ ଜୀବନ ଚରିତର ଲେଖକ ଭାବରେ ସୁପରିଚିତ । ତାହା ପ୍ରସଙ୍ଗ କ୍ରମେ ଆଲୋଚନା କରାଯିବ ।

୧୮୯୭ ସାଲରେ ଓଡ଼ିଆ ପତ୍ରିକା ରାଜ୍ୟରେ ଓ ଆଧୁନିକ ଓଡ଼ିଆ ସାହିତ୍ୟର ବାର୍ତ୍ତାବହ ଭାବରେ ବିଖ୍ୟାତ ସଂପାଦକ ବିଶ୍ୱନାଥ କର ଉତ୍କଳ ସାହିତ୍ୟ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକାରେ ପ୍ରଥମ ବର୍ଷର ସୂଚୀ ପତ୍ରରେ ଆଖି ପକାଇ ଗଲେ ଅନୁଭବ କରାଯାଇପାରିବ କିପରି ଜୀବନଚରିତର ଦାରିଦ୍ର୍ୟ ଓଡ଼ିଆସାହିତ୍ୟରେ ଅନୁଭୂତ ହେଉଥିଲା । ଅବଶ୍ୟ ଏହି ବିଖ୍ୟାତ ପତ୍ରିକାର ପ୍ରଥମ ଭାଗ ପ୍ରଥମ ସଂଖ୍ୟାରେ ସୁଲେଖକ ଶ୍ୟାମସୁନ୍ଦର ନନ୍ଦ ବୈଜ୍ଞାନିକ ଫ୍ରାଙ୍କଲିନ୍‌ଙ୍କ ଜୀବନୀ ଆଲୋଚନା କରିଥିଲେ । ସେତେବେଳେ ଓଡ଼ିଶା ପରାଧୀନ ଏବଂ ଓଡ଼ିଆଜାତି ଆତ୍ମଗ୍ଲାନିରେ ବିଚଳିତ ହେଉଥିଲା । ଭାରତରେ କୌଣସି ପ୍ରକାର ଚେତନା ବୋଧ ଜାଗ୍ରତ ହୋଇ ନଥିଲା । ଶିକ୍ଷା, ସାହିତ୍ୟ, ସଂସ୍କୃତିର ବିକାଶ କ୍ଷେତ୍ରରେ ଓଡ଼ିଶା ବହୁ ପଛରେ ପଡ଼ିଥିଲା । ଏହି ସମୟରେ ଜଣେ ପାଶ୍ଚାତ୍ୟ ମନୀଷୀ ଫ୍ରାଙ୍କଲିନ୍‌ଙ୍କ ଜୀବନୀ ନିଶ୍ଚୟ ଥିଲା ପ୍ରେରଣାଗର୍ଭିତ । ସାମାନ୍ୟ ବର୍ତ୍ତିକା ବ୍ୟବସାୟୀ ଗୃହରେ ଫ୍ରାଙ୍କଲିନ୍ ବୋଷ୍ଟନରେ ଜନ୍ମଗ୍ରହଣ କରି ଥିଲେ ହେଁ ନିଜର ପ୍ରତିଭା ଓ ଅଧ୍ୟବସାୟ ବଳରେ ସେ ଅମର ହୋଇଥିଲେ । ସେ ନିଜ ଜୀବନକୁ ତୁଚ୍ଛ କରି ଜଣେ ଜଳମଗ୍ନ ବାଳକକୁ ରକ୍ଷା କରିଥିଲେ । ମଦ୍ୟ ମାଂସ ଆଦୌ ସ୍ପର୍ଶ କରୁ ନଥିଲେ । ସରଳ ନିରାଡ଼ମ୍ବର ଜୀବନ ଥିଲା ତାଙ୍କର ଆଦର୍ଶ । ତାଙ୍କ ମତରେ ମନୁଷ୍ୟର ଉନ୍ନତି ପାଇଁ ମିତାଚାର, ମିତବ୍ୟୟ, ମିତଭାଷଣ, ଶୃଙ୍ଖଳା , ପ୍ରତିଜ୍ଞା, ପରିଶ୍ରମ, ନ୍ୟାୟପରତା, ସଂଯମ, ପରିପାଟୀ, ଚିତ୍ତପ୍ରସାଦ, ବିନୟ, ପ୍ରଭୃତି ଅତ୍ୟନ୍ତ ଆବଶ୍ୟକ । ମହାପୁରୁଷଙ୍କ ଜୀବନୀ ଆଲୋଚନାର ଉପାଦେୟତା ସମ୍ପର୍କରେ ସୂଚନା ଦେଇ ପ୍ରବନ୍ଧ ଲେଖକ ଲେଖିଥିଲେ—ଦେଶର ଖ୍ୟାତି, ମହତ୍ତ୍ୱ ଓ ଉନ୍ନତି ବହୁ ପରିମାଣରେ ପ୍ରତିଭାଶାଳୀ, ଚରିତ୍ରବାନ ଲୋକମାନଙ୍କ ଉପରେ ନିର୍ଭର କରେ । ଅଧିକାଂଶ କ୍ଷଣଜନ୍ମା ମହାପୁରୁଷମାନେ ଅତି ଦୀନହୀନ ଅବସ୍ଥାରେ ଜନ୍ମଗ୍ରହଣ କରି ସ୍ୱାବଲମ୍ବନ ଓ ଅଧ୍ୟବସାୟ ଦ୍ୱାରା ସଂସାରର ଉଚ୍ଚତମ ସୋପାନରେ ଆରୋହଣ କରି ଯଶଃ ସୌରଭ ବିସ୍ତାରଦ୍ୱାରା ଦେଶକୁ ପବିତ୍ର କରନ୍ତି । ଆଧୁନିକ ଭାରତରେ ମଧ୍ୟ ଏହାର ଉଦାହରଣ ନିତାନ୍ତ ବିରଳ ନୁହେଁ । ସ୍ୱର୍ଗୀୟ ବିଦ୍ୟାସାଗର, ଭୂଦେବ ପ୍ରଭୃତି ଏହାର ଉତ୍କୃଷ୍ଟ ପ୍ରମାଣ । ମହାପୁରୁଷମାନେ ମୁଖ୍ୟ ଓ ଗୌଣଭାବରେ ପୃଥିବୀରେ ଉପକାର କରନ୍ତି । ସେମାନେ କି ଉପାୟରେ ଆପଣାକୁ ଓ

ଦେଶକୁ ଗୌରବାନ୍ୱିତ କରିଥିଲେ, ତାହା ଅନୁସନ୍ଧାନ କରି ଓ ସେମାନଙ୍କ ପଦାଙ୍କାନୁସରଣ କରି ଭବିଷ୍ୟତ ବଂଶ ଲୋକହିତ ବ୍ରତରେ ରତ ହୁଅନ୍ତୁ ।',

( ଉ. ସା. ପ୍ରଥମ ଭାଗ— ପ୍ରଥମ ସଂଖ୍ୟା—୧୮୯୭ )

"ଉତ୍କଳ ସାହିତ୍ୟର ସଂପାଦକ ବିଶ୍ୱନାଥ କର ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ପ୍ରାଚୀନ ହିନ୍ଦୁ ପୁରାଣରେ ଅଲୌକିକତା, ଅମାନୁଷିକ ପରିକଳ୍ପନା, ବ୍ରାହ୍ମ ମାନଙ୍କର ସଂସ୍କାରଗତ ପ୍ରାଣକୁ ଅତ୍ୟନ୍ତ ଆଘାତ କରୁଥିଲା । ତେଣୁ ସେମାନେ ପ୍ରକୃତ ବ୍ୟକ୍ତିପୂଜାର ଅଭାବ ଉପଲବ୍ଧି କରିଥିଲେ । ଭକ୍ତକୁ ଭକ୍ତ ଭାବରେ ଅଥବା ମହାପୁରୁଷଙ୍କୁ ମହାପୁରୁଷ ଭାବରେ ପୂଜା କରିବା ରୀତି ଏ ଦେଶରେ ଅଜ୍ଞାତ ବୋଲି ସେ କ୍ଷୋଭ ପ୍ରକାଶ କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଧର୍ମର ପ୍ରତିଷ୍ଠାତା କେଶବଚନ୍ଦ୍ରଙ୍କ ଜୀବନୀ ଆଲୋଚନା କରିଥିଲେ । (ଉ.ସା. ୧ମ ଖଣ୍ଡ—୨ୟ ସଂଖ୍ୟା—୧୮୯୭) କୌଣସି ସାଧୁ ମହାତ୍ମା ସାଧାରଣ ମାନବ ମଣ୍ଡଳୀର ସୀମା ଲଙ୍ଘନ କରି ଊର୍ଦ୍ଧ୍ୱକୁ ଉଠିଲା ମାତ୍ରକେ ଭାରତବାସୀ ଅତି ସହଜରେ ତାଙ୍କୁ ଈଶ୍ୱରଙ୍କ ଆସନରେ ବସାଇ ପୂଜାକରିବାକୁ ପ୍ରବୃତ୍ତ ହେଉଥିଲେ । ଏହି କାରଣରୁ ଏ ଦେଶରେ ଅସଂଖ୍ୟ ଅବତାରର କଳ୍ପନା କରାଯାଇଛି । ଭକ୍ତ ଈଶ୍ୱରଙ୍କ ସ୍ଥାନ ଅଧିକାର କଲେ ଈଶ୍ୱର ଲାଭ ଏକ ପ୍ରକାର ଅସମ୍ଭବ ହୋଇ ଉଠେ ଏବଂ ଜୀବନ ମଧ୍ୟ ଚିରଦିନ ପ୍ରହେଳିକାମୟ ହୋଇ ଉଠେ । ଏହି ଘୋର ଅବତାରବାଦୀ ଦେଶରେ ବ୍ରାହ୍ମ ସମାଜ ଯଥାର୍ଥ ଭକ୍ତ ପୂଜା, ମହାପୁରୁଷ ପୂଜା ପ୍ରତିଷ୍ଠିତ କରିବାକୁ ପ୍ରୟାସୀ ।" ଓଡ଼ିଆ ଜୀବନଚରିତର ପ୍ରକାଶ ଓ ପ୍ରଗତିରେ ବିଶ୍ୱନାଥ କରଙ୍କ ଏହି ଉକ୍ତି ଅତ୍ୟନ୍ତ ସ୍ମରଣୀୟ । କାରଣ ଉତ୍କଳ ସାହିତ୍ୟର ଦୀର୍ଘ କାଳର ଇତିହାସରେ ସଂପାଦକ ବିଶ୍ୱନାଥ ବହୁ ଜୀବନଚରିତ ପ୍ରକାଶ କରିଥିଲେ ଏବଂ ଚରିତ ଲେଖକମାନଙ୍କୁ ଉତ୍ସାହିତ କରିଥିଲେ । ପରବର୍ତ୍ତୀ କାଳରେ ବ୍ରାହ୍ମଧର୍ମୀ ଲକ୍ଷ୍ମୀନାରାୟଣ ରଚନାତ୍ମକ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ପ୍ରତିଷ୍ଠା କରି ବହୁ ମୂଲ୍ୟବାନ ଜୀବନଚରିତ ପ୍ରକାଶ କରିଥିଲେ । ବାରାନ୍ତରେ ତାହା ଆଲୋଚନାରେ ସ୍ଥାନ ପାଇବ । ଉତ୍କଳ ସାହିତ୍ୟରେ ପୁସ୍ତକ ଆଲୋଚନା ପର୍ଯ୍ୟାୟରେ ଅନଙ୍ଗମୋହନ ଚକ୍ରବର୍ତ୍ତୀଙ୍କ ଲିଖିତ "ସାଥୀ" ପୁସ୍ତକର ପରିଚୟ ଦିଆଯାଇଛି । ସେଠାରେ ସଂପାଦକ ମତ ପ୍ରକାଶ କରିଛନ୍ତି ଯେ ସାଧୁ ଜୀବନ ଏ ସଂସାରରେ ଅତି ଉତ୍କୃଷ୍ଟ ସହାୟ । ବିପଦରେ ପରୀକ୍ଷାରେ ପ୍ରଲୋଭନରେ ସାଧୁଜୀବନର ବିଶେଷ ଘଟଣା ସ୍ମରଣ କରି ମନୁଷ୍ୟ ହୃଦୟରେ ଆଶା ଓ ଉତ୍ସାହ ପ୍ରାପ୍ତ ହୁଏ । ସାଧୁଜୀବନ ପାଠ କରୁ କରୁ ମନୁଷ୍ୟ ଜୀବନ ସତ୍‌ପଥ ଆଡ଼କୁ ଆକୃଷ୍ଟ ହୁଏ । ସାଧୁଚରିତ ପାଠ ଏକ ପ୍ରକାର ସାଧୁସଙ୍ଗ । ଓଡ଼ିଆ ଭାଷାରେ ପ୍ରାଚୀନ ପୁରାଣାଦି ଛଡ଼ା ଏ ପ୍ରକାର ପୁସ୍ତକର ଏକାନ୍ତ ଅଭାବ (ଉ. ସା. ୧ମଖଣ୍ଡ-୬ଷ୍ଠସଂଖ୍ୟା) ଏଥିରୁ ଜଣାଯାଉଛି ଯେ "ସାଥୀ" ବୋଧହୁଏ ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରକାଶିତ ଚରିତ ଗ୍ରନ୍ଥରୁ ଅନ୍ୟତମ । ସେହିପରି ଉତ୍କଳ ସାହିତ୍ୟର ପ୍ରଥମ ବର୍ଷର ଏକାଦଶ ସଂଖ୍ୟାରେ ଜଗମୋହନ ସିଂହ ରାଣୀ କର୍ମଦେବୀଙ୍କର ଜୀବନଚରିତ ପ୍ରକାଶ କରିଥିଲେ । କର୍ମଦେବୀ ଥିଲେ ଜଣେ ସୁସାହସିକା ରାଜପୁତ ମହିଳା । ତତ୍‌କାଳୀନ ନାରୀ ସମାଜର ପ୍ରଗତିହୀନତାର ଯୁଗରେ ଲେଖକ କର୍ମଦେବୀଙ୍କ ଜୀବନଚରିତ ଆଲୋଚନା କରି ଭାରତୀୟ ନାରୀକୁଳର ଗୌରବଗାନ କରିଥିଲେ । ଉତ୍କଳ ସାହିତ୍ୟରେ ଅନେକ ଗୁଡ଼ିଏ ଜୀବନଚରିତ ଆତ୍ମପ୍ରକାଶ କରିଥିଲେ ଯେଉଁ

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ ଅଭିମନ୍ୟୁ ସାମନ୍ତ ସିଂହାର ଏବଂ ବ୍ରହ୍ମଙ୍କ ମଧୁସୂଦନ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ । ଅଭିମନ୍ୟୁ ସାମନ୍ତ ସିଂହାର ପ୍ରବନ୍ଧ ଉତ୍କଳ ସାହିତ୍ୟ ୧୮ଶ ଭାଗ ପ୍ରଥମ ସଂଖ୍ୟା ୧୩୨୧ ରୁ ଆରମ୍ଭ ହୋଇ ଆଠଟି ସଂଖ୍ୟାରେ ସମାପ୍ତ ହୋଇଥିଲା । ସେହିପରି ବ୍ରହ୍ମଙ୍କ ମଧୁସୂଦନ ପ୍ରବନ୍ଧ ୧୩୨୦ ସାଲ ୧୭ଶ ଭାଗ ପ୍ରଥମ ସଂଖ୍ୟାରେ ଆରମ୍ଭ ହୋଇ ପରବର୍ତ୍ତୀ କେତୋଟି ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ରଥେ ଏହି ଦୁଇଜଣ କବିଙ୍କର ଜୀବନଚରିତର ବିସ୍ତୃତ ବିବରଣୀ ଦେବା ସଙ୍ଗେ ସଙ୍ଗେ ତାଙ୍କ ରଚିତ ସାହିତ୍ୟର ମଧ୍ୟ ଏକ ସମୀକ୍ଷା ପ୍ରଦାନ କରି ଅଛନ୍ତି । ପ୍ରାବନ୍ଧିକ ମୃତ୍ୟୁଞ୍ଜୟ କେବଳ ସନ ତାରିଖ ଦେଇ ଆଲୋଚ୍ୟ ବ୍ୟକ୍ତିଙ୍କର ଜୀବନକାଳର ନୀରସ ବିବରଣୀ ପ୍ରଦାନ କରି ନାହାନ୍ତି, ସେମାନଙ୍କ ସମ୍ପର୍କରେ ପ୍ରଚଳିତ ନାନା ହୃଦୟସ୍ପର୍ଶୀ ଘଟଣା ଉଲ୍ଲେଖ କରି ପ୍ରସଙ୍ଗଟିକୁ ଆକର୍ଷଣୀୟ ଓ ମନୋଜ୍ଞ କରିପାରିଛନ୍ତି । ଏତଦ୍ ବ୍ୟତୀତ ପଣ୍ଡିତ ମୃତ୍ୟୁଞ୍ଜୟ ଉତ୍କଳ ସାହିତ୍ୟ ୨୨ଶ ଭାଗ ୧୩୨୬, ୧୨ଶ ସଂଖ୍ୟାରେ ଦୀନକୃଷ୍ଣ ଦାସ ପ୍ରବନ୍ଧ ପ୍ରକାଶ କରିଥିଲେ । ଏଥିରେ ତାଙ୍କର ଜୀବନ କାହାଣୀ ବର୍ଣ୍ଣିତ ହେବା ସଙ୍ଗେ ସଙ୍ଗେ ଲିଖିତ ସାହିତ୍ୟ ସମ୍ପର୍କରେ ମଧ୍ୟ କିଞ୍ଚିତ ଆଲୋଚନା ହୋଇଥିଲା । ୧୯୨୪ ସାଲରେ କବି ଗଙ୍ଗାଧର ମହାପ୍ରୟାଣ କରିଥିଲେ । ତେଣୁ ତାଙ୍କର ସ୍ମୃତି ତର୍ପଣ ଉଦ୍ଦେଶ୍ୟରେ ପଣ୍ଡିତ କୁଳମଣିଦାସ ଉତ୍କଳ ସାହିତ୍ୟ ୨୮ଶ ଭାଗ ୧୩୩୧ ଦ୍ୱିତୀୟ ତୃତୀୟ ସଂଖ୍ୟାରେ ସ୍ୱର୍ଗତ କବି ଗଙ୍ଗାଧରଙ୍କ ଜୀବନଚରିତ ପରିବେଷଣ କରିଥିଲେ । ସେହି ବର୍ଷ ବିଭିନ୍ନ ସଂଖ୍ୟାରେ କୃଷ୍ଣପ୍ରସାଦ ଚୌଧୁରୀଙ୍କ ଲିଖିତ ସ୍ୱଦେଶ ପ୍ରେମିକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, କୁଳମଣି ଦାସଙ୍କ ସ୍ୱର୍ଗତ ନୀଳମଣି ବିଦ୍ୟାରତ୍ନ ଓ ସ୍ୱର୍ଗତ ମୃତ୍ୟୁଞ୍ଜୟ, ଶରତଚନ୍ଦ୍ର ମୁଖୋପାଧ୍ୟାୟଙ୍କ ଲିଖିତ ସ୍ୱର୍ଗୀୟ ଆନାତୋଲ ଫ୍ରାନ୍ସ ଏବଂ ୧୩୩୨ ସାଲ ୨୯ଶ ଭାଗ ୫ମ ସଂଖ୍ୟାରେ ସମ୍ପାଦକ ବିଶ୍ୱନାଥଙ୍କ ଲିଖିତ ସାର୍ ସୁରେନ୍ଦ୍ରନାଥ ପ୍ରଭୃତି ଜୀବନୀପ୍ରବନ୍ଧ ଆଲୋଚନା କରାଯାଇପାରେ । ଏଥିରୁ ଜଣାଯାଉଛି ଯେ କେବଳ ସ୍ମୃତି ତର୍ପଣ ଉଦ୍ଦେଶ୍ୟରେ ଅନେକ ଲେଖକ ଜୀବନଚରିତର ଆଲୋଚନା କରିଛନ୍ତି । ଓଡ଼ିଆ ସାହିତ୍ୟରେ ଜୀବନଚରିତର ଆଲୋଚନା କଲାବେଳେ ପଲ୍ଲୀକବି ନନ୍ଦକିଶୋର ବଳଙ୍କୁ ଭୁଲିହେବ ନାହିଁ । ସେ ତତ୍କାଳୀନ ପତ୍ର ପତ୍ରିକାରେ ଅଳ୍ପ କେତେଗୋଟି ଜୀବନଚରିତ ଲେଖିଥିଲେ ହେଁ ତହିଁରୁ ତତ୍କାଳୀନ ସମାଜ ଜୀବନ ସମ୍ପର୍କରେ ପ୍ରଭୂତ ସୂଚନା ମିଳିଥାଏ । ପାଠକ ତୁଳନାତ୍ମକ ବିଚାରରେ ଉତ୍କଳର ବୀରପୁରୁଷ ମାନଙ୍କର ପରିଚୟ ଲାଭ କରି ଗଭୀର ସନ୍ତୋଷ ଲାଭ କରିଥାଏ । ଉଦାହରଣ ସ୍ୱରୂପ ଏଠାରେ ଉତ୍କଳ ସାହିତ୍ୟରେ ପ୍ରକାଶିତ (୧୭ଶ ଭାଗ-୧୦ମ ସଂଖ୍ୟା) ନନ୍ଦକିଶୋରଙ୍କ ଲିଖିତ ରାୟ ମଧୁସୂଦନ ରାଓ ବାହାଦୁର ପ୍ରବନ୍ଧ ଆଲୋଚନା କରାଯାଇପାରେ । ମଧୁସୂଦନ ଏହି ଯୁଗର ଜଣେ ସାହିତ୍ୟିକ ବୀର । ତାଙ୍କର ସାଧନାପୂତ ଜୀବନର କାହାଣୀ ଥିଲା ଅତ୍ୟନ୍ତ ପ୍ରେରଣାଦାୟକ । ନନ୍ଦକିଶୋର ସମକାଳୀନ ଭାରତୀୟ ସମାଜ, ଇଂରେଜୀ ଶିକ୍ଷାର ପ୍ରତିକ୍ରିୟା ଏବଂ ତତ୍ ସମ୍ପର୍କରେ ଆସି ଯେଉଁ ନୂତନ ନେତୃତ୍ୱ ମୁଣ୍ଡ ଟେକି ଉଠିଥିଲା, ସେହି ସବୁ ଐତିହାସିକ ତଥ୍ୟ ଉଦ୍‌ଘାଟନ କରି ଲେଖିଛନ୍ତି—ଇଂରେଜୀ ଶାସନ ଓ ଆଇନ ଓ ପ୍ରତୀଚ୍ୟ ସାହିତ୍ୟ, ବିଜ୍ଞାନ ଓ ସଭ୍ୟତା ରୂପ ମନ୍ଦରଗିରି ସାହାଯ୍ୟରେ ରତ୍ନପ୍ରସୂ ଭାରତ ସମୁଦ୍ର ମନ୍ଥନରେ ପ୍ରତ୍ୟେକ ପ୍ରଦେଶରେ କେତେଗୁଡ଼ିଏ ରତ୍ନର ଆବିର୍ଭାବ ହୋଇଲା । ବଙ୍ଗଦେଶରେ ରାଜା ରାମମୋହନ ରାୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, କେଶବ ଚନ୍ଦ୍ର

ସେନ, ବଙ୍କିମ ଚନ୍ଦ୍ର ଚଟ୍ଟୋପାଧ୍ୟାୟ, ମାଇକେଲ ମଧୁସୂଦନ ଦତ୍ତ, ରେଭରେଣ୍ଡ କେ. ଏମ. ବାନାର୍ଜି, ବୋମ୍ବାଇ ପ୍ରଦେଶରେ ଗୋବନ୍ଦ ରାନାଡେ, ବାଲ ଗଙ୍ଗାଧର ତିଲକ, ଗୋପାଳକୃଷ୍ଣ ଗୋଖେଲ, ଚନ୍ଦ୍ରବର୍କର ପ୍ରଭୃତି, ପଞ୍ଜାବ ପ୍ରଦେଶରେ ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଏହି ପ୍ରାଚ୍ୟ ପ୍ରତୀଚ୍ୟ ସମ୍ମିଳନର ଫଳ ।

"ବିଚ୍ଛିନ୍ନ ବିଭିନ୍ନ, ଖଣ୍ଡିକୃତ ଖର୍ବୀକୃତ ଉତ୍କଳ । ଜନସଂଖ୍ୟା ଉର୍ବରତା ଅନୁଯାୟୀ ଉକ୍ତ ସିନ୍ଧୁ ମନ୍ଥନର ଫଳରୁ ଏଣେ ବେଳେକେ ବଞ୍ଚିତ ହୋଇନାହିଁ । ଗଡ଼ଜାତର ନିବିଡ଼ ଗିରିଗୁହାବାସୀ ଇଂରାଜୀ—ଜ୍ଞାନ ରହିତ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ବୋଧହୁଏ ଏ ମିଳନ ପ୍ରସୂତ ନୁହନ୍ତି । ତାହାଙ୍କୁ ଛାଡ଼ିଦେଲେ ମିଷ୍ଟର ଏମ୍. ଏସ୍. ଦାସ, ସି. ଆଇ. ଇ. ରାୟ ନନ୍ଦକିଶୋର ଦାସ ବାହାଦୁର, ରାୟ ରାଧାନାଥ ରାୟ ବାହାଦୁର, ରାୟ ମଧୁସୂଦନ ରାଓ ବାହାଦୁର, କବି ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ ଓ ପ୍ୟାରୀମୋହନ ଆଚାର୍ଯ୍ୟ ଏହି ମଣିକାଞ୍ଚନ ସଂଯୋଗର ଫଳ । ଏହି ଦଳଟି ଆବିର୍ଭୂତ ହୋଇ ଉତ୍କଳର ଭିନ୍ନ ଭିନ୍ନ କେତେକ କେତେକ ବିଭାଗରେ ଯାହା କଲେ ତାହା ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ମହାନ୍ ନ ହୋଇପାରେ, କିନ୍ତୁ ଓଡ଼ିଶାରେ ସଂସ୍କାର ଯୁଗ ପ୍ରବର୍ତ୍ତକ, ଦେଶର ଏହି କୃତୀ ପୁତ୍ରମାନଙ୍କ ସ୍ଥାନର ପୂରଣ ନିକଟ ଭବିଷ୍ୟତରେ ହେବାର ସମ୍ଭାବନା ନାହିଁ । × × × ଏହି ଯୁଗର ଏକତମ ବିଶିଷ୍ଟ ପୁରୁଷ ରାୟ ମଧୁସୂଦନ ରାଓ ବାହାଦୁରଙ୍କ ସମ୍ବନ୍ଧରେ ଏ ପ୍ରବନ୍ଧରେ କିଛି ଆଲୋଚନା କରିବି ।"

କେବଳ ସେତିକି ନୁହେଁ, ନନ୍ଦକିଶୋର ମଧୁସୂଦନଙ୍କ ବ୍ୟକ୍ତିତ୍ୱ ନିର୍ଦ୍ଧାରଣ କରି ଆଲୋଚ୍ୟ ପ୍ରବନ୍ଧରେ କହିଅଛନ୍ତି ଯେ ସାଧନା ଓ ବ୍ୟକ୍ତିତ୍ୱର ବିକାଶ ବଳରେ ମଧୁସୂଦନ ନିଜର ଜୀବିତକାଳରେ ଋଷି, ଆଦର୍ଶ ପୁରୁଷ, ଭକ୍ତକବି ପ୍ରଭୃତି ଆଖ୍ୟାପ୍ରାପ୍ତ ହୋଇଥିଲେ । ତାଙ୍କର ପ୍ରଧାନ କର୍ମକ୍ଷେତ୍ର ଥିଲା ଧର୍ମ ସାଧନ ଓ ଧର୍ମ ପ୍ରଚାର, ଜ୍ଞାନାର୍ଜନ ଓ ସାହିତ୍ୟ ସେବା । ତାଙ୍କ ପରି ଜଣେ କର୍ମବୀର ଓ ନିଷ୍ଠାପର ସାଧକ କ୍ୱଚିତ ଦେଖିବାକୁ ମିଳନ୍ତି । ଲେଖକଙ୍କ ଭାଷାରେ "ବୁଦ୍ଧଦେବଙ୍କ କର୍ମଯୋଗ" ଶ୍ରୀଚୈତନ୍ୟଙ୍କ ଭକ୍ତିଯୋଗ, ଯୀଶୁଙ୍କ ସରଳ ପ୍ରେମଯୋଗ, ମହମ୍ମଦଙ୍କ ନିର୍ମଳ ଏକେଶ୍ୱରବାଦରେ ସୁନ୍ଦର ସମାବେଶ ଆମ୍ଭମାନଙ୍କ ଚକ୍ଷୁ ସମ୍ମୁଖରେ ହୋଇଅଛି ।

ଉତ୍କଳ ସାହିତ୍ୟର ସମ୍ପାଦକ ସାହିତ୍ୟରେ ଜୀବନ ଚରିତର ଉଚିତ ମୂଲ୍ୟ ଦାବି ସ୍ୱୀକାର କରି ଜୀବନଚରିତ ଲେଖକମାନଙ୍କୁ ଉତ୍ସାହିତ କରିଥିଲେ ହେଁ ବିଂଶ ଶତାବ୍ଦୀର ପ୍ରଥମ ଦୁଇଟି ଦଶକ ମଧ୍ୟରେ ଖୁବ୍ ଅଳ୍ପ ଲେଖକ ଏହି ବିଭାଗରେ ଲେଖନୀ ଚାଳନା କରିବା ପାଇଁ ଅଗ୍ରସର ହୋଇଥିଲେ । ଉଦାହରଣ ସ୍ୱରୂପ "ଉତ୍କଳ ସାହିତ୍ୟ"ର ୫ମ ଭାଗ ୧୩୦୮-୧୩୦୯ ସାଲର ସଂଖ୍ୟାଗୁଡ଼ିକ ଆଲୋଚନା କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ପୂର୍ବେ ଏକ ବର୍ଷ ମଧ୍ୟରେ ଉତ୍କଳ ସାହିତ୍ୟ ଗୋଟିଏ ହେଲେ ଜୀବନଚରିତ ପ୍ରକାଶ କରିବାକୁ ସକ୍ଷମ ହୋଇପାରି ନାହାନ୍ତି । ସେହିପରି ୨୨ଶ ଭାଗ ୧୩୨୫-୧୩୨୬ ସାଲର ଉତ୍କଳ ସାହିତ୍ୟରେ କେତେଗୋଟି ସଂଖ୍ୟାରେ ଧାରାବାହିକ ଭାବରେ ସେନାପତିଙ୍କ ଆତ୍ମଚରିତ ପ୍ରକାଶିତ

ହୋଇଥିଲେ ହେଁ ଜୀବନଚରିତ ଦୃଷ୍ଟିରୁ କେବଳ ଦୀନକୃଷ୍ଣଙ୍କ ସମ୍ପର୍କରେ ଗୋଟିଏ ପ୍ରବନ୍ଧ ସ୍ଥାନ ଲାଭ କରିଅଛି । ୨୧ଶ ଭାଗ ଉତ୍କଳ ସାହିତ୍ୟରେ ମାତ୍ର ତିନୋଟି ଜୀବନଚରିତ ଦେଖିବାକୁ ମିଳେ । ସେଗୁଡ଼ିକ ହେଲା ତାରଣୀଚରଣ ରଥଙ୍କ କବି ଭୂପତି ପଣ୍ଡିତ, ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ମହାତ୍ମାଗାନ୍ଧୀ, ଶଶୀଭୂଷଣ ରାୟଙ୍କ ସ୍ୱାମୀ ବିବେକାନନ୍ଦ । ୨୩ଶ ଭାଗ ଉତ୍କଳ ସାହିତ୍ୟର ଚାରିଗୋଟି ଜୀବନଚରିତର ସନ୍ଧାନ ମିଳେ । ତାହା ହେଲା ଆଚାର୍ଯ୍ୟ ଶିବନାଥ ଶାସ୍ତ୍ରୀ, ଏମାର୍ଶନ ପୟଗମ୍ବର ମହମ୍ମଦ, ସିଦ୍ଧ ସାଧକ ଶ୍ରୀ ରାମକୃଷ୍ଣ ଦେବ । ସୁଖର କଥା ଯେ, ଏହି ବର୍ଷ ଦଶଗୋଟି ସଂଖ୍ୟାରେ ଫକୀରମୋହନଙ୍କ ଆତ୍ମଚରିତ ଧାରାବାହିକ ଭାବରେ ପ୍ରକାଶିତ ହୋଇଅଛି । ପୂର୍ବୋକ୍ତ ଚରିତ ପ୍ରବନ୍ଧଗୁଡ଼ିକର ଲେଖକ ଥିଲେ ବିଶ୍ୱନାଥ କର, ଶଶୀଭୂଷଣ ରାୟ, ଶେଖ୍ ଗୋଲାମ ଗାଉସ୍ ଓ ଅଗଣି ଦାଶ ।

ସେ କାଳରେ 'ଉତ୍କଳ ସାହିତ୍ୟ' ପରି ବ୍ରଜସୁନ୍ଦର ଦାସଙ୍କ ସମ୍ପାଦିତ 'ମୁକୁର' ସାହିତ୍ୟ ମାସିକ ମଧ୍ୟ ଏକ ଉଲ୍ଲେଖଯୋଗ୍ୟ ପତ୍ରିକା ଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଗୋପବନ୍ଧୁ ଦାଶ, ଜଗବନ୍ଧୁ ସିଂହ, ପାର୍ବତୀଚରଣ ଦାଶ, କୃଷ୍ଣଚନ୍ଦ୍ର ସେନଗୁପ୍ତ ପ୍ରଭୃତି ବହୁ ଜୀବନଚରିତ ଲେଖି ମୁକୁର ପୃଷ୍ଠାରେ ପ୍ରଚାର କରିଥିଲେ । "ମୁକୁର"ର ଦ୍ୱିତୀୟ ଭାଗର ସଂଖ୍ୟାଗୁଡ଼ିକ ଆଲୋଚନା କଲେ ଏହା ସ୍ପଷ୍ଟ ହୋଇ ଉଠିବ । ପ୍ରଥମ ବର୍ଷରୁ ମୁକୁର ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ ଜୀବନୀ ଧାରାବାହିକ ଭାବରେ ପ୍ରଚାର କରୁଥିଲେ । ଦ୍ୱିତୀୟ ବର୍ଷରେ ମଧ୍ୟ ତାହା କେତେକ ସଂଖ୍ୟାରେ ଆତ୍ମପ୍ରକାଶ କରିଥିଲା । ସେହିପରି ପାର୍ବତୀଚରଣ ଦାସଙ୍କ ଲିଖିତ ଶ୍ରୀ ଶ୍ରୀ ରାୟ ରାମାନନ୍ଦ ଦ୍ୱିତୀୟ ବର୍ଷରୁ ଆରମ୍ଭ ହୋଇ ଅନେକ ମାସ ପର୍ଯ୍ୟନ୍ତ ଧାରାବାହିକ ପ୍ରକାଶ ହୋଇଥିଲା ଏବଂ ପରେ ତାହା ପୁସ୍ତକ ଆକାରରେ ଆତ୍ମପ୍ରକାଶ କରିଥିଲା । ଏହି ଦ୍ୱିତୀୟ ବର୍ଷରୁ 'ଶ୍ରୀ ଶ୍ରୀ ରାମକୃଷ୍ଣଚରିତାମୃତ' ଶୀର୍ଷକ ଲେଖକ କମାନ୍ୱୟରେ ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ ପ୍ରକାଶ କରିଥିଲେ । ସେହିପରି ମୃତ୍ୟୁଞ୍ଜୟ ରଥଙ୍କ ସାର ଉଇଲିୟମ୍ ଜୋନ୍ସ, ମୁର୍ଶିଦ କୁଲିଖାଁ, ଗୋପବନ୍ଧୁ ଦାସଙ୍କ ଲିଖିତ ଅଭିରାମ ଭଞ୍ଜ, ଜଗବନ୍ଧୁ ସିଂହଙ୍କ ଲିଖିତ କର୍ମବୀର ରମେଶଚନ୍ଦ୍ର ଦତ୍ତ, ମହାଦେବ ଗୋବିନ୍ଦ ରାନାଡେ, ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ଗୁରୁଗୋବିନ୍ଦଙ୍କ ଶେଷକଥା ପ୍ରବନ୍ଧ ପ୍ରଭୃତି ପ୍ରଣିଧାନ ଯୋଗ୍ୟ । ଏଥିରୁ ଏତିକି ସୂଚିତ ହେଉଛି ବିଂଶ ଶତାବ୍ଦୀର ପ୍ରଥମ ଭାଗରେ କଲିକତାକୁ କେନ୍ଦ୍ର କରି ଭାରତରେ ଯେଉଁ ନବଜାଗରଣ ଏବଂ ଅଭ୍ୟୁଦୟର କାଳ ଉପସ୍ଥିତ ହେଲା, ତହିଁରେ ଦୁଇଜଣ ପ୍ରଧାନ ମାନ୍ତ୍ରିକ ଥିଲେ ରାମକୃଷ୍ଣ ଓ ବିବେକାନନ୍ଦ । ତେଣୁ ସେକାଳର ଏହି ଦୁଇଜଣଙ୍କର ଜୀବନଚରିତ ଲେଖିବା ପାଇଁ ବହୁ ଲେଖକ ପ୍ରଲୁବ୍ଧ ହୋଇଛନ୍ତି । ସେହିପରି ବୈଷ୍ଣବ ସାଧକ ବୀର ଚୂଡ଼ାମଣି ରାୟରାମାନନ୍ଦଙ୍କ ଜୀବନୀ ମଧ୍ୟ ଓଡ଼ିଆ ସାହିତ୍ୟର ଜୀବନଚରିତ ମଧ୍ୟରେ ଅନ୍ୟତମ ପ୍ରାଥମିକ ଏବଂ ପ୍ରକୃଷ୍ଟ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ପ୍ରାଚୀନ ପତ୍ରିକା ପରୀକ୍ଷା କଲେ ଜଣା ପଡ଼ୁଛି ଯେ, ସାଧାରଣତଃ ମୁକୁର ପତ୍ରିକା ବର୍ଷକୁ ଗୋଟିଏ ଦୁଇଟି ଜୀବନଚରିତ ସ୍ଥାନ ଦେଉଥିଲେ । ଯେପରି ୧୮ଶ ଭାଗ ମୁକୁରରେ ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କର କବି ସୂର୍ଯ୍ୟମଣି ପଟ୍ଟନାୟକ ଏକମାତ୍ର ଜୀବନ-ଚରିତ ପ୍ରବନ୍ଧ ଥିଲା । ୧୯ଶ ଭାଗ ମୁକୁରରେ ଆଦୌ ଜୀବନଚରିତ ଦେଖିବାକୁ ମିଳେ ନାହିଁ । ୨୩ଶ ଭାଗ ମୁକୁର ରମାରଞ୍ଜନ ମହାନ୍ତିଙ୍କ ଲିଖିତ ସ୍ୱର୍ଗୀୟ ଲାଲା ଲଜପତରାୟ ପ୍ରବନ୍ଧକୁ

କେବଳ ସ୍ଥାନ ଦେଇଥିଲା । ୨୫ଶ ଭାଗ ମୁକୁରରେ ପଦ୍ମଚରଣ ଦାସଙ୍କ ଲିଖିତ ପ୍ରଭୁ ଶ୍ରୀ ବଳଦେବ ବିଦ୍ୟାଭୂଷଣ ପ୍ରବନ୍ଧ ଏହି ପ୍ରସଙ୍ଗରେ ଦ୍ରଷ୍ଟବ୍ୟ ।

ତେବେ ଆଧୁନିକ ଯୁଗର ଏହି ପ୍ରଥମାବସ୍ଥାରେ ନନ୍ଦକିଶୋର ଜଣେ ଶକ୍ତିଶାଳୀ ଜୀବନଚରିତର ଲେଖକ ଥିଲେ ବୋଲି ପୂର୍ବରୁ ସୂଚିତ ହୋଇଅଛି । ମୁକୁର ପତ୍ରିକାର ୫ମ ଭାଗ ୧ମ ସଂଖ୍ୟାରେ ସେ ଉତ୍କଳ କବି 'ଫକୀରମୋହନ' ବୋଲି ଏକ ପ୍ରଭାବଶାଳୀ ପ୍ରବନ୍ଧ ପ୍ରକାଶ କରିଥିଲେ । ଓଡ଼ିଆ ସାହିତ୍ୟରେ ଜୀବନଚରିତର ଅଭାବ, ଓଡ଼ିଆ ସମାଜରେ ଚେତନାବୋଧର ଅଭାବ ଉତ୍କଳୀୟ ଭାବଜଗତରେ ବୀରପୂଜାର ସଙ୍କୁଚିତ ମନୋଭାବ ଲକ୍ଷ୍ୟ କରି ନନ୍ଦକିଶୋର ଜୀବନଚରିତର ଆବଶ୍ୟକତା ପ୍ରତିପାଦନ ପାଇଁ ସେହି ପ୍ରବନ୍ଧ ଲେଖିଥିଲେ—

"ଇଂଲଣ୍ଡ ପ୍ରଭୃତି ଦେଶମାନଙ୍କର ଜୀବନଚରିତ ପ୍ରକାଶିତ ହୋଇ ଆଲୋଚିତ ହୁଏ । ଏପରି କି ସେମାନଙ୍କ ଜୀବନର କ୍ଷୁଦ୍ର କ୍ଷୁଦ୍ର ଘଟଣାମାନ ତାହାଙ୍କ ସାହିତ୍ୟରେ ସ୍ଥାନ ପାଇଅଛି । ଭବିଷ୍ୟତ ଲେଖକଙ୍କ ପଥ ସୁଗମ କରିବା ନିମିତ୍ତ କବି ରଚିତ ବିଷୟର ସାମୟିକ ପତ୍ରପତ୍ରିକାମାନଙ୍କରେ ଆଲୋଚନା କଲେ କୌଣସି କ୍ଷତି ନାହିଁ । ଏହି ବିଶ୍ୱାସରେ ମୁଁ ଲବ୍ଧ ପ୍ରତିଷ୍ଠିତ ବୃଦ୍ଧ କବି ଫକୀର ମୋହନଙ୍କ ବଂଶାବଳୀ ସମ୍ବଳିତ ସଂକ୍ଷିପ୍ତ ଜୀବନଚରିତ ସଂଗ୍ରହ କରିଅଛି । ପର ଲୋକଗତ ରାଧାନାଥ ରାୟ ବାହାଦୁରଙ୍କ ଅତି ସଂକ୍ଷିପ୍ତ ଜୀବନଚରିତ ତାହାଙ୍କ ଗ୍ରନ୍ଥାବଳୀରେ ପ୍ରକାଶିତ ହୋଇଅଛି । ମୋର କ୍ଷୁଦ୍ରବିବେଚନାରେ ସମସ୍ତ କବି ଓ କୃତୀ ପୁରୁଷଙ୍କର ଜୀବନଚରିତ ପ୍ରକାଶ କରିବା ଉଚିତ । ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ, ଶ୍ରୀ ମଧୁସୂଦନ ଦାସ, ରାୟ ନନ୍ଦକିଶୋର ଦାସ ବାହାଦୁର, ରାୟ ମଧୁସୂଦନ ରାଓ ପ୍ୟାରୀ ମୋହନ ଆଚାର୍ଯ୍ୟ, ଗୌରୀଶଙ୍କର ରାୟ ପ୍ରଭୃତିଙ୍କର ଜୀବନଚରିତ ପ୍ରକାଶିତ ହେବା ଉଚିତ । ଜୀବନଚରିତ ଅଭାବରେ ପ୍ରାଚୀନ ଭାରତର ଓ ପ୍ରାଚୀନ ଉତ୍କଳର ଭକ୍ତ, କବି, ବୀର ମାନଙ୍କର ଯଥାଯଥ ବିବରଣୀ ଆମ୍ଭେମାନେ ଜାଣିପାରୁ ନାହୁଁ । କାଳ ଗଡ଼ିଗଲେ ଅଧୁନାତନ କୃତବିଦ୍ୟମାନଙ୍କ ଜୀବନର ଘଟଣାବଳୀ ମଧ୍ୟ ବିସ୍ମୃତିର ଅନ୍ଧକାର ଗର୍ଭରେ ଲୁଚିଯିବ ।"

ଆଲୋଚ୍ୟ ପ୍ରବନ୍ଧଟି ଯଥାର୍ଥରେ ଏକ ଉଚ୍ଚକୋଟୀର ଚରିତ ପ୍ରବନ୍ଧ । କାରଣ ଏଥିରେ କେବଳ ଲେଖକ ଫକୀରମୋହନଙ୍କ ଜନ୍ମ, ବାସସ୍ଥାନର ପରିଚୟ, ପରିବାରର ଅବସ୍ଥା ଏବଂ ତାଙ୍କର କର୍ମମୟ ଜୀବନ ସମ୍ପର୍କରେ ପରିଚୟ ପ୍ରଦାନ କରି ଲେଖକ ସନ୍ତୁଷ୍ଟ ରହି ନାହାଁନ୍ତି, ସେ ସମକାଳୀନ ଉତ୍କଳୀୟ ସମାଜ ସାଂସ୍କୃତିକ ଜୀବନ ଏବଂ ତହିଁରେ ଫକୀର ମୋହନଙ୍କ ଭୂମିକା ଐତିହାସିକ ଏବଂ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି, ସେହି ସାମାଜିକ ଅବସ୍ଥାର ପରିପ୍ରେକ୍ଷୀରେ ଫକୀରମୋହନଙ୍କ ସ୍ଥାନ କଣ ଥିଲା ତାହା ନିମ୍ନୋକ୍ତ ଆଲୋଚନାରୁ ଅନୁମିତ ହେବ ।

"ବାଲେଶ୍ୱର ଜିଲ୍ଲାରେ ସମସ୍ତ ବିଦ୍ୟାଶିକ୍ଷା ଓ ଅନ୍ୟାନ୍ୟ ଉନ୍ନତିକର କାର୍ଯ୍ୟଶିକ୍ଷା ସେନାପତି ଓ ଚୌଧୁରୀ ବଂଶରୁ ପ୍ରଥମ ଆରମ୍ଭ ହୋଇଅଛି । ୧୮୬୮ ମସିହା ପୂର୍ବେ ସରକାର ବାହାଦୁର ଚୌଧୁରୀଙ୍କର ନିଜ ଗୃହରେ ଗୋଟିଏ ଇଂରାଜୀସ୍କୁଲ ସ୍ଥାପନ କରିଥିଲେ । ଗ୍ରୀଷ୍ମ ଅଗ୍ନିବରୁ ଗୃହବର୍ଷ, ଉତ୍ତରେ ସେହି ସ୍କୁଲ ଉଠିଗଲା । ତହିଁର କେତେକ ବର୍ଷ ଉତ୍ତାରେ ବାଲେଶ୍ୱରରେ ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ସ୍କୁଲ ସ୍ଥାପିତ ହେଲା । ୧୮୬୮ ମସିହାରେ ଚୌଧୁରୀଙ୍କ ନିଜ ଗୃହରେ ପ୍ରଥମେ ବାଳିକା ବିଦ୍ୟାଳୟ ସ୍ଥାପିତ ହେଲା । ସେନାପତି ଓ ଚୌଧୁରୀ ବଂଶର ବାଳିକାମାନେ କେବଳ ସେହି ବିଦ୍ୟାଳୟରେ ଛାତ୍ରୀ ଥିଲେ । ଏହି ବାଳିକା ବିଦ୍ୟାଳୟ ସ୍ଥାପିତ ହେବାରୁ ସହର ମଧ୍ୟରେ ଅନେକ ଦିନ ପର୍ଯ୍ୟନ୍ତ ଆନ୍ଦୋଳନ ହୋଇଥିଲା । ସେଥି ସକାଶେ ସେନାପତି ଓ ଚୌଧୁରୀ ବଂଶକୁ ବିଶେଷ ଲାଞ୍ଛନା ଓ ନିନ୍ଦାଭୋଗ କରିବାକୁ ପଡ଼ିଥିଲା । ୧୮୭୦ରେ ଚୌଧୁରୀଙ୍କ ନିଜ ଗୃହରେ ସ୍ତ୍ରୀମାନଙ୍କ ଜନାନା ଶିକ୍ଷା ଶିଳ୍ପଶିକ୍ଷା ଆରମ୍ଭ ହେଲା । ସେହି ସକାଶେ ମଧ୍ୟ ଦୁଇ ବଂଶକୁ ଲାଞ୍ଛନା ଭୋଗ କରିବାକୁ ପଡ଼ିଥିଲା । ସେନାପତି ବଂଶଙ୍କ ଯତ୍ନରୁ ବାଲେଶ୍ୱରରେ ପ୍ରଥମେ ଛାପାଖାନା ସ୍ଥାପିତ ଓ ସମ୍ବାଦ ବାହିକା ନାମକ ସାପ୍ତାହିକ ପତ୍ରିକା ପ୍ରକାଶିତ ହୁଏ ।

ଏଣୁ ଫକୀରମୋହନ ତତ୍କାଳୀନ ସମାଜରେ ଥିଲେ ଜଣେ ସଂସ୍କାରକ ଓ ବିପ୍ଳବୀ । ସେ ନିଜେ ଉଚ୍ଚଶିକ୍ଷା ଲାଭ କରିବାର ସୁଯୋଗ ପାଇ ନଥିଲେ ହେଁ ପାଶ୍ଚାତ୍ୟ ଶିକ୍ଷା ବିସ୍ତାରରେ ଏବଂ ସ୍ତ୍ରୀ ଶିକ୍ଷା ଆନ୍ଦୋଳନରେ ଅଗ୍ରଗଣ୍ୟ ଥିଲେ । ସେତେବେଳେ ଓଡ଼ିଆ ଭାଷା ଦାରୁଣ ସଙ୍କଟର ସମ୍ମୁଖୀନ ହୋଇଥିଲା । ଏହି ଦୁର୍ଦ୍ଦିନରେ ଓଡ଼ିଆ ଭାଷାକୁ ଫକୀରମୋହନ ନିଜର ସହକର୍ମୀ ମାନଙ୍କ ସହିତ କିପରି ବଞ୍ଚାଇ ଥିଲେ ତାହା ପାଠକଲେ ଅଭିଭୂତ ହେବାକୁ ହୁଏ । ସମକାଳୀନ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ନନ୍ଦକିଶୋରଙ୍କ ମତ ଅଳ୍ପ କେହିପରି ସେ ସମୟରେ ବାଲେଶ୍ୱର ଜିଲ୍ଲାରେ ଅବଧାନ ଗୃହଶାଳୀ ଓ ଫାର୍ସୀଭାଷା ଶିଖିବା ନିମିତ୍ତ ଆଖଡ଼ା ମକ୍ତବ ଥିଲା । ବାଲେଶ୍ୱର ସହରରେ କେବଳ ଗୋଟିଏ ଫାର୍ସୀ ବିଦ୍ୟାଳୟ ଥିଲା । ଫକୀର-ମୋହନ ପ୍ରଥମେ ଅବଧାନ ଗୃହଶାଳୀରେ ଓଡ଼ିଆ ପଢ଼ି ଫାର୍ସୀ ବିଦ୍ୟାଳୟରେ କିଛିଦିନ ପଢ଼ିଥିଲେ । ତାଙ୍କର ଚଉଦବର୍ଷ ବୟସ ସମୟରେ ଫାର୍ସୀ ବିଦ୍ୟାଳୟ ଉଠିଯାଇ ବାଲେଶ୍ୱର ଜିଲ୍ଲାର ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ଇଂରାଜୀ ସ୍କୁଲ ଓ ଗୋଟିଏ ବଙ୍ଗଳା ବିଦ୍ୟାଳୟ ସ୍ଥାପିତ ହେଲା । ଫକୀରମୋହନ କିଛିଦିନ ସେଠାରେ ବଙ୍ଗଳା ପଢ଼ି ସେଠାରେ ଶିକ୍ଷକତା କରିଥିଲେ । ଶିକ୍ଷା ବିଭାଗରେ ପ୍ରାୟ ୧୨ । ୧୩ ବର୍ଷ କାର୍ଯ୍ୟ କରି ବାଲେଶ୍ୱର ଜିଲ୍ଲାର ମିଶନ ସ୍କୁଲର ହେଡ଼ମାଷ୍ଟର ପଦ ପର୍ଯ୍ୟନ୍ତ ଯାଇପାରିଥିଲେ । ମଧ୍ୟରେ କେତେମାସ ବାଲେଶ୍ୱର ଜିଲ୍ଲାର କଲେକ୍ଟରୀ ସିରସ୍ତାରେ ମୁନସି କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । କିନ୍ତୁ ସେ କର୍ମ ଭଲ ନଲାଗିବାରୁ ତାହା ପରିତ୍ୟାଗ କରି ପୁନର୍ବାର ଶିକ୍ଷକତାରେ ନିଯୁକ୍ତ ହୋଇଥିଲେ । × × × ପ୍ରଥମ ଉତ୍କଳର ସ୍ଥାନେ ସ୍ଥାନେ ଯେତେବେଳେ ସ୍କୁଲ ସ୍ଥାପିତ ହେବାର ଆରମ୍ଭ ହୁଏ, ସେତେବେଳେ ଲୋକଙ୍କର ମାତୃଭାଷା ଶିକ୍ଷା ପ୍ରତି ତାଦୃଶ ଯତ୍ନ ନଥିଲା । ବିଦ୍ୟାଳୟରେ ସେଥି ନିମନ୍ତେ ବନ୍ଦୋବସ୍ତ ମଧ୍ୟ ନଥିଲା । ସ୍କୁଲ ମାନଙ୍କରେ ସମସ୍ତ ବିଷୟ ବଙ୍ଗଳାରେ ପଠିତ ହେଉଥିଲା । ଓଡ଼ିଆରେ କେବଳ ସାହିତ୍ୟ ସାମାନ୍ୟ ଭାବରେ ପଠିତ

ହେଉଥିଲା । ସେ ସମୟରେ ପ୍ରାୟ ସମସ୍ତ ସ୍କୁଲରେ ଶିକ୍ଷା ବିଭାଗର ପ୍ରଧାନ ପ୍ରଧାନ ପଦରେ ବଙ୍ଗବାସୀମାନେ ନିଯୁକ୍ତ ଥିବାରୁ ଉତ୍କଳ ଭାଷାର ଉନ୍ନତି ପାଇଁ କେହି ଚିନ୍ତା କରୁ ନଥିଲେ । ସେ ସମୟରେ ଉତ୍କଳ ଭାଷାରେ କେବଳ ମଦନକଥା ଚନ୍ଦ୍ରଭାଗ ଓ ହିତୋପଦେଶ ଓ ଧରଣୀଧର ଗୀତଗୋବିନ୍ଦ ଏଭଳି କେତେ ଖଣ୍ଡି ମାତ୍ର ମୁଦ୍ରିତ ହୋଇଥିଲା । ସେ ସମୟରେ ଓଡ଼ିଶାବାସୀ ବିଶେଷତଃ ବାଲେଶ୍ୱର ବାସୀ ବଙ୍ଗାଳୀ କର୍ମଚାରୀମାନେ ଏକତ୍ର ହୋଇ ଉତ୍କଳ ଦେଶର ସ୍କୁଲମାନଙ୍କରୁ ଓଡ଼ିଆ ଭାଷା ଏକା ବେଳକେ ଉଠାଇ ଦେବାକୁ ଯତ୍ନଶୀଳ ହୋଇ-ଥିଲେ ଏବଂ ବଙ୍ଗ ଦେଶରେ ଦକ୍ଷିଣ ପଶ୍ଚିମ ବିଭାଗର ସ୍କୁଲ ଇନ୍‌ସ୍‌ପେକ୍ଟର ମିଃ ମାର୍ଟିନ ସାହେବଙ୍କୁ ହସ୍ତଗତ କରି ଏ ପ୍ରକାର କୃତକାର୍ଯ୍ୟ ହୋଇଥିଲେ । ସମଗ୍ର ଉତ୍କଳ ପକ୍ଷର କଟକବାସୀ ବାବୁ ଗୌରୀଶଙ୍କର ରାୟ ଓ ବାଲେଶ୍ୱରରୁ ଫକୀରମୋହନ ଏ ବିଷୟରେ ପ୍ରତିବାଦ ଓ ଘୋର ଆନ୍ଦୋଳନ କରିଥିଲେ । ଫକୀରମୋହନ ବାଲେଶ୍ୱରବାସୀ ପ୍ରଧାନ ପ୍ରଧାନ ଲୋକମାନଙ୍କୁ ଘେନି ଗୋଟିଏ ସଭା ଗଠନ କଲେ ଓ ସେହି ସଭା ଗଭର୍ଣ୍ଣମେଣ୍ଟ ପର୍ଯ୍ୟନ୍ତ ଆବେଦନ କରିବାରୁ ବାଲେଶ୍ୱର ଜିଲାର ତତ୍କାଳୀନ କଲେକ୍ଟର ମିଃ. ବିମସ୍ ଓ ଉତ୍କଳର କମିଶନର ମିଃ. ରେଭେନ୍‌ସା ମହୋଦୟଙ୍କ ସହାୟତାରେ ସମସ୍ତ ସ୍କୁଲରୁ ବଙ୍ଗଭାଷା ଏକାବେଳକେ ଉଠିଗଲା । ସେହି ସମୟରେ ଉତ୍କଳ ଭାଷାର ଶିକ୍ଷାର ସୂତ୍ରପାତ ହେଲା ।

(ମୁକୁର ୩ୟ ଭାଗ-୧ମ ସଂଖ୍ୟା)

ବିଂଶ ଶତାବ୍ଦୀର ପ୍ରଥମଭାଗରେ ଗୋପବନ୍ଧୁଙ୍କ ସମ୍ପାଦିତ ସତ୍ୟବାଦୀ ଏକ ବିଖ୍ୟାତ ସାହିତ୍ୟ ପତ୍ରିକା ଥିଲା । ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟକୁ ସତ୍ୟବାଦୀର ଦାନ ଆଦୌ ନ୍ୟୂନ ନୁହେଁ । ଏଥିରେ ବହୁ ମୂଲ୍ୟବାନ ଚିନ୍ତାମୂଳକ ଓ ଐତିହାସିକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଅଥଚ ସତ୍ୟବାଦୀ ୩ୟ ଖଣ୍ଡ ୧୩୨୪ ପ୍ରଥମ ଓ ଦ୍ୱିତୀୟ ସଂଖ୍ୟାରେ ଫକୀରମୋହନଙ୍କ ଜୀବନଚରିତରେ ଏକ ଅଧ୍ୟାୟ ପ୍ରକାଶିତ ହେବା ବ୍ୟତୀତ ଏହି ପତ୍ରିକାରେ କୌଣସି ଜୀବନଚରିତ ସ୍ଥାନ ଲାଭକରି ନାହିଁ ।

ପ୍ରସଙ୍ଗକ୍ରମେ ସହକାର ମାସିକ ସାହିତ୍ୟ ପତ୍ରିକାରେ ଆଲୋଚନା କଲେ ବିଷୟଟି ଅଧିକ ପ୍ରାଞ୍ଜଳ ହୋଇ ପାରିବ । ଦୁଇଟି ମହାଯୁଦ୍ଧ ମଧ୍ୟବର୍ତ୍ତୀ କାଳରେ ଆଧୁନିକ ଓଡ଼ିଆ ସାହିତ୍ୟକୁ ସହକାର ପତ୍ରିକା ନବବିନ୍ୟାସ ପ୍ରଦାନ କରିଥିଲା । ସବୁଜଦଳ ସାଧକଗଣ ଏହି ପତ୍ରିକାରେ ଲେଖନୀ ଚାଳନା କରି ପ୍ରତିଷ୍ଠିତ ହୋଇଥିଲେ । ସାହିତ୍ୟରେ ଆଧୁନିକ ଆନ୍ଦୋଳନ ପାଇଁ ସହକାର ପତ୍ରିକାର ଦାନ କିଛି କମ୍ ନୁହେଁ । ଏହି ପତ୍ରିକାର ୧୯୩୨ ସାଲଠାରୁ ୧୯୩୬ ସାଲ ମଧ୍ୟରେ ପ୍ରକାଶିତ ସଂଖ୍ୟା ଗୁଡ଼ିକ ଆଲୋଚନା କଲେ ଅଳ୍ପ କେତେଗୋଟି ଜୀବନ-ଚରିତ ପ୍ରସ୍ତୁତ ହୋଇଥିବା ପାଠକର ଦୃଷ୍ଟିରେ ପଡ଼େ । ଉଦାହରଣ ସ୍ୱରୂପ ଏହି ଦୀର୍ଘକାଳ ମଧ୍ୟରେ ଅଲେଖ କବି ଅନ୍ଧ ଭୀମ ଭୋଇ କନ୍ଧ (୧୯୩୧—୫ମ ଭାଗ ୨ୟ ସଂଖ୍ୟା) ସାର୍ ଜର୍ଜ ଉଇଲସନ୍ (୧୯୩୬-୪ର୍ଥ ଭାଗ ୫ମ ସଂଖ୍ୟା) ଲୋକମାନ୍ୟ ବାଳଗଙ୍ଗାଧର ତିଳକ (୧୯୩୨ -୪ର୍ଥ ଭାଗ ୬ଷ୍ଠ ସଂଖ୍ୟା) ମହାତ୍ମାଗାନ୍ଧି, କବି, ଗୋପାଳକୃଷ୍ଣ ପଟ୍ଟନାୟକ (୧୯୩୧-୫ମ ୬ଷ୍ଠ) ଦେଶବନ୍ଧୁ ଚିତ୍ତରଞ୍ଜନ (୧୯୩୨-୫ମ ଭାଗ-୧୧ଶ ସଂଖ୍ୟା) ସାମନ୍ତ ଚନ୍ଦ୍ରଶେଖର

( ୧୩୩୪-୭ମ କଳସ ୧ମ ଅଞ୍ଜଳି ) ଅକ୍ଟେଭିୟସ୍ ହ୍ୟୁମ୍ ( ୧୩୩୪ ୭ମ ଭାଗ ୧ମ ସଂଖ୍ୟା ) ଜୟଦେବ ଓ ଗୀତଗୋବିନ୍ଦ ( ୧୩୩୫-୮ମ କଳସ ୧ମ ଅଞ୍ଜଳି ) କବି ଦୀନକୃଷ୍ଣ ( ୧୩୩୬ ନବମ କଳସ ପଞ୍ଚମ ଅଞ୍ଜଳି) ଆଧୁନିକ ଭାରତ ଓ ରାଜା ରାମମୋହନ ( ୧୩୩୬- ୯ମ କଳସ ୧ମ ଅଞ୍ଜଳି ) ପ୍ରଭୃତି ଉଲ୍ଲେଖଯୋଗ୍ୟ । ଅଧିକାଂଶ କ୍ଷେତ୍ରରେ ଏହି ଜୀବନୀ ଲେଖାଗୁଡ଼ିକ ସଂକ୍ଷିପ୍ତ । ସାମ୍ପ୍ରତିକ କାଳରେ ଜାତୀୟ ଆନ୍ଦୋଳନ ଭାରତୀୟ ଜନମାନସରେ ଚହଳ ସୃଷ୍ଟି କରିଥିବାରୁ ଗାନ୍ଧି, ଚିତ୍ତରଞ୍ଜନ, ତିଳକ ମହାରାଜ, ପ୍ରଭୃତିଙ୍କ ସମ୍ପର୍କରେ ଲେଖା ଦେଖିବାକୁ ମିଳେ । ସେହିପରି ସଂସ୍କାରକ ରାମମୋହନ, ଧର୍ମପ୍ରଚାରକ ଭୀମଭୋଇ, କବି ଗୋପାଳକୃଷ୍ଣ, କବି ଜୟଦେବ ପ୍ରଭୃତିଙ୍କ ବିଷୟରେ ମଧ୍ୟ ଆଲୋଚନା ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ କେତେକ ବିଦେଶୀ ସମାଜ ସେବୀଙ୍କ ଜୀବନଚରିତ ଆଲୋଚିତ ହୋଇଅଛି । ତେବେ ସହକାର ପତ୍ରିକାର ଏକାଧିକ ସଂଖ୍ୟାରେ ଶ୍ରୀ ଅଲେଖ ପ୍ରସାଦ ଦାସ ଧାରାବାହିକ ଭାବରେ କାଳିନ୍ଦୀ କମିଲାଙ୍କ ଜୀବନୀ ସମ୍ପର୍କରେ ଲେଖାମାନ ପ୍ରକାଶ କରିଅଛନ୍ତି । ଏହା ଏକ ଜୀବନଚରିତ ହେଲେ ହେଁ ତାଙ୍କ ଆତ୍ମଚରିତର ଅବଲମ୍ବନରେ ଲେଖକ ଏହି ଜୀବନୀ ଲେଖିବାକୁ କ୍ଷମ ହୋଇଥିଲେ ବୋଲି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଟିପ୍‌ପଣୀ କରିଛନ୍ତି । ୧୯୧୯ ମସିହା ପର୍ଯ୍ୟନ୍ତ କାଳିନ୍ଦୀ କମିଲା ବଞ୍ଚି ରହିଥିଲେ । ତେଣୁ ଅନୁନ୍ନତ ଓଡ଼ିଶାରେ ଏପରି ଜଣେ ବୀରପୁରୁଷଙ୍କର ଜୀବନଚରିତ ଅତ୍ୟନ୍ତ ସମୟୋପଯୋଗୀ ହୋଇଥିଲା । ତାଙ୍କ ଜୀବନୀ ସମ୍ପର୍କରେ ଟିପ୍‌ପଣୀ ପ୍ରଦାନ କରି ଲକ୍ଷ୍ମୀନାରାୟଣ ସାହୁ ଲେଖିଥିଲେ—

"କାଳିନ୍ଦୀ କମିଲା, ବା କାଳିଆ ଡାକ୍ତର ବା କାଳିଆ ସୁନାରଙ୍କ ନାମ ବାଲେଶ୍ୱର ଜିଲାରେ ଖୁବ୍ ଜଣା । ଡାକ୍ତର ହିସାବରେ ସେ ସର୍ବସାଧାରଣରେ ପରିଚିତ ଥିଲେ । ଭକ୍ତ ହିସାବରେ, କେଶବଚନ୍ଦ୍ର ସେନ୍ ପ୍ରତାପ ଚନ୍ଦ୍ର ମଜୁମ୍‌ଦାର ଏବଂ ଆଉ କେତେଜଣ ତାଙ୍କୁ ଭଲରୂପେ ଜାଣିଥିଲେ । ବର୍ତ୍ତମାନ ଯେଉଁ 'ଜୀବନୀ' ତାଙ୍କର ଲେଖା ହୋଇଅଛି ତାହା ତାଙ୍କ ନିଜର ହାତ ଲେଖାରୁ ଭାଷା ଅଳ୍ପ ସଂଶୋଧନ କରି ଲେଖା ହୋଇଅଛି । କାଳିନ୍ଦୀ ଲେଖା ପଢ଼ା ସେପରି ଜାଣି ନଥିଲେ, ଅତି ସାମାନ୍ୟ ଜାଣିଥିଲେ । କିନ୍ତୁ ଯାହା ଲେଖିଅଛନ୍ତି ଅତି ବିଶୁଦ୍ଧ ବାଲେଶ୍ୱରୀ କଥିତ ଭାଷାରେ । × × × କାଳିଆ ସୁନାରଙ୍କ ସମ୍ପର୍କରେ ପ୍ରତାପଚନ୍ଦ୍ର ମଜୁମ୍‌ଦାର ଥରେ କହିଥିଲେ — ଓଡ଼ିଆମାନେ ବିଜ୍ଞାପନ ଦେଇ ଜାଣନ୍ତି ନାହିଁ— ନୋହିଲେ ଏତେ ବଡ଼ ଲୋକଙ୍କୁ ବଙ୍ଗଦେଶ ପାଇଥିଲେ ତାଙ୍କୁ ଭାରତ ବିଖ୍ୟାତ କରିଥାନ୍ତେ । ( ସହକାର—୧୩୩୬—ନବମକଳସ—ଷଷ୍ଠ ଅଞ୍ଜଳି—ପୃ ୧୮୬ )

ତେବେ ସୁଖର କଥା ଯେ ଏହି ସମୟରେ ଜୀବନୀ ରଚନା ପ୍ରତି ଆଦର ପ୍ରକାଶ ପାଇଥିଲା । ବିଭିନ୍ନ ପତ୍ରପତ୍ରିକା ଏଦିଗରେ ପଦକ୍ଷେପ ଗ୍ରହଣ କରିଥିଲେ । ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇ ବୀର ଜୀବନମାଳା ପ୍ରକାଶ କରି ପ୍ରଚାର କରିଥିଲେ । ଏ ସମ୍ପର୍କରେ ସହକାର ପତ୍ରିକା ୧୩୩୩—୭ମ ଭାଗ ୧ମ ସଂଖ୍ୟାରେ ଟିପ୍‌ପଣୀ ପ୍ରଦାନକରି ଲେଖିଥିଲେ ଯେ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ତରଫରୁ ଜୀବନୀ ସଂଗ୍ରହ ଲାଗିଅଛି । ରାଣାଡେ, ଆଗାରକାର୍, ଗୋଖଲେ, ଫକୀରମୋହନ ସେନାପତି, ମଧୁସୂଦନ

ରାଓ, ପ୍ୟାରୀମୋହନ ଓ ରାଜା ରାମଚନ୍ଦ୍ରଙ୍କ ଜୀବନୀ ଲେଖା ଏବଂ ସଂଗ୍ରହ ଚାଲିଅଛି । ପ୍ରାଚୀନ ସାଧୁପୁରୁଷ ମାନଙ୍କ ମଧ୍ୟରୁ ହାଡ଼ିଦାସ ( ଛତିଆ ) ବଳରାମଦାସ, ଅରକ୍ଷିତ ଦାସ, ଅନାହାରୀ ବାବା (ଅଲେଖ ଧର୍ମଗୁରୁ)ଙ୍କର ଜୀବନୀ ସଂଗ୍ରହ କାର୍ଯ୍ୟ ଚାଲିଛି । ଜୀବନୀ-ଲେଖକ ଏବଂ ଜୀବନୀ ସଂଗ୍ରାହକ ମାନଙ୍କୁ ଜୀବନୀ ଲେଖି ପ୍ରକାଶ କରିବା ପାଇଁ ସାହିତ୍ୟ ପ୍ରଚାର ସଂଘକୁ ପ୍ରେରଣ କରିବାକୁ 'ସତ୍ୟବାଦୀ' ନିବେଦନ କରିଛନ୍ତି । ଏହି ସମୟରେ "ପଞ୍ଚାମୃତ" ନାମରେ ଏକ ବିଖ୍ୟାତ ଶିଶୁ ଉପଯୋଗୀ ସାହିତ୍ୟ ପତ୍ରିକା ପ୍ରକାଶିତ ହେଉଥିଲା । କଟକ ଟ୍ରେଡ଼ିଂ କମ୍ପାନୀ ଆନୁକୂଲ୍ୟରେ ପ୍ରକାଶିତ ଏହି ପତ୍ରିକାର ସଂପାଦକ ଥିଲେ ଚନ୍ଦ୍ରମଣି ଆଚାର୍ଯ୍ୟ ଏବଂ ଅଗଣି ଦାସ । ଏଥିରେ ପ୍ରାୟ ପ୍ରତ୍ୟେକ ସଂଖ୍ୟାରେ ଗୋଟିଏ ଗୋଟିଏ ଜୀବନଚରିତ ପ୍ରକାଶିତ ହେଉଥିଲା । ଶିଶୁମାନଙ୍କ ଉପଯୋଗୀ ଭାଷାରେ ଏହି ଜୀବନୀଗୁଡ଼ିକ ଅତ୍ୟନ୍ତ ଉପାଦେୟ ହେଉଥିଲା । ଅଧିକାଂଶ ସଂଖ୍ୟାରେ ଜୀବନଚରିତର ଲେଖକ ଥିଲେ ଚନ୍ଦ୍ରମଣି ଆଚାର୍ଯ୍ୟ । ଉଦାହରଣ ସ୍ୱରୂପ ଗୌରୀଶଙ୍କର ( ୧୩୩୩ ଦ୍ୱିତୀୟ ଭାଗ ୩ । ୪ ସଂଖ୍ୟା ) ମହାରାଜା ଶ୍ରୀ ରାମଚନ୍ଦ୍ର ଦେବ ( ୧୩୩୩ । ୫ମ ସଂଖ୍ୟା ) ପଠାଣି ସାମନ୍ତ ( ୧୩୩୪ । ୭ମ ସଂଖ୍ୟା ) ସଂନ୍ଧ୍ୟାର ମୋହନ ( ୧୩୩୪ । ୧୦ମ ସଂଖ୍ୟା ସାର୍ ଆଶୁତୋଷ ( ୧୩୩୪-୨ । ୮ ସଂଖ୍ୟା ) ବିଦ୍ୟାସାଗର ( ୧୩୩୫-୧୧ । ୧୨ ସଂଖ୍ୟା ) ପ୍ରଭୃତି ଗ୍ରହଣ କରାଯାଇପାରେ । ଏହି ପ୍ରତ୍ୟେକଟିର ଲେଖକ ଥିଲେ ଚନ୍ଦ୍ରମଣି ଆଚାର୍ଯ୍ୟ । କେବଳ କବି ଉପେନ୍ଦ୍ରଭଞ୍ଜ ( ୧୩୩୪-୨ । ୩ ସଂଖ୍ୟା) ଜୀବନୀଟି ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ଲେଖିଥିଲେ । ଏହି ଜୀବନଚରିତ ଲେଖାଗୁଡ଼ିକ କିପରି ପ୍ରେରଣାଗର୍ଭିତ ଥିଲା ତାହା ଯେକୌଣସି ପ୍ରବନ୍ଧଟିଏ ବିଶ୍ଳେଷଣ କଲେ ପ୍ରମାଣିତ ହୋଇପାରିବ । ମହାରାଜା ଶ୍ରୀ ରାମଚନ୍ଦ୍ର ଦେବଙ୍କ ସମ୍ପର୍କରେ କହିବାକୁ ଯାଇ ଜୀବନୀ ଲେଖକ ଲେଖିଥିଲେ ଏହିପରି— ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରେ ସଂକ୍ଷିପ୍ତ ଇତିହାସ ଓ ଓଡ଼ିଶାର ବିଖ୍ୟାତ ମହାପୁରୁଷମାନଙ୍କର ବିବରଣ ଆମ୍ଭେମାନେ ବରାବର କହିଆସୁଅଛୁ । ମହାପୁରୁଷ ମାନଙ୍କ ବୃତ୍ତାନ୍ତ ଜାଣିଲେ ହୃଦୟ ପବିତ୍ର ହୁଏ ଓ ଚରିତ୍ର ଉନ୍ନତ ହୁଏ ।

ତୁମ୍ଭେମାନେ ପୁରାଣରେ ରାଜର୍ଷିମାନଙ୍କ କଥା ଶୁଣିଥିବ । ରାମାୟଣରେ ଜନକଙ୍କ କଥା ଶୁଣିଥିବ । ଜନକ ଜଣେ ରାଜର୍ଷି ଥିଲେ, ଅର୍ଥାତ୍ ସେମାନେ ସାଧାରଣ ରାଜାମାନଙ୍କ ଅପେକ୍ଷା ଖୁବ୍ ଉନ୍ନତ ଭାବରେ ରାଜକାର୍ଯ୍ୟ ଚଳାଇ ପାରନ୍ତି । ସେମାନେ ନିଜର ଦେବତୁଲ୍ୟ ଚରିତ୍ର ଦ୍ୱାରା ରାଜ୍ୟର ଓ ପ୍ରଜାମାନଙ୍କର ମଙ୍ଗଳ କରିଥାନ୍ତି । ଆଜି ଆମ୍ଭେମାନେ ଯେଉଁ ମହାପୁରୁଷଙ୍କ ବିବରଣ ତୁମ୍ଭମାନଙ୍କୁ କହିବୁଁ, ସେ ଜଣେ ରାଜର୍ଷି ଥିଲେ ବୋଲି କୁହାଯାଇ ପାରେ । ତାହାଙ୍କର ନାମ ଶ୍ରୀ ରାମଚନ୍ଦ୍ର ଦେବ । କେବଳ ଜାତୀୟ ନୁହଁନ୍ତି, ଅଣଓଡ଼ିଆ ବୀର ପୁରୁଷମାନଙ୍କର ମହତ୍ତ୍ୱ କୀର୍ତ୍ତନ କରି ବାଳକ ବାଳିକାଙ୍କ ମନରେ ନୂତନ ଚେତନା ଓ ଆତ୍ମବିଶ୍ୱାସ ଆଣିଦେବା ଥିଲା ଏହି ଜୀବନଚରିତ ଲେଖକମାନଙ୍କର ଉଦ୍ଦେଶ୍ୟ । ତେଣୁ ପରାଧୀନ ଜାତିର ଜଣେ ଯୋଗ୍ୟ ସନ୍ତାନ କିପରି ଦେଶ ବିଦେଶରେ ଆତ୍ମପ୍ରତିଷ୍ଠା ଓ ସ୍ୱୀକୃତି ଲାଭକରିପାରେ ସେହି ବିଷୟରେ ସାର୍ ଆଶୁତୋଷ ଜୀବନୀରେ 'ପଞ୍ଚାମୃତ' ପ୍ରଚାରକରି ଅଛନ୍ତି । ଲେଖକ ଲେଖିଛନ୍ତି—୧୮୮୦ ଖ୍ରୀଷ୍ଟାବ୍ଦରେ ଅଧ୍ୟାପକ ଅମୀର ଅଲ୍ଲି ବିସ୍ମିତହୋଇଥିଲେ ଯେ ଆଶୁତୋଷ ହିନ୍ଦୁ ହୋଇ ସୁଦ୍ଧା ମୁସଲମାନଙ୍କ ଆଇନରେ ପ୍ରଥମ ସ୍ଥାନ ଅଧିକାର

କରିଥିଲେ । × × × କେମ୍ବ୍ରିଜର 'ମେସେଞ୍ଜର ଅଫ ମାଥେମାଟିକସ୍' ନାମକ ଗଣିତ ବିଷୟକ ପତ୍ରିକାରେ ଆଶୁତୋଷ ସାମୟିକ ପ୍ରବନ୍ଧମାନ ଲେଖୁଥିଲେ । ତାହାଙ୍କ ଜ୍ଞାନ ଓ ଗବେଷଣାର ପରିଚୟ ପାଇ କେମ୍ବ୍ରିଜର ପ୍ରସିଦ୍ଧ ଗଣିତ ଅଧ୍ୟାପକ କେଲିସାହେବଙ୍କ ପ୍ରସ୍ତାବ କ୍ରମେ ତାହାଙ୍କୁ 'ରୟାଲ ଏସିୟାଟିକ ସୋସାଇଟିର' ସଦସ୍ୟ ମନୋନୀତ କରାଯାଇ-ଥିଲା । ସେ ଏଫ୍. ଆର୍. ଏସ୍. ଇ. ଉପାଧି ପ୍ରାପ୍ତ ହୋଇଥିଲେ । × × × ଏପର୍ଯ୍ୟନ୍ତ କୌଣସି ଦେଶୀୟ ଲୋକ ଏମ୍. ଏସ୍ ପରୀକ୍ଷାରେ ଗଣିତରେ ପରୀକ୍ଷକ ହୋଇ ନଥିଲେ । ଆଶୁତୋଷ ହିଁ ପ୍ରଥମ ପରୀକ୍ଷକ ରୂପେ ନିଯୁକ୍ତ ହେଲେ । × × × କଲିକତା ବିଶ୍ୱବିଦ୍ୟାଳୟ ଆଶୁତୋଷଙ୍କର ଜୀବନୀ ଓ ଆଶୁତୋଷ କଲିକତା ବିଶ୍ୱବିଦ୍ୟାଳୟର ଜୀବନ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ଓଡ଼ିଆ ଜୀବନୀ ସାହିତ୍ୟକୁ ଓଡ଼ିଆ ପତ୍ର ପତ୍ରିକାର ଦାନ ଅସ୍ୱୀକାର କରାଯାଇପାରିବ ନାହିଁ । ବ୍ୟାସକବି ଫକୀର-ମୋହନଙ୍କ ଆତ୍ମଚରିତ ଧାରାବାହିକ ଭାବରେ ବହୁବର୍ଷକାଳ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ତାହାର କେତେକ ଅଂଶ ସତ୍ୟବାଦୀ ମାସିକ ସାହିତ୍ୟରେ ଆତ୍ମପ୍ରକାଶ କରିଥିଲା । ସେହିପରି କିଛି ବର୍ଷ ପୂର୍ବେ ଭରତଚନ୍ଦ୍ର ନାୟକଙ୍କ ଆତ୍ମଜୀବନ "ନବଜୀବନ" ମାସିକ ସାହିତ୍ୟ ପତ୍ରରେ ଧାରାବାହିକ ଭାବରେ ପାଠକର ହସ୍ତଗତ ହୋଇଥିଲା । ଏହିପରି ଆଲୋଚନା କଲେ 'ଦିଗନ୍ତ' ପତ୍ରିକାରେ ନାରାୟଣ ବୀରବର ସାମନ୍ତ, ପୌରୁଷରେ ପ୍ରାଣକୃଷ୍ଣ ପରିଜା ପ୍ରଭୃତିଙ୍କର ସାମୟିକ ଆତ୍ମଜୀବନ ଗାଥା ଅତ୍ୟନ୍ତ ଆଗ୍ରହ ସୃଷ୍ଟି କରିଥିବା ଜଣାଯାଏ ।

ସାମ୍ପ୍ରତିକ କାଳରେ ପୁସ୍ତକ ପ୍ରକାଶନ ସଂସ୍ଥା ଜରିଆରେ ବିଭିନ୍ନ କିସମର ଜୀବନୀ ପ୍ରକାଶିତ ହେଉଥିବାରୁ ପତ୍ରପତ୍ରିକାରେ ସେହି ଧରଣର ଲେଖା ଆଉ ସ୍ଥାନ ଲାଭ କରୁନାହିଁ । ତେବେ ସ୍ମୃତି ଚାରଣ ଉଦ୍ଦେଶ୍ୟରେ ବେଳେବେଳେ ପତ୍ର ପତ୍ରିକା ଗୁଡ଼ିକ ଜୀବନୀ ପ୍ରକାଶ କରି ପାଠକ ମାନଙ୍କର ଦୃଷ୍ଟି ଆକର୍ଷଣ କରି ଥାଆନ୍ତି । ଉତ୍ସବ ପାଳନକାରୀ ଉଦ୍ୟୋକ୍ତାଗଣ କୌଣସି ବ୍ୟକ୍ତିତ୍ୱ ପୂଜା କାଳରେ ସ୍ମରଣିକା ପ୍ରକାଶ କଲେ ଜୀବନଚରିତ ଦେବାପାଇଁ ଉଦ୍ୟମ କରୁଥିବା ଜଣାଯାଏ ।

———

# ଆତ୍ମଚରିତ ଓ ତାର କ୍ରମବିକାଶ

"ଯେ କୌଣସି ସାହିତ୍ୟରେ ଅନୁସନ୍ଧାନ କଲେ ଆତ୍ମଚରିତର ସଂଖ୍ୟା ଖୁବ କମ୍ ଦେଖିବାକୁ ମିଳିବ । ଓଡ଼ିଆ ସାହିତ୍ୟରେ ବାସ୍ତବିକ ଅଙ୍ଗୁଳିମେୟ ଆତ୍ମଚରିତ ପ୍ରକାଶିତ ହୋଇଅଛି । ଜୀବନ ଗ୍ରନ୍ଥ ପରି ଆତ୍ମଚରିତ ମଧ୍ୟ ସାମାଜିକ ଜୀବନକୁ ଚଳଚଞ୍ଚଳ କରିଦେଇଥାଏ । ହିଟଲର୍‌ଙ୍କ ଆତ୍ମଚରିତ Mein Kamph, ଗାନ୍ଧିଜୀଙ୍କର My experiments with Truth, ଜବାହାରଲାଲଙ୍କର ଆତ୍ମଚରିତ ତତ୍‌କାଳୀନ ସମାଜରେ ଯୁଗାନ୍ତକାରୀ ପ୍ରଭାବ ଆନୟନ କରିଥିବା ଜଣାଯାଏ । ଆତ୍ମଜୀବନୀ ଲେଖକ ଏବଂ ଜୀବନୀ ଲେଖକ ଏ ଉଭୟଙ୍କର ଦାୟିତ୍ୱ ଖୁବ୍ ଅଧିକ । ସେମାନେ ପାଠକ ସମାଜକୁ କେଉଁ କଥା ଶୁଣାଇବେ, ବ୍ୟକ୍ତିତ୍ୱର କେଉଁ ଦିଗଟି ଚିତ୍ରଣ କରିବେ, ଅନୁଭୂତିର କେଉଁ ଘଟଣାଟି ଲିପିବଦ୍ଧ ହେବ, ଏ ସମ୍ପର୍କରେ ଅତ୍ୟନ୍ତ ସାବଧାନତା ଆବଶ୍ୟକ । ବିଶେଷତଃ ବିଷୟ ନିର୍ବାଚନ କାଳରେ ଜୀବନୀ ଲେଖକ ପାଠକ ସମାଜର ଅଭିମୁଖ୍ୟ ଏବଂ ମନୋଭାବକୁ ଅଧ୍ୟୟନ କରି ଲେଖିବା ବିଧେୟ । ଏହି ପ୍ରସଙ୍ଗରେ ବିଶିଷ୍ଟ ବଙ୍ଗୀୟ ସମାଲୋଚକ ଶ୍ରୀ ଶରତ ଚନ୍ଦ୍ର ଦାସ ଲେଖିଛନ୍ତି—ଜୀବନଚରିତ ବ୍ୟତୀତ 'ଆତ୍ମଚରିତ' ନାମକ ଆଉ ଏକ ଶ୍ରେଣୀର ସାହିତ୍ୟରେ କଥା ନା ବୋଲଲେ ଏହି ଅଧ୍ୟାୟଟି ଅସମ୍ପୂର୍ଣ୍ଣ ଥାକିୟା ଯାଇବେ । ଡାଃ ଜନ୍‌ସନ୍ ବଲେନ୍‌ଯେ ପ୍ରତ୍ୟେକର ଜୀବନଚରିତ ଆତ୍ମକୃତ ହୋୟାଇ ବାଞ୍ଛନୀୟ । ଏକ ହିସାବେ କଥାଟି ସତ୍ୟ କିନ୍ତୁ ଅନେକ ସମୟ ଦେଖାଯାୟ, ଆତ୍ମଚରିତ ଲେଖକଗଣ ଆତ୍ମଚରିତକେ ଏମନ ଦାମ୍ଭିକତା ଓ ଅସାମାନ୍ୟ ଲଜ୍ଜାହୀନ ବର୍ଣ୍ଣନାୟ କ୍ଲାନ୍ତ ଓ ମିଥ୍ୟାର ପ୍ରଶ୍ରୟେ ଭାରାକ୍ରାନ୍ତ କରେନ୍ ଯେ ତାହା ଦେଖିୟା ଆମରା ଲେଖକେର ପ୍ରତି ଭକ୍ତି, ଶ୍ରଦ୍ଧା ଓ ବିଶ୍ୱାସ ରାଖିତେ ପାରିନା । ବିଶେଷତଃ ଲେଖକ ନିଜେର କଥା ବଲିତେ ଗିୟା ଯଖନ ଭବିଷ୍ୟତ କାଳେର ପାଠକେର କଥା ସ୍ମରଣ କରେନ୍ ତଖନ ଲଜ୍ଜା ଓ ବିନୟର ବୃଦ୍ଧି ଆସିୟା ପଡ଼ାୟ ତାଁହାର ଜୀବନେର ଅନେକ ଗଭୀର କଥାଇ ତିନି ପାଠକେର୍ ନିକଟ ଉପସ୍ଥାପିତ କରିତେ ପାରେନ ନା । ଫଲେ, ତିନି ଅକପଟେ ଆତ୍ମଚରିତ ରଚନା କରିତେ ପାରେନ ନା । ଏହି ଜନ୍ୟ ଆତ୍ମଚରିତ ଅନେକ ସମୟଇ ବ୍ୟକ୍ତି ଜୀବନେର ସଠିକ ବୃତ୍ତାନ୍ତ ନୟ । କିନ୍ତୁ ନିଜ ଜୀବନେର କଥା, ଅଭିଜ୍ଞତାର କଥା ଅକପଟେ ବିବୃତ କରିତେ ପାରେନ । ତାଁହାର ଗ୍ରନ୍ଥେ ସତ୍ୟ ଯେ ରୂପ ସୁନ୍ଦର ଓ ଅଭାବନୀୟ ପ୍ରାଣରସେ ପରିପୁଷ୍ଟ ହଇୟା ଉଠେ । ତାହା ଚିରଦିନେର ସାହିତ୍ୟ ହିସାବେ ଅନବଦ୍ୟ । ଆତ୍ମଚରିତ ଲେଖକେର ପକ୍ଷେ ଅତି ମାତ୍ରାୟ ନମ୍ରତା ବା ଅତିମାତ୍ରାୟ ଆତ୍ମ-ସଚେତନତା ଉଭୟଇ କ୍ଷତିକର ।"

(ସାହିତ୍ୟ ସନ୍ଦର୍ଶନ—ତୃତୀୟ ସଂ—୧୯୫୭—ପୃ ୧୯୧—୧୯୨)

ଓଡ଼ିଆ ସାହିତ୍ୟର ସୌଭାଗ୍ୟ ଯେ ତାର ପ୍ରଥମ ଆତ୍ମଚରିତ ଏକ ଅନନ୍ୟସାଧାରଣ ଆତ୍ମଲିପି । ଏଥିରେ ବ୍ୟକ୍ତି ଜୀବନର ଯେଉଁ ମହନୀୟ ଦିଗଟି ପ୍ରଦର୍ଶିତ ହୋଇଅଛି ତାହାର ତୁଳନା ନାହିଁ । ଅଥଚ ଘୋର ସତ୍ୟର ଅନୁରୋଧରେ ସତ୍ୟଦ୍ରଷ୍ଟା ଋଷିଙ୍କ ପରି ଜୀବନର ସତ୍ୟାନୁସନ୍ଧାନ ପାଇଁ ମାର୍ମିକ ଅନୁଭୂତି ବ୍ୟକ୍ତ କରିବାରେ ଲେଖକ ଆଦୌ କୁଣ୍ଠିତ ହୋଇ ନାହାନ୍ତି । ଓଡ଼ିଆ ସାହିତ୍ୟର ପାଠକମାନେ ପ୍ରାୟଶଃ ଜାଣନ୍ତି ନାହିଁ ଯେ କବିବର ରାଧାନାଥ ହେଉଛନ୍ତି ଆମ ସାହିତ୍ୟର ପ୍ରଥମ ଆତ୍ମଚରିତ ଲେଖକ । ଆଧୁନିକ ଓଡ଼ିଆ ସାହିତ୍ୟର ସେ କେବଳ ଅଗ୍ରଦୂତ ନୁହନ୍ତି, ଆତ୍ମଚରିତ ରଚନାରେ ମଧ୍ୟ ତାଙ୍କର ବୈପ୍ଳବିକ ଭୂମିକା ଅନସ୍ୱୀକାର୍ଯ୍ୟ । ମାତ୍ର ଦୁଃଖର କଥା ସେହି ଐତିହାସିକ ଦଲିଲ ଏବେ ମଧ୍ୟ ଅପ୍ରକାଶିତ । ଦୀର୍ଘକାଳ ପରେ ସୁଦ୍ଧା ସେହି ପ୍ରସିଦ୍ଧ ଆତ୍ମଲିପି ପ୍ରକାଶିତ ହୋଇ ନ ଥିବାରୁ ଓଡ଼ିଆ ସାହିତ୍ୟ ଓ ସମାଜ ପକ୍ଷରେ ଅତ୍ୟନ୍ତ ଦୁର୍ଭାଗ୍ୟର କଥା । ତେବେ ଏହି ଆତ୍ମଲିପି ସମ୍ପର୍କରେ 'ରାଧାନାଥ ଜୀବନୀରେ' ବିସ୍ତୃତ ସୂଚନା ଏବଂ ତାର କିୟଦଂଶ ଉଦ୍ଧାର କରାଯାଇଛି । ଶ୍ରୀ ଦୁର୍ଗା ଚରଣ ରାୟ ଏହି ପୁସ୍ତକରେ ଲେଖିଛନ୍ତି —ରାଧାନାଥଙ୍କର ଆତ୍ମକଥା ନାମକ ପ୍ରକାଣ୍ଡ ପୁସ୍ତକ ଏପର୍ଯ୍ୟନ୍ତ ଅପ୍ରକାଶିତ ପାଣ୍ଡୁ-ଲିପିରେ ରହିଅଛି ।

(ରାଧାନାଥଙ୍କ ଜୀବନୀ—ପୃ ୪୬୩—୧୯୪୧)

ଏହି ବିଶାଳ ଆତ୍ମକଥାରେ ରାଧାନାଥ ଯାହା ଲେଖିଥିବେ ତାହା କେବଳ ଅନୁମାନ କରିବାର କଥା । ସେ ଥିଲେ କବି, ଶିକ୍ଷାବିତ୍, ଓ ପ୍ରକୃଷ୍ଟ ଜାତୀୟତାବାଦୀ । ଭାରତର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ବହୁ ପ୍ରଧାନ ରାଜ ପୁରୁଷଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ସେ ଆସିଥିଲେ । ଓଡ଼ିଶା ଭୂଖଣ୍ଡରେ ପାଶ୍ଚାତ୍ୟ ସୂର୍ଯ୍ୟର ଉଦୟ ଏବଂ ପ୍ରଚଣ୍ଡ ପ୍ରକାଶ ମଧ୍ୟ ତାଙ୍କର ଜୀବନ କାଳରେ ସମ୍ଭବ ହୋଇଥିଲା । ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ ଯେଉଁ ସାମାଜିକ ଝଡ଼ଝଞ୍ଜା ପ୍ରବାହିତ ହୋଇଥିଲା ଏବଂ ପ୍ରବଳ ପ୍ରତିକ୍ରିୟା ସ୍ୱରୂପ ଶିକ୍ଷା, ସାହିତ୍ୟ ଏବଂ ସମାଜରେ ଯେଉଁ ଅଭାବନୀୟ ପରିବର୍ତ୍ତନ ହୋଇଗଲା ସେ ସବୁର ଟିକିନିଖି ଚିତ୍ର ରାଧାନାଥ ଅବଶ୍ୟ ପ୍ରଦାନ କରିଥିବେ । ପାଶ୍ଚାତ୍ୟ ଶିକ୍ଷା ପ୍ରଚାର କାଳରେ ଏ ଦେଶରେ ଜନସାଧାରଣ ରକ୍ଷଣଶୀଳତାରୁ ବଶବର୍ତ୍ତୀ ହୋଇ କିପରି ଅକୁଣ୍ଠ ସହଯୋଗ କରିପାରୁ ନଥିଲେ, ବିଦେଶୀ ଧର୍ମଯାଜକ ଗଣ କିପରି ଏ ଦେଶରେ ଧର୍ମପ୍ରଚାର କରି ନିଜ ନିଜର ପ୍ରଭାବ ବିସ୍ତାର କରୁଥିଲେ, ନୂତନ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ଲୋକର ସମ୍ପର୍କରେ ଆସି ସମାଜରେ ଯେଉଁ ବୈପ୍ଳବିକ ପରିବର୍ତ୍ତନମାନ ସମ୍ଭବ ହୋଇଥିଲା, ହୁଏତ ସେସବୁର ଅନେକ ବିଚିତ୍ର ଏବଂ ସ୍ୱାଦ୍ୟ ବିବରଣୀ ଏହି "ଆତ୍ମକଥାରେ" ଲିପିବଦ୍ଧ ହୋଇଥିବ । ପୁନଶ୍ଚ ଏହି ନବବିଧାନ ଯୁଗରେ ଓଡ଼ିଶାର ଯେଉଁ ଯୁଗପୁରୁଷଗଣ ନିଜ ନିଜ କ୍ଷେତ୍ରରେ ଅଶେଷ କୀର୍ତ୍ତି ଅର୍ଜନ କରିଯାଇଛନ୍ତି, ତାହା ରାଧାନାଥଙ୍କ ଅଙ୍ଗେ ନିଭେଇବା କଥା । ତେଣୁ ସେମାନଙ୍କ ସମ୍ପର୍କରେ କବିଙ୍କର ନିଜସ୍ୱ ଅନୁଭୂତି ମଧ୍ୟ ଏଥିରେ ପ୍ରଦାନ କରାଯାଇଥିବ । ମାତ୍ର ଆତ୍ମକଥା ପ୍ରକାଶିତ ନହେବା ଫଳରେ ଓଡ଼ିଶାର ସାମାଜିକ ଇତିହାସର ଏକ ଗୌରବମୟ ଅଧ୍ୟାୟ ଏବେ ମଧ୍ୟ ପାଠକ ସଂସାରର

ଅଗୋଚରରେ ରହିଯାଇଅଛି । ଜୀବନୀ ଲେଖକ ସେହି 'ଆତ୍ମକଥା'ରେ ରାଧାନାଥଙ୍କ ଜୀବନର ଅତ୍ୟନ୍ତ ବ୍ୟକ୍ତିଗତ ଜୀବନର ଗୋଟିଏ ଘଟଣା ପ୍ରକାଶ କରିଦେଇଛନ୍ତି । ତହିଁରୁ ରାଧାନାଥଙ୍କର ଲେଖାର ଆତ୍ମମୁଖ୍ୟ ଏବଂ ଦରିଦ୍ରାଞ୍ଚଳର ପ୍ରକାଶନ ସମ୍ପର୍କରେ ଏକଧାରଣା କରାଯାଇପାରେ । ସମସ୍ତେ ସ୍ୱୀକାର କରନ୍ତି ଯେ ରାଧାନାଥଙ୍କ ଚରିତ୍ରର ତୁଳନା ନାହିଁ । ସେ ଥିଲେ ସତ୍ୟର ପୂଜାରୀ । ଜୀବନର ପରିଣତ ବୟସରେ ବଙ୍ଗଦେଶର ହୁଗୁଳି ଜିଲାରେ ପରିଦର୍ଶକ କର୍ମଚାରୀ ଭାବରେ କାର୍ଯ୍ୟ କରୁଥିଲାବେଳେ ଦୈବଦୁର୍ବିପାକରୁ ଯେ ଜଣେ ଶିକ୍ଷିତା ମହିଳାଙ୍କ ପ୍ରରୋଚନାରେ ପଡ଼ିଗଲେ । ତାଙ୍କର ଆକସ୍ମିକ ଭାବରେ ଚରିତ୍ରର ସ୍ଖଳନ ହେଲା । ଦୀର୍ଘ ସାଢ଼େ ଚାରିବର୍ଷ କାଳ ଦାରୁଣ ଅନୁତାପ କରି ପରିଶେଷରେ ସେ ସତ୍ୟକୁ ସଂସାର ସମ୍ମୁଖରେ ପ୍ରକାଶିତ କରିଥିଲେ । ତାହା 'ଆତ୍ମନିବେଦନ' ନାମରେ ପ୍ରକାଶିତ ହୋଇ ପ୍ରଚାରିତ ହୋଇଥିଲା ୧୯୦୭ ଖ୍ରୀଷ୍ଟାବ୍ଦରେ । ଅତଏବ ରାଧାନାଥଙ୍କର "ଆତ୍ମକଥା" ଏହି ଘଟଣାର ବହୁ ପୂର୍ବରୁ ନିଶ୍ଚୟ ଲିଖିତ ହୋଇଥିବ । ଆତ୍ମନିବେଦନରେ କବି ଏକ ସ୍ଥାନରେ ଲେଖିଥିଲେ—"ମୋହୋର ଜୀବନର ୫୬ ବର୍ଷ ପର୍ଯ୍ୟନ୍ତ ମୋହର କୌଣସି ପ୍ରକାର ଗୁରୁତର ସ୍ଖଳନ ଘଟି ନଥିଲା । ୫୩ ବର୍ଷ ବୟସରେ ମୁଁ ବିଦେଶରେ କୌଣସି ବିଦୁଷୀ ମହିଳା ସହିତ ପରିଚିତ ହେଲି । ତାହାଙ୍କର ଅସାଧାରଣ ସାହିତ୍ୟିକ ଉତ୍କର୍ଷରେ ଏବଂ ରଚନାର ପରିପାଟୀରେ ଆକୃଷ୍ଟ ହେଲି ଏବଂ ତାହାଙ୍କ ସହିତ ସୌହାର୍ଦ୍ଦ୍ୟ ହେଲା । ଏ ସମସ୍ତ ସଦ୍‌ଗୁଣ ସତ୍ତ୍ୱେ ତାହାଙ୍କ ଚରିତ୍ର ଅତି ବିକୃତ ଥିଲା, ଏହା ମୁଁ ସେ ସମୟରେ ଜାଣି ନଥିଲି । ତାହାଙ୍କ ବିକୃତ ଚରିତ୍ର ପ୍ରଭାବରେ ମୋର ଚିରସଂଯମ ବ୍ରତ ନଷ୍ଟ ହେଲା । ସମସ୍ତ ସମୟରେ ବିବେକ ଜାଗରିତ ହେଉଥିଲା ସତ୍ୟ, ମାତ୍ର ସେହି କୁହୁକିନୀର କୁହୁକ ଏବଂ ମାୟାଜାଲ ପ୍ରଭାବରେ ବିବେକବାଣୀ ନିଷ୍ଫଳ ହେଉଥିଲା । ଏଣେ ପ୍ରଲୋଭନ ଏବଂ ବିଭୀଷିକା । ପୁଣି ତେଣେ ସଜ୍ଜନଙ୍କ ପ୍ରଣୟ, ଏହିପରି ଉଭୟ ସଙ୍କଟରେ ପଡ଼ି ମୋହୋର ଆତ୍ମା ନିଷ୍କୃତିର ଚେଷ୍ଟା ଅନେକ ସମୟରେ ବିଫଳ ହୋଇଥିଲା । ଏହା ବୋଲି ମୋହୋର ପାପକୁ ଲଘୁ କହୁନାହିଁ । ମୋହୋର ପାପର ଇୟତ୍ତା ନାହିଁ । × × ଚରିତ୍ର ହରାଇ ମୁଁ ମୋହୋର ନିରୀହ ପରିବାର ବର୍ଗର କି ଭୟଙ୍କର ଅନିଷ୍ଟ ସାଧନ କଲି ଏବଂ ସେମାନଙ୍କର ମନସ୍ତାପର କାରଣ ହେଲି, ଏହା ସ୍ମରଣ କରି ମୁଁ ନିରନ୍ତର ଆତ୍ମଗ୍ଲାନିରେ ଦହ୍ୟମାନ ହେଉଅଛି ।

(ରାଧାନାଥ ଜୀବନୀ—ପୃ ୪୭୪-୭୫)

ଏହି ଆତ୍ମଗ୍ଲାନି କି ରୂପ ଧାରଣ କରିଥିଲା ତାହା କବିଙ୍କର ଆତ୍ମକଥା ପାଠ କଲେ ହୃଦୟଙ୍ଗମ ହୋଇଥାଏ । ଆତ୍ମକଥାର କିୟଦଂଶ ନାମକରଣ କରି ଜୀବନୀ ଲେଖକ ରାଧାନାଥଙ୍କର ମନୋଭାବର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଅଛନ୍ତି । ଏଥିରୁ ତାଙ୍କର ସତ୍ୟ ପ୍ରତି ଆଦର, ଚରିତ୍ରବତ୍ତା, ଏବଂ ହୃଦୟର ନିର୍ମଳତା ସମ୍ପର୍କରେ ଅବଧାରଣା କରାଯାଇଥାଏ । ବାସ୍ତବିକ ସେ ଯାହା ଲେଖିଥିଲେ ତାହା ହିଁ ବିଶ୍ୱାସ କରୁଥିଲେ, ସତ୍ୟ ଉପରେ ଗଭୀର ଭାବରେ ଆସ୍ଥାପୋଷଣ କରୁଥିଲେ । ତେଣୁ "Truth at any cost and at any sacrifice" ଉକ୍ତିଟି ତାଙ୍କ ପ୍ରତି ଯଥାର୍ଥରେ ପ୍ରଯୋଜ୍ୟ । ଆତ୍ମକଥାରେ ତାଙ୍କର ସାମୟିକ ଚାରିତ୍ରିକ ସ୍ଖଳନ ସମ୍ପର୍କରେ ସେ ଲେଖିଥିଲେ ଏହିପରି—"ପର ସ୍ତ୍ରୀ ସହ ସମ୍ପୃକ୍ତ ହେଲେ ହେଁ ।

ତାହା ପ୍ରତି ସାମୟିକ ପ୍ରହସନର ଫଳ କି ଦାରୁଣ କି ଭୟଙ୍କର । ମୋହୋର ବୋଧହୁଏ ଏ ସମ୍ବନ୍ଧରେ ଯେ ରୂପ ପୁସ୍ତକ ରଚିତ ହେବା ଉଚିତ, ତାହା ଜଗତରେ ଏ ପର୍ଯ୍ୟନ୍ତ ହୋଇନାହିଁ । ମୋହୋର ଯେ ରୂପ ଯନ୍ତ୍ରଣା ଭୋଗ ହେଉଛି ଏ ରୂପ ଯନ୍ତ୍ରଣା ଜୀବନରେ ଭୋଗ ହୋଇପାରେ କଳ୍ପନାରେ ତାହା ମନେ କରିନାହିଁ । × × × ଅନ୍ୟର ରଚନାର କଥା ନୁହେଁ । ମୋହୋର ନିଜର ରଚନା ଯେତେବେଳେ ମୁଁ ମନେକରେ ସେ ତୁଳସୀ ସ୍ତବକ, ଦରବାର, ମହାଯାତ୍ରା ପ୍ରଭୃତିର ରଚୟିତା, ସେତେବେଳେ ଲଜ୍ଜାରେ ମୁଁ ମ୍ରିୟମାଣ ହୋଇଥାଏ । × × × ମୁହିଁ ଟେକି କାହାରି ସହିତ କଥା କହିବାକୁ ମୋର ପ୍ରବୃତ୍ତି ହୁଏ ନାହିଁ । ଉଲ୍ଲାସ କାହାକୁ କହନ୍ତି ମୁଁ ଏଇ କେତେବର୍ଷ ହେଲା ଜାଣି ନାହିଁ । × × ×

ମୁଁ ଅନେକ ବହି ପଢ଼ିଅଛି । Dante ପଢ଼ିଅଛି । ବାଲ୍ମିକ ପଢ଼ିଅଛି କିନ୍ତୁ ପରଦାରାଭିଗମନର ଫଳ ସ୍ୱରୂପ ଇହ ଜୀବନରେ କି ରୂପ ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ହୁଏ, ଏହାର ସମୁଚିତ ବର୍ଣ୍ଣନା କୌଣସି ପୁସ୍ତକରେ ଦେଖିଲି ନାହିଁ ? ମୁଁ ଯେଉଁ ଦଣ୍ଡ ଯେଉଁ କଷ୍ଟ ଭୋଗ କରୁଅଛି ଏ କଷ୍ଟର ତୁଳନା ଜଗତରେ ନାହିଁ । ହାୟ ବର୍ତ୍ତମାନ ସୁଦ୍ଧା ଲୋକେ ମତେ ଋଷିତୁଲ୍ୟ ବ୍ୟକ୍ତି କହିଥାନ୍ତି ମୁଁ ଯେଉଁଠାକୁ ଯାଇଅଛି ଅଧିକାଂଶ ସ୍ଥଳରେ ଲୋକେ ମତେ ଏହି ରୂପ କହନ୍ତି ଓ କହିଅଛନ୍ତି । ବାସ୍ତବିକ ଜୀବନର ଅଧିକାଂଶ ସମୟରେ ମୋହୋର ଆଚରଣ ଠିକ୍ ସେହିପରି ଥିଲା । ହୁଗୁଳିରେ ଶେଷ ତିନିବର୍ଷ ଭିତରେ ମଧ୍ୟେ ମଧ୍ୟେ ମୋହୋର ଚରିତ୍ର କଳୁଷିତ ହୋଇଗଲା । ହାୟ ! ଜୀବନର ଅନ୍ତିମ ସମୟରେ ଏ ରୂପ ଦୁର୍ଗତି କେତେଜଣଙ୍କର ହୋଇଥାଏ । × × × ମୋହର ଦୃଷ୍ଟାନ୍ତ କୁଦୃଷ୍ଟାନ୍ତ ହେଲେ ହେଁ ଅତ୍ୟନ୍ତ ଶିକ୍ଷାପ୍ରଦ । ଧର୍ମ ପ୍ରବଣମନା ହୋଇ କୁସଂସର୍ଗରେ ଲୋକର କି ରୂପ ପଦସ୍ଖଳନ ଘଟିଥାଏ, ମୋହୋର ଉଦାହରଣରୁ ତାହା ପରିସ୍ଫୁଟ ହୋଇପାରେ । × × × ମନେ କରିଥିଲି, ପେନ୍‌ସନ୍ ନେଇ ଅବସରମତେ ମାତୃଭାଷାର (ଓଡ଼ିଆ ଭାଷାର) ସେବା କରିବି । ଧର୍ମ ଓ ନୀତି ସମ୍ବନ୍ଧରେ ସଂସ୍କୃତରେ କବିତା ଲେଖିବି । ମୋହର ଆଶା କେବଳ ଆଶାରେ ହିଁ ପର୍ଯ୍ୟବସିତ ହେଲା । ହାୟ ! ମୋହୋର ପ୍ରାଣର ପ୍ରିୟତମ ଉତ୍କଳଭାଷା, ମନେ କରିଥିଲି ପେନ୍‌ସନ୍ ନେଇ ତୁମ୍ଭର ସେବା ଏବଂ ଧର୍ମର ସେବାରେ ମନଃପ୍ରାଣ ଢ଼ାଳିଦେବି । କୁହୁକରେ ପଡ଼ି ମୁଁ ଏ ସୁଖରୁ ବଞ୍ଚିତ ହେଲି । × × × ହାୟ ! କି ଦାରୁଣ ଭବିତବ୍ୟ ମୋହୋ ଅଦୃଷ୍ଟରେ ଥିଲା ! 'ଦଶରଥ ବିୟୋଗ' ଭଳି ନୀତିପୂର୍ଣ୍ଣ କବିତା ଲେଖିବାର ୫ । ୬ ମାସ ଉତ୍ତାରୁ ମୁଁ ଏପରି ପ୍ରଲୋଭନରେ ପଡ଼ିଗଲି । ୪ । ୫ ବର୍ଷ ପୂର୍ବେ ପୁତ୍ରର ବିବାହୋପଲକ୍ଷେ ଅନେକ ସମ୍ଭ୍ରାନ୍ତ ଲୋକଙ୍କର ପରାମର୍ଶ, ଉପଦେଶ ଏବଂ ପରିଶେଷରେ ଅନୁନୟ ହେତୁ ଯେଉଁ ଲୋକ ନର୍ତ୍ତକୀର ନୃତ୍ୟରେ ସମ୍ପୂର୍ଣ୍ଣ ଅସମ୍ମତ ହେଲି, ତାହା ଭାଗ୍ୟରେ ପୁଣି ଏହା ଘଟିଗଲା । × ×

ସଂସାର ନିକଟରେ ମୋହୋର ବିନୀତ ନିବେଦନ, କୃତାଞ୍ଜଳିପୁଟରେ ନିବେଦନ, ମୁଁ ନିଜର ସ୍ଖଳନ ସକାଶେ ଆପଣାକୁ ଯେପରି ତିରସ୍କାର, ଯେ ରୂପ ଧିକ୍‌କାର ଦେଉଅଛି, ସଂସାର ଏହା ଅପେକ୍ଷା ଅଧିକ ଦେଇ ପାରିବ ନାହିଁ । ସଂସାର ନିକଟରେ ମୋହୋର କରପୁଟରେ ନିବେଦନ । ମୋହୋର ଦୁଷ୍କର୍ମ ସକାଶେ ମୋହୋର ଲେଖାକୁ ଯେପରି କେହି ଦୋଷ ନ

ହୁଅନ୍ତି । ମୁଁ ଯାହା ଲେଖିଥିଲି, ସରଳ ମନରେ ଲେଖିଥିଲି । ପ୍ରକୃତପକ୍ଷେ ବର୍ତ୍ତମାନ ସେହି ସ୍ତ୍ରୀମାନଙ୍କର ସତ୍ତ୍ୱଗୁଣ ଭକ୍ତ । ସତ୍ତ୍ୱଗୁଣ ପକ୍ଷପାତୀ ମୁଁ ମହାପାପୀ ହେଲେ ହେଁ 'ଧର୍ମ ଏକାସିନା ମହନ୍ତ ପଣିଆ' ଏହା ହିଁ ମୋର ମନର କଥା । ଉପରେ ମତିଭ୍ରମ ହେଲା, ପଦସ୍ଖଳନ ହେଲା, ଦାରୁଣ ପ୍ରଲୋଭନରେ ଓ କୁଚକ୍ରରେ ପଡ଼ିଗଲି ।"

(ରାଧାନାଥ ଜୀବନୀ—ପୃ ୪୬୬-୪୭୧)

ରାଧାନାଥଙ୍କ ସମ୍ପର୍କରେ କେତେଗୁଡ଼ିଏ ଆଲୋଚନା ପୁସ୍ତକ, ଜୀବନଚରିତ ଓ ସ୍ମରଣିକା ପ୍ରକାଶିତ ହୋଇଅଛି । ମାତ୍ର କବିଙ୍କ ସମ୍ପର୍କରେ କେହି ଏହି ପ୍ରକାର ସ୍ବରହିତ ବୈଶିଷ୍ଟ୍ୟର ଆଲୋକପାତ କରି ପାରି ନାହାନ୍ତି । ସେମାନେ ଏପରି ଲେଖିଥିଲେ ପାଠକର ମନରେ ପ୍ରତ୍ୟୟ ଆସିବା ମଧ୍ୟ କଷ୍ଟକର ହୋଇଥାଆନ୍ତା । ଅଥଚ ନିଜ ଭାଷାରେ ରାଧାନାଥ ନିଜ ଜୀବନର ଗୋଟିଏ ମାତ୍ର ଦୁର୍ଘଟଣାର ଯେଉଁ ମାର୍ମିକ ଅଭିବ୍ୟକ୍ତି ପ୍ରଦାନ କରିଛନ୍ତି, ତାହାର ତୁଳନା ନାହିଁ । ଏହା ପାଠ କରୁ କରୁ ରାଧାନାଥ ସ୍ୱୟଂ ଯେପରି ଆଖିଆଗରେ ଦଣ୍ଡାୟମାନ ହୋଇ ପଡ଼ନ୍ତି । ଜଣେ ସାଧାରଣ ସାମାଜିକ ମଣିଷ ହୋଇ ମଧ୍ୟ ସେ କିପରି ଅସାଧାରଣ ଥିଲେ, ତାହି ଏହି ସଂକ୍ଷିପ୍ତ ଆତ୍ମକଥା ପାଠ କଲେ ଅନୁମାନ କରାଯାଇ ପାରିବ । ଅତ୍ୟନ୍ତ ଦୁଃଖର କଥା ଯେ ଏହି 'ଆତ୍ମକଥା' ଏବେ ମଧ୍ୟ ଲୋକଲୋଚନ ଅଗୋଚରରେ ରହିଯାଇଛି । ଏହା ପ୍ରକାଶିତ ହେଲେ ଓଡ଼ିଆ ସାହିତ୍ୟର ଏକ ମହାନ ସମ୍ପଦ ଭାବରେ ଗୃହୀତ ହୁଅନ୍ତା । ଏବଂ କବି ରାଧାନାଥଙ୍କର ଗଦ୍ୟଶୈଳୀ ଓ ମାନବିକ ଧର୍ମର ଉଜ୍ଜ୍ୱଳ ପ୍ରକଟିତ ହୋଇ ଥାନ୍ତା । ଏହି ଆତ୍ମକଥା ପୂର୍ଣ୍ଣାଙ୍ଗରୂପ ଗ୍ରହଣ କରିଥିଲା କି ନାହିଁ, ତାହା କହିବା ସମ୍ଭବ ନୁହେଁ । କାରଣ ସେହି ପ୍ରକାଶିତ 'ଆତ୍ମକଥା'ରେ କବି ଗୋଟିଏ ସ୍ଥାନରେ ଲେଖିଥିଲେ—

"ହାୟ ! ଯେବେ ମୁଁ ପୁଣି ସୁସ୍ଥ ହୋଇ ପାରନ୍ତି ଏବଂ ମୋହୋର ଅଭିଜ୍ଞତା ଯଥାମତ ଲିପିବଦ୍ଧ କରି ପାରନ୍ତି, ତାହା ଖଣ୍ଡିଏ ବୃହତ୍ ଶିକ୍ଷାପ୍ରଦ ଗ୍ରନ୍ଥ ହୁଅନ୍ତା ।"

(ରା—ଜୀବନୀ—ପୃ ୪୬୯)

ଅତ୍ୟନ୍ତ ଦୁର୍ଭାଗ୍ୟର ବିଷୟ ଯେ ଓଡ଼ିଆ ସାହିତ୍ୟର ପ୍ରଥମ ଆତ୍ମଚରିତ ଏହିପରି ଅପମୃତ୍ୟୁର ସମ୍ମୁଖୀନ ହେଲା ବୋଲି ଅନୁମାନ କରିବାକୁ ହେବ ।

ଫକୀରମୋହନ ସେନାପତିଙ୍କ ଆତ୍ମଚରିତ ଓଡ଼ିଆ ସାହିତ୍ୟରେ କାହିଁକି, ଭାରତୀୟ ସାହିତ୍ୟରେ ମଧ୍ୟ ଏକ ଅନବଦ୍ୟ ଗ୍ରନ୍ଥ ବୋଲି ଆଲୋଚକମାନେ ମତ ପ୍ରକାଶ କରିଅଛନ୍ତି । ସମକାଳୀନ ପ୍ରାନ୍ତୀୟ ସାହିତ୍ୟରେ ଫକୀରମୋହନଙ୍କ ଆତ୍ମଚରିତ ପରି ଏକ ଗ୍ରନ୍ଥ ପ୍ରକାଶିତ ହୋଇନାହିଁ । ଫକୀରମୋହନଙ୍କ ଆତ୍ମଚରିତର କେତେକାଂଶ ତତ୍କାଳୀନ ବିଖ୍ୟାତ ସାହିତ୍ୟପତ୍ର 'ସମ୍ବଲପୁର ହିତୈଷିଣୀ' ରେ ୧୯୧୫ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ତତ୍ପରେ ୧୯୧୭ ଖ୍ରୀଷ୍ଟାବ୍ଦରେ ସତ୍ୟବାଦୀ ମାସିକ ପତ୍ରରେ ଆତ୍ମଚରିତର କେତେକାଂଶ

ଫକୀରମୋହନ ପ୍ରକାଶ କରିଥିଲେ । ମାତ୍ର ୧୯୧୮ ମସିହାଠାରୁ ତାହା କ୍ରମଶଃ "ଉତ୍କଳସାହିତ୍ୟ" ପତ୍ରିକାରେ ଆତ୍ମପ୍ରକାଶ କରିଥିଲା । ଦୁଃଖରକଥା ଯେ ଫକୀରମୋହନ ଜୀବିତାବସ୍ଥାରେ ଆତ୍ମଚରିତର ପୁସ୍ତକ ରୂପ ଦେଖିପାରି ନଥିଲେ । ତାହା ୧୯୨୭ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକର 'ସୂଚନା' ଶିରୋନାମାରେ ଲେଖକଙ୍କର ଯେଉଁ ମତାମତ ଦିଆଯାଇଛି, ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ମାତ୍ର ତହିଁରେ କୌଣସି ସମୟ ଉଲ୍ଲେଖ ନ ଥିଲେହେଁ 'ଫକୀରମୋହନ' ମୃତ୍ୟୁ ପୂର୍ବରୁ ଆତ୍ମଚରିତରେ ପ୍ରକାଶ ପାଇଁ ଯେଉଁ ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ, ସେହି ଉଦ୍ଦେଶ୍ୟରେ ଯେ ଲେଖିଥିଲେ—

"ଆଜକୁ ଚାରି ପାଞ୍ଚବର୍ଷ ଗତ ହେଲା । ମୋହୋର କେତେଜଣ ମିତ୍ର ଏବଂ ପୁତ୍ରପ୍ରତିମ ଶିକ୍ଷିତ ଯୁବକ ମୋହୋର ଆତ୍ମ-ଜୀବନ କାହାଣୀ ଲେଖିବା ସକାଶେ ମୋତେ ଅନୁରୋଧ କରି ଆସୁଅଛନ୍ତି । ସେମାନଙ୍କ ଅନୁରୋଧ ଅତିକ୍ରମ କରିବା ମୋ ପକ୍ଷରେ ସହଜସାଧ୍ୟ ନୁହେଁ । ଓଡ଼ିଆ ଭାଷାରେ ଜୀବନଚରିତର ବିଶେଷ ଅଭାବ । ମାତ୍ର ମୋ ତୁଚ୍ଛ ଜୀବନରେ ଜୀବନଚରିତର ଉପଯୋଗୀ ସେପରି ଗୁରୁତର ଉପାଦାନର ମଧ୍ୟ ନିତାନ୍ତ ଅଭାବ । ବିଶେଷରେ ଯେପରି ସଜାଇ ଲେଖିଲେ, ପାଠକ ମହାଶୟଗଣ ଆଗ୍ରହ ସହିତ ପୁସ୍ତକ ପାଠରେ ପ୍ରବୃତ୍ତ ହେବେ ସେପରି ଶକ୍ତି ମୋର ନାହିଁ । ତେବେ ଏହି ଦୁଃସାହସିକ କାର୍ଯ୍ୟରେ ପ୍ରବୃତ୍ତ ହେବାର ଗୋଟିଏ ମାତ୍ର କୈଫିୟତ୍ ଅଛି । ଅଦୂର ଭବିଷ୍ୟତରେ ଅନେକଗୁଡ଼ିଏ ଆତ୍ମଜୀବନୀ ଲେଖକ ଆମ୍ଭମାନଙ୍କର ଏହି ପବିତ୍ର ଜନ୍ମଭୂମିରେ ବିଚରଣ କରିବେ । ଏହା ମୋହର ଧ୍ରୁବ ବିଶ୍ୱାସ । ମୁଁ ସେମାନଙ୍କ ପାଇଁ ମୂଳଦୁଆ ମାତ୍ର ପ୍ରସ୍ତୁତ କରୁଅଛି ।"

ବାସ୍ତବିକ ଫକୀରମୋହନହିଁ ଓଡ଼ିଆ ସାହିତ୍ୟରେ 'ଆତ୍ମଚରିତ'ର ପ୍ରାଣପ୍ରତିଷ୍ଠାତା । ସେ ନିଜର ଯୋଗ୍ୟତା ସମ୍ପର୍କରେ ବିନୋକ୍ତି ପ୍ରକାଶ କରିଥିଲେହେଁ ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ପରେ ସୁଦ୍ଧା ତାଙ୍କର ଆତ୍ମଚରିତ ଅନତିକ୍ରମ୍ୟ ହୋଇ ରହିଅଛି । ଉପନ୍ୟାସ ସୁଲଭ ଶୈଳୀ ଜରିଆରେ ସମକାଳୀନ ଉତ୍କଳୀୟ ସାମାଜିକ ଜୀବନର ରଙ୍ଗମଞ୍ଚରେ ଫକୀରମୋହନଙ୍କ କବିପୁରୁଷ ଯେଉଁ ଭୂମିକା ଗ୍ରହଣ କରିଥିଲା, ତାହାର ଚମତ୍କାର ମୂଲ୍ୟାଙ୍କନ ଏବଂ ରସାପ୍ଲୁତ ବିଶ୍ଳେଷଣ ପାଠ କଲେ ସମକାଳୀନ ଜୀବନର ପ୍ରତିଚ୍ଛବି ଚଳଚିତ୍ର ପରି ଅନୁଭୂତ ହୋଇଥାଏ । ଏପରି ଜୀବନ୍ତ, ସ୍ୱାଭାବିକ ବର୍ଣ୍ଣାଢ୍ୟ ରୂପାଙ୍କନ କ୍ୱଚିତ ଚରିତ ଗ୍ରନ୍ଥରେ ଦେଖିବାକୁ ମିଳିଥାଏ । ତେବେ ଫକୀରମୋହନଙ୍କ ଆତ୍ମଚରିତ ନାମରେ ଯେଉଁ ପୁସ୍ତକ ଏକାଧିକ ସଂସ୍କରଣରେ ପ୍ରକାଶିତ ଓ ପ୍ରଚାରିତ ହୋଇ ଆସୁଅଛି, ତାହା ଯେ ଲେଖକଙ୍କର ମୌଳିକ ଲେଖାର ବିକୃତ ରୂପାନ୍ତର, ଏହା ବୋଧହୁଏ ଅଧିକାଂଶ ଓଡ଼ିଆ ପାଠକ ଜାଣନ୍ତି ନାହିଁ । ଯେଉଁ ସମୟରେ ଆତ୍ମଚରିତ ଓ ଅନ୍ୟାନ୍ୟ ଲେଖା ପ୍ରକାଶିତ ହେଲା ଫକୀରମୋହନଙ୍କ ପୁତ୍ର ମୋହିନୀମୋହନ ପ୍ରକାଶକ ହିସାବରେ ମୂଳ ଲେଖାକୁ କାଟଛାଣ୍ଟ କରି ପ୍ରକାଶ କରିବା ଫଳରେ ତତ୍କାଳୀନ ଉଦୀୟମାନ କବି ଡକ୍ଟର ମାୟାଧର ମାନସିଂ ପ୍ରଖ୍ୟାତ ସହକାର ମାସିକ ସାହିତ୍ୟ ପତ୍ରରେ ପ୍ରତିବାଦ କରି ଲେଖା ପ୍ରକାଶ କରିଥିଲେ । ସେହି ଲେଖାର ଶିରୋନାମା ଥିଲା "ଫକୀର-ମୋହନ"ଙ୍କ ଅଙ୍ଗ କର୍ତ୍ତନ ।

ସେ ଲେଖିଥିଲେ—"ଫକୀରମୋହନଙ୍କର ଚିରପ୍ରିୟ ଉପନ୍ୟାସ ଗୁଡ଼ିକର ପୁନରାଲୋଚନା କରିବାକୁ ଯାଇ ଦେଖୁଛୁ, ସେଗୁଡ଼ିକର ସ୍ୱତ୍ୱାଧିକାରୀ ମୋହିନୀମୋହନ ସେନାପତି ଇଚ୍ଛାମତ ଭାବରେ ଫକୀରମୋହନଙ୍କର ଅଙ୍ଗ କର୍ତ୍ତନ କରିଅଛନ୍ତି । 'ବହୁସ୍ଥାନ ତଳେ ପ୍ରାପ୍ତବୃଦ୍ଧି ପଡ଼ିଥିଲା । ଏବେ ପୁଣି ପଢ଼ି ଦେଖୁଛୁ ଶେଷରେ ୨ମ ।୮ମ ପରିଚ୍ଛେଦ ଆଦୌ ନାହିଁ । ଏଥିରେ ଉପନ୍ୟାସର ଯେ କି ପ୍ରକାର ଅଙ୍ଗହାନି ହୋଇଛି, ତା ଯେ କୌଣସି ପାଠକ ଅନୁଭବ କରିପାରିବେ । ଏଥିରେ ଇନ୍ଦୁମତୀର ଆତ୍ମହତ୍ୟା ଓ ଅନ୍ୟ ପୁରୁଷ ଚରିତ୍ରମାନଙ୍କର ସନ୍ନ୍ୟାସଗ୍ରହଣ ଓ ବୃନ୍ଦାବନରେ ମିଳନ ପ୍ରଭୃତି ଗଳ୍ପର ଉଷ୍ଣୀଶ-ରୂପୀ ଘଟଣାମାନ ସ୍ୱତ୍ୱାଧିକାରୀ କାହିଁକି ଯେ ବାଦ ଦେଉଛନ୍ତି, ବୁଝିପାରିଲୁ ନାହିଁ । କେବଳ ଏ ପୁସ୍ତକରେ ନୁହେଁ, ମୋହିନୀ ବାବୁ ଫକୀରମୋହନଙ୍କର ଅନ୍ୟ ଗ୍ରନ୍ଥମାନଙ୍କରେ ମଧ୍ୟ ଏହିପରି ହସ୍ତକ୍ଷେପ କରିଅଛନ୍ତି । ସେନାପତିଙ୍କ ମୃତ୍ୟୁପରେ ତାଙ୍କ ଆତ୍ମଚରିତ ଉତ୍କଳସାହିତ୍ୟରେ ପୂର୍ଣ୍ଣତଃ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ମୋହିନୀ ବାବୁଙ୍କ ଆତ୍ମଚରିତର ଆତ୍ମାରୁ ଅନେକାଂଶ ନାହିଁ । × × ×

କିନ୍ତୁ ପରଲୋକ ଗତ ଗ୍ରନ୍ଥକର୍ତ୍ତାଙ୍କ ରଚିତ ଗ୍ରନ୍ଥର ଗୋଟିଏ ପଙ୍କ୍ତି ମଧ୍ୟ ଅନ୍ୟଥା କରିବା ବର୍ବରତା ଛଡ଼ା ଆଉ କିଛି ନୁହେଁ ।

(ସହକାର—୧୩ଶ ଭାଗ ୫ମ ସଂଖ୍ୟା—ପୃ ୪୬୩)

ଫକୀରମୋହନଙ୍କ ଆତ୍ମଚରିତ ଏକ କାଳଜୟୀ ଜୀବନକାହାଣୀ । ଓଡ଼ିଆ ସାହିତ୍ୟରେ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ବହୁ ଜୀବନଚରିତ, ଆତ୍ମକାହାଣୀ ଏବଂ କିଛି ଚରିତ ଉପନ୍ୟାସ ଲିଖିତ ହୋଇଥିଲେ ହେଁ ଫକୀରମୋହନଙ୍କ ଜୀବନଚରିତ ପରି ଆଉ କେହି ହୋଇପାରି ନାହାନ୍ତି । ତାହା ଏକାଧାରରେ ଉପନ୍ୟାସ ଓ ଇତିହାସର ଅପୂର୍ବ ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାଏ । ଏ ସମ୍ପର୍କରେ ଅଧ୍ୟାପକ ନଟବର ସାମନ୍ତରାୟଙ୍କର ମତ ଉଲ୍ଲେଖଯୋଗ୍ୟ । ତାଙ୍କ ମତରେ ଆତ୍ମଜୀବନଚରିତ କେବଳ ଫକୀରମୋହନଙ୍କ ଜୀବନଚରିତ ନୁହେଁ । ଊନବିଂଶ ଶତାବ୍ଦୀର ଯେଉଁ ଓଡ଼ିଆ ସମାଜ ଗୋଟିଏ ବୈପ୍ଳବାତ୍ମକ ଚିନ୍ତା-ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା ଓ ଓଡ଼ିଶାର ଅଧିକାଂଶ ଭାଗ ଯେଉଁ ଅନ୍ଧାରମୂଳକ ଗଡ଼ଜାତ ମାହାଲ ଆଧୁନିକ ଜ୍ଞାନାଲୋକରୁ ବଞ୍ଚିତ ହୋଇଥିଲା, ଏ ଜୀବନଚରିତ ସେହି ଓଡ଼ିଆ ଗଣ-ଜୀବନର ସାର୍ଥକ ପ୍ରତିଫଳନ ମାତ୍ର । ଦୀର୍ଘ ଅର୍ଦ୍ଧଶତାବ୍ଦୀର ବହୁ ବିଚିତ୍ର ଅନୁଭୂତି ଓ ବହୁ ଆକର୍ଷଣୀୟ ଘଟଣା ସାଧାରଣ ଏକ ଜୀବନ-ଇତିହାସକୁ ସାହିତ୍ୟ ପଦବୀରେ ଉପସ୍ଥାପନା କରିଯାଇଛନ୍ତି । ଫଳରେ ବ୍ୟକ୍ତିଗତ ଜୀବନ ଜାତୀୟଜୀବନର ଅଙ୍ଗୀଭୂତ ହୋଇ ପାର୍ଶ୍ୱବର୍ତ୍ତୀ ସୃଜନ ଶିଳ୍ପରେ ପରିଣତ ହୋଇ ଯାଇଅଛି । ଗଳ୍ପ ଓ ଉପନ୍ୟାସ ରଚନା ଶେଷ କରି ସ୍ରଷ୍ଟାର ପ୍ରତିଭା ଆତ୍ମଜୀବନୀରେ ହସ୍ତ ଦେଇଥିବାରୁ 'ଜୀବନଚରିତ' ଉପନ୍ୟାସସୁଲଭ ବୈଚିତ୍ର୍ୟରେ ପରିପୂର୍ଣ୍ଣ ହୋଇଉଠିଛି । ଉପନ୍ୟାସ ଜନିତ କଳ୍ପନା ଓ ସୃଷ୍ଟିସୌନ୍ଦର୍ଯ୍ୟ ଏଥିରେ ପ୍ରାଧାନ୍ୟ ଲାଭ କରିଥିବାରୁ ଏହା ସତ୍ୟ ଓ ବାସ୍ତବ ଘଟଣା ସମ୍ବଳିତ ଏକ ମନୋଜ୍ଞ ଉପନ୍ୟାସ ପରି ଅନୁମିତ ହୁଏ । (ଓଡ଼ିଆ ସାହିତ୍ୟର ଇତିହାସ—୧୮୦୩-୧୯୨୦ ପୃ ୩୭୫-୩୭୬)

ସମାଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ ଫକୀରମୋହନ ଥିଲେ ଅଧିକ ସାର୍ଥକ ଜୀବନଶିଳ୍ପୀ । ଏପରି ଘଟଣାବହୁଳ ଏବଂ ଅନୁଭୂତି ବିଚିତ୍ରିତ ଜୀବନ କ୍ୱଚିତ ଦେଖିବାକୁ ମିଳିଥାଏ । ତେଣୁ ନିଜର ଉପନ୍ୟାସ ସୁଲଭ ଭାଷାରେ ଫକୀରମୋହନ ସେହି ଘଟଣାରାଜିକୁ ଚମତ୍କାର ଭାବରେ ଚିତ୍ରିତ କରି ଆତ୍ମଚରିତକୁ ଉପନ୍ୟାସ ପରି ସୁଖପାଠ୍ୟ କରିପାରିଅଛନ୍ତି । ଏଠାରେ ତାଙ୍କର ଆତ୍ମଚରିତର କେତେକ ଘଟଣାର ଛବିଳ ବର୍ଣ୍ଣନା ଉପସ୍ଥାପନ କରା-ଯାଇପାରେ । ୧୯୨୭ ସାଲରେ ଫକୀରମୋହନଙ୍କର ଆତ୍ମଜୀବନଚରିତ ତାଙ୍କର ସୁଯୋଗ୍ୟ ପୁତ୍ର ମୋହିନୀମୋହନ ସେନାପତି ପ୍ରକାଶ କଲେ । ସେତେବେଳେ ଫକୀରମୋହନ ଇହଧାମରେ ନ ଥିଲେ । ତାଙ୍କର ଆତ୍ମଚରିତକୁ ମନଇଚ୍ଛା କାଟି ସେ ପୁସ୍ତକ ଆକାରରେ ପ୍ରକାଶ କଲେ ଏବଂ ଆଜି ପର୍ଯ୍ୟନ୍ତ ଓଡ଼ିଶାର ପାଠକ ସେହି ପ୍ରମାଦପୂର୍ଣ୍ଣ ଆତ୍ମଚରିତକୁ ମୌଳିକ ଲେଖା ମନେକରି ଅଧ୍ୟୟନ କରୁଅଛନ୍ତି ଓ ମୁଗ୍ଧ ହେଉଅଛନ୍ତି । ମାତ୍ର ପ୍ରକୃତରେ ଉତ୍କଳ-ସାହିତ୍ୟରେ ପ୍ରକାଶିତ ମୂଳ ଲେଖା ଏବଂ ପୁସ୍ତକରେ ସ୍ଥାନଲାଭ କରିଥିବା ଲେଖା ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଉଦାହରଣ ସ୍ୱରୂପ ପୁସ୍ତକର ପଞ୍ଚଦଶ ପରିଚ୍ଛେଦ ସହିତ ପତ୍ରିକାରେ ପ୍ରକାଶିତ ଅଂଶ ପାଠକେ ମିଳାଇ ଦେଖିପାରନ୍ତି । ଏହି ଅଧ୍ୟାୟଟି ହେଲା 'ଢେଙ୍କାନାଳରେ ଏସିଷ୍ଟେଣ୍ଟ ମେନେଜରୀ' । ପୁସ୍ତକରେ ଥିବା ଅଧ୍ୟାୟରେ ସେ କିପରି ଏକଶତ ଟଙ୍କା ବେତନରେ ଢେଙ୍କାନାଳରେ ଏସିଷ୍ଟେଣ୍ଟ ମେନେଜର ହେଲେ, ଢେଙ୍କାନାଳରେ ତାଙ୍କର ସାହିତ୍ୟଚର୍ଚ୍ଚା, ତାଙ୍କ ବିରୁଦ୍ଧରେ ବେନାମୀ ଦରଖାସ୍ତ ଏବଂ ପରିଶେଷରେ ଅବସ୍ଥା-ଚକ୍ରରେ ତାଙ୍କର ଇସ୍ତଫା ପ୍ରଦାନ ଇତ୍ୟାଦି ସ୍ଥାନ ପାଇଛି । ମାତ୍ର ମୂଳଲେଖାରେ ଫକୀର-ମୋହନଙ୍କ ଲେଖା ଅତ୍ୟନ୍ତ ଅଭିନବ ଓ ସ୍ୱତନ୍ତ୍ର । ଏହା ପ୍ରକାଶିତ ହୋଇଥିଲା ଉତ୍କଳସାହିତ୍ୟ '୪ ଭାଗ ୧୩୨୭ ସାଲର ୨।୩ ସଂଖ୍ୟାରେ । ପ୍ରକାଶିତ ପୁସ୍ତକରେ କେବଳ ଢେଙ୍କାନାଳର ବର୍ଣ୍ଣନା ସ୍ଥାନ ପାଇଛି । ମାତ୍ର ଆଲୋଚ୍ୟ ଅଧ୍ୟାୟରେ ଫକୀରମୋହନ ଜୀବନ ସ୍ମୃତିରୁ କେତେକ ନୂତନ ଅଭିଜ୍ଞତା ପରିବେଷଣ କରିଛନ୍ତି ।

"ଚିତ୍ୟବସରରେ ଅନ୍ୟଥର ଜାହାଜ ଡୁବି ଆଉ କଷପାନ କଥାଟା ଲେଖି ପକାଏ । ଅସାମଞ୍ଜସ୍ୟ ଓ ଅପ୍ରାସଙ୍ଗିକ ଏହି ଉତ୍କଟ ଦୋଷଯୋଜକ ପାଠକେ ଆପଣ ଏହି ସାମାନ୍ୟ ପୁସ୍ତକ ମଧ୍ୟରେ ଅନେକ ସ୍ଥାନରେ ଭେଟିବେ । ପୂର୍ବେ ଏ ବିଷୟ ଆପଣମାନଙ୍କୁ ଜଣାଇ ଦେଇଅଛୁ । ଖ୍ରୀ: ୧୮୬୭ କି ୬୮ ସାଲରେ କଲିକତା ଯିବାର ପ୍ରଥମ ଥର । ସେ ସମୟରେ ବାଲେଶ୍ୱରବାସୀ ଷ୍ଟିମର ନାମ ମାତ୍ର ଶୁଣିଥିଲେ । ବାଲେଶ୍ୱର ନଦୀକୁ ଇଷ୍ଟିମର ସ୍ପର୍ଶ କରି ନଥିଲା । ବାଲେଶ୍ୱରବାସୀ କଲିକତାକୁ ବଡ଼ ସଡ଼କ ଦାଣ୍ଡରେ ଯା-ଆସ କରୁଥିଲେ । ବାଲେଶ୍ୱର ଠାରୁ କଲିକତା ଛ'ଦିନର ବାଟ । ମୁଁ ଆଉ ଗ୍ରାମବାସୀ ଅନ୍ୟ ତିନିଜଣ ଏପରି ଚାରିଜଣ ମିଶି କଲିକତା ଯାଉଥିଲୁ । ଯିବା ସମୟରେ ଶଗଡ଼ କଚଡ଼ାକଚଡ଼ି ଏବଂ ଚଟିଘରେ ରୋଷାଇ କରି ଖିଆପିଆରେ ବଡ଼ କଷ୍ଟ ହୋଇଥିଲା । ବାହୁଡ଼ିବା ସମୟରେ ସଡ଼କ ଦାଣ୍ଡରେ ନ ଆସି ବାଲେଶ୍ୱର ସହରବାସୀ ଜଣେ ମହାଜନର ଖଣ୍ଡେ ବାଲେଶ୍ୱରୀ ଜାହାଜ ବାଲେଶ୍ୱର ଆସୁଥିବା ଦେଖି ଜାହାଜରେ ଚଢ଼ି ବାଲେଶ୍ୱରକୁ ବାହାରିଲୁ । ଗଙ୍ଗାନଦୀ ଅତିକ୍ରମ କରି ସମୁଦ୍ରରେ ପଡ଼ିବାକୁ ତିନିଦିନ ଗତ ହେଲା । ଚତୁର୍ଥ ଦିନ ସନ୍ଧ୍ୟା ସମୟରେ ଗଙ୍ଗାସାଗର

ବନ୍ଦାଘର ସଲଖା ସଲଖି ଜାହାଜ ନଙ୍ଗର କରି ରହିଲା । ଘୋର ଅନ୍ଧାଅଧି ସମୟରେ ଭୟଙ୍କର ବୃଷ୍ଟି ସହିତ ତୋଫାନ ଆରମ୍ଭ ହେଲା । ଦଶବାର ହାତ ଉଚ୍ଚ ସମୁଦ୍ରରୁ ଢେଉଗୁଡ଼ାକ ଆସି ଜାହାଜକୁ ଖଣ୍ଡେ ସାମାନ୍ୟ ସୋଲପରି ଦୂରକୁ ଫୋପାଡ଼ି ଦେଉଥାଏ । ଯୋଡ଼ାଏ ନଙ୍ଗର ଜାହାଜକୁ ଧରି ରଖିପାରୁ ନଥାଏ, ବେଳେ ବେଳେ ଢେଉ ଉପରକୁ ଜାହାଜ ଖଣ୍ଡି ଉଠି ପୁଣି ଦଶ ବାରହାତ ଗଭୀର ଜଳରେ ପଡ଼ି ଯାଉଥାଏ, ଥରକୁ ଥର ଜାହାଜ ଉପରକୁ ପାଣି ଉଠିଯାଉଥାଏ । ତଳେ ପଡ଼ିଯିବାବେଳେ ଜଣାଯାଏ, ଏହି ଜାହାଜ ରସାତଳକୁ ଗଲା । ଆଉ ଉଠିବ ନାହିଁ । ପର ମୁହୂର୍ତ୍ତରେ ତାଳଗଛ ଉଚ୍ଚ ପ୍ରମାଣ ଜଳ ଉପରକୁ ଖସି ଉଠେ । ସେହି ସମୟରେ ମାଝି, ଖଲାସି, ତଣ୍ଡେଲ ପ୍ରଭୃତି ଜାହାଜର କର୍ମଚାରୀମାନେ ଜାହାଜ ରକ୍ଷା ବିଷୟରେ ନିରାଶ ହୋଇ କେବଳ ହାତଯୋଡ଼ି ଚତ୍କାର କରୁଥାନ୍ତି । ମା' ଖାଡେଶ୍ୱରୀ, ବାବା କଦମରସୁଲ, ହେ ଦଶଆପୀର, ରକ୍ଷାକର, ରକ୍ଷାକର, ପ୍ରାଣ ବଞ୍ଚାଅ । ଆହୁରି ମଧ୍ୟ ଢେର ଦେବଦେବୀ ନାମ ଧରି ରଡ଼ି କରୁଥାନ୍ତି । ବୋଧ କରେ ସେମାନଙ୍କ ଅଭିପ୍ରାୟ ସବୁ ଦେବତାଙ୍କୁ ଡାକିଲେ କେହି ହେଲେ ରକ୍ଷା କରିବେ । ମୁଁ ଜାହାଜ ଉପରେ ଉପରେ ନିଶ୍ଚିନ୍ତ ମନରେ ଛିଡ଼ା ହୋଇ ଜାହାଜର ଗତି ଏବଂ ମାଝୀ ଖଲାସୀମାନଙ୍କ ବ୍ୟାକୁଳ ଅବସ୍ଥା ଦେଖୁଥାଏ, ମନରେ କରୁଥାଏଁ ମରିଗଲେ କୁଆଡ଼େ କପରି ଯିବ । ବର୍ତ୍ତମାନ ଦେଖାଯିବ ଆମ୍ଭମାନଙ୍କ ଗ୍ରାମରୁ ଗୋଟିଏ ପିଲା ମୋ ସାଙ୍ଗରେ ଯାଇଥିଲା । ସେହି ସମୟରେ ମୋ ସମ୍ମୁଖଦେଇ ସେ ଚାଲିଗଲା । ସେ ପିଲାଟିକୁ ଦେଖି ଅସ୍ଥିର ହୋଇପଡ଼ିଲି । ପିଲାଟି ତାର ମାତାର ଏକମାତ୍ର ପୁତ୍ର । କଲିକତା ଯାତ୍ରା ସମୟରେ ତାହାର ମାତା କାନ୍ଦି କାନ୍ଦି ତାହାର ପୁତ୍ରର ହାତ ଧରି ମୋ ହାତରେ ସମର୍ପି ଦେଇଥିଲା । ପିଲାଟାକୁ ବିଦେଶରେ ରକ୍ଷା କରିବା ସକାଶେ ବାରମ୍ବାର ଅଙ୍ଗୀକାର କରିଥିଲି । ସେ କଥାଟା ମନରେ ପଡ଼ିଗଲା । ମନରେ କଲି, ହାୟ ହାୟ ! ପିଲାଟାତ ବର୍ତ୍ତମାନ ମରିଯିବ । ତାହାର ମାଆ ଶୁଣିଲେ କେତେ କାନ୍ଦିବ ! ପ୍ରଭୁଙ୍କ କୃପାରୁ ହଠାତ୍ ତୋଫାନ ବନ୍ଦ ହୋଇଗଲା ।

"ପୃ ୫୪ । ୫୫ ପ୍ରକାଶିତ ପୁସ୍ତକର ଅଷ୍ଟମ ପରିଚ୍ଛେଦରେ" "ବାଲେଶ୍ୱର ମିସନ ସ୍କୁଲରେ କର୍ମ" ବିଷୟ ସ୍ଥାନଲାଭ କରିଛି । ଏହି ପ୍ରସଙ୍ଗଟି ଉତ୍କଳ ସାହିତ୍ୟ ୧୩୧୬ ସାଲ ୨୨ଶ ଭାଗ ୧୦ମ ସଂଖ୍ୟାରେ ପ୍ରକାଶିତ ! ସେହି ଅଧ୍ୟାୟ ଉପସଂହାରରେ ଫକୀର ମୋହନଙ୍କ ଦେହପୀଡ଼ା ଏବଂ ତାଙ୍କର ସ୍ନେହମୟୀ ଠାକୁର ମାଙ୍କ ସେବାଯତ୍ନ ବିଷୟରେ ଉଲ୍ଲେଖ କରାଯାଇଛି । ମାତ୍ର ପତ୍ରିକାରେ ଲେଖକ ଠାକୁର ମା'ଙ୍କୁ ଯେଉଁ କୃତଜ୍ଞତା ଜଣାଇଛନ୍ତି ତାହା ପୁସ୍ତକରେ ସ୍ଥାନ ପାଇନାହିଁ । ଉଦାହରଣସ୍ୱରୂପ ଠାକୁର ମା'ଙ୍କୁ ସ୍ମରଣ କରି ଲେଖକ ଲେଖିଥିଲେ—"ସ୍ୱର୍ଗୀୟା ଠାକୁର ମା ମୋହର ଶୈଶବକାଳରୁ ପରମେଶ୍ୱର ମୋହର ପିତାମାତାଙ୍କୁ ଗ୍ରହଣ କରି ପ୍ରକୃତରେ ତୁମକୁ ମୋ ଜୀବନପାଳିକା ଶିକ୍ଷୟିତ୍ରୀ ସ୍ୱରୂପ ନିଯୁକ୍ତ କରିଥିଲେ । ପ୍ରାଣର ଦରଦ କାହାକୁ ବୋଲନ୍ତି ତାହା କେବଳ ତୁମ୍ଭଠାରୁ ପାଇଥିଲି । ହା କୃତଘ୍ନ ମୁଁ । ଦିନେ ହେଲେ ତୁମ୍ଭର କଷ୍ଟମାତ୍ର ସେବା ଶୁଶ୍ରୂଷା କରିନାହିଁ, ବର୍ତ୍ତମାନ ଅନୁତାପ ବିନା ମୋହର ଅଉ ଉପାୟ କଣ ?" ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପାଦିତ ଉତ୍କଳର ବିଖ୍ୟାତ ସାହିତ୍ୟ ପତ୍ରିକା ସତ୍ୟବାଦୀରେ ୧୩୨୪ ସାଲ ତୃତୀୟ ଖଣ୍ଡ ପ୍ରଥମ ଓ ଦ୍ୱିତୀୟ ସଂଖ୍ୟାରେ ବୃଦ୍ଧ ଫକୀରମୋହନଙ୍କ ଆତ୍ମଜୀବନୀରୁ ଏକ ଅଧ୍ୟାୟ ପ୍ରକାଶିତ ହୋଇଥିଲା ।

ଏହାର ନାମକରଣ ହୋଇଥିଲା "ବାଲେଶ୍ୱରରେ ବାଳିକା ବିଦ୍ୟାଳୟ ସ୍ଥାପନ"। ପ୍ରକାଶିତ ପୁସ୍ତକରେ ସପ୍ତମ ପରିଚ୍ଛେଦରେ ସେହି ପ୍ରସଙ୍ଗ ଅତ୍ୟନ୍ତ କ୍ଷୁଦ୍ର ଆକାରରେ ପ୍ରଦତ୍ତ ହୋଇଥିଲେ ହେଁ ମୂଳ ପ୍ରସଙ୍ଗର ଐତିହାସିକତା ଅଥବା କଳାପୂର୍ଣ୍ଣ ଅଭିବ୍ୟକ୍ତିର ଆଂଶିକ ମାତ୍ର ପରିଦୃଷ୍ଟ ହୁଏ ନାହିଁ। ଅଥଚ ଫକୀରମୋହନ ବାଲେଶ୍ୱରରେ କେବଳ ନୁହନ୍ତି, ଓଡ଼ିଶାରେ ନାପରି ସ୍ତ୍ରୀଶିକ୍ଷା ପ୍ରସାରରେ ଅଗ୍ରଦୂତ ଥିଲେ ଏଥିରୁ ତାହାର ପରିଚୟ ମିଳିଥାଏ। ଦୁର୍ଭାଗ୍ୟର କଥା ଓଡ଼ିଆ ପାଠକମାନେ ଏବେ ମଧ୍ୟ ଆତ୍ମଚରିତ ପାଠ କରି ବିଭ୍ରାନ୍ତ ହେଉଅଛନ୍ତି। ପ୍ରସଙ୍ଗକ୍ରମେ ଫକୀରମୋହନଙ୍କ ନିଜ ଲେଖାର କିୟଦଂଶ ଏଠାରେ ଦିଆଯାଉଛି।

"ଏକା ବସିଲେ କେତେ କଥା ମନରେ ପଡ଼େ। ହଠାତ୍ ଦିନେ ମନ ମଧ୍ୟରେ ଉଦୟ ହେଲା—ଆମ୍ଭମାନଙ୍କ ଘରର ଅଶିକ୍ଷିତା ସ୍ତ୍ରୀମାନେ-ଶିକ୍ଷିତା ସ୍ତ୍ରୀମାନଙ୍କର ପଢ଼ା ଓ କଥା ଶୁଣିଲେ, ସେମାନଙ୍କର ଭଦ୍ର ବ୍ୟବହାର ଦେଖିଲେ—ସିଲାଇ, କାର୍ପେଟବୁଣା ଦେଖିଲେ ସେମାନଙ୍କ ମନରେ ଶିଖିବା ସକାଶ ଶ୍ରଦ୍ଧା ଜାତ ହୋଇପାରେ। ମାତ୍ର ସେପରି ଶିକ୍ଷିତା ସ୍ତ୍ରୀ ବାଲେଶ୍ୱରରେ କାହାନ୍ତି ? ଯେଉଁମାନେ ଅଛନ୍ତି ସେମାନେ ମେମ୍ ଏବଂ ଖ୍ରୀଷ୍ଟାନ୍ ସ୍ତ୍ରୀ। ହିନ୍ଦୁ ସ୍ତ୍ରୀମାନେ ତ ଏମାନଙ୍କ ଘରେ ପୂରିଇବେ ନାହିଁ। ଏକ ବିଛଣାରେ କ'ଣ ବସିବେ ? ମନରେ କାଲି ଆଜ୍ଞା, ପ୍ରଥମେ ମୋ ଘରେ ଚେଷ୍ଟା କରିଯାଉ; ଯଦି ଚଳିପାରେ ତେବେ ପଡ଼ିଶା ଏବଂ କ୍ରମରେ ବନ୍ଧୁବାନ୍ଧବଙ୍କ ଘରେ ଚଳାଇବାକୁ ହେବ।

ଆମ୍ଭମାନଙ୍କ ଘରୁ ପ୍ରାଚୀନା ସ୍ତ୍ରୀସବୁ ଚାଲିଯାଇଛନ୍ତି। ମୋ ବଡ଼ ଭାଇ ପୂର୍ବ ସେରସ୍ତାଦାର ନିତ୍ୟାନନ୍ଦ ସେନାପତିଙ୍କ ସ୍ତ୍ରୀ ଘରର କର୍ତ୍ତ୍ରୀ ଆଉ ଦୁଇଗୋଟି ମୋ ବାଳିକା ସ୍ତ୍ରୀ ଓ ଗୋଟିଏ ଭାଇବୋହୂ। ଏମାନଙ୍କୁ ବୁଝାଇ ଠିକ୍ କଲି। ସାହେବାଣୀ ନାମ ଶୁଣି ଅଛନ୍ତି, କେବେ ଦେଖି ନାହାନ୍ତି। ଦେଖିବାକୁ ମଧ୍ୟ ଇଚ୍ଛା। ମାତ୍ର ମନ ମଧ୍ୟରେ ଭାରି ଭୟ ଥାଏ, କଣ ହେବଟି —ଖ୍ରୀଷ୍ଟାନ୍ ସ୍ତ୍ରୀ ସହିତ ହିନ୍ଦୁ ସ୍ତ୍ରୀ ଏକାସନରେ ବସିବା ଏହା ଗୋଟିଏ ନୂଆ କଥା— କେ ଜାଣେ ହୁକା ବନ୍ଦ ହୋଇଯିବ। ସେ ସମୟ ସମାଜରେ ହୁକା ବନ୍ଦ ଗୋଟାଏ ଦାରୁଣ ଅପମାନର କଥା। ପାଠକ ଜାତି ମଧ୍ୟରେ ଏକଘରିଆ ପରି ବିପତ୍ତିଜନକ।

ଦିନେ ଉପରିଓକ୍ତ ଶ୍ରୀମତୀ ସ୍ମିଥ୍—ଶ୍ରୀମତୀ ହାଲମ୍ ଏବଂ ମାଜିଷ୍ଟ୍ରେଟ୍ ସାହେବଙ୍କ ମେମ୍ ସାହେବଙ୍କ ବଗି ଆମ୍ଭମାନଙ୍କ ଦୁଆର ସମ୍ମୁଖରେ ଉପସ୍ଥିତ। ଘର ଭିତର ବାରନ୍ଦାରେ ବସିବା ସକାଶ ଆସନ ପଡ଼ିଯାଇଥିଲା। ପୂର୍ବ ଶିକ୍ଷାଅନୁସାରେ ଘରର ସ୍ତ୍ରୀମାନେ ଅଭ୍ୟାଗତମାନଙ୍କୁ ନମସ୍କାର କରି ହାତ ଧରିଆଣି ବିଛଣାରେ ବସାଇଲେ। ମେମ୍ ସାହେବମାନେ ଚକାମାଡ଼ି ଆସନରେ ବସିଲା ଉତ୍ତାରେ ସେମାନଙ୍କ ଗଳାରେ ଫୁଲମାଳ ଏବଂ ପାନଖିଲି ନେଇ ଅଭ୍ୟର୍ଥନା କରାଗଲା। ଶ୍ରୀମତୀ ସ୍ମିଥ୍ ପରିଷ୍କାରରେ ରୂପେ ଓଡ଼ିଆ କହି ଜାଣନ୍ତି ଏବଂ ଦେଶୀୟ ସ୍ତ୍ରୀମାନଙ୍କ ରୀତିନୀତି ତାହାଙ୍କୁ ଜଣାଥିଲା। ସେହି କେବଳ ବଡ଼ ବୋହୂ ସହିତ କଥାବାର୍ତ୍ତା କହିବାକୁ ଲାଗିଲେ। ଅନ୍ୟ ତିନି ଯୋଡ଼ିକ—ଏବଂ ହାତେ ହାତେ ଓଢ଼ଣା ଟାଣି ଦେଇ ବହୁ ଯୋଡ଼ିକ ତୁନି ହୋଇ ବସିଥାନ୍ତି। ଅନେକ ସମୟ ପର୍ଯ୍ୟନ୍ତ କଥୋପକଥନ ଉତ୍ତାରେ ବହୁମାନେ କିତାବ ପଢ଼ିବାକୁ ଏବଂ ସିଲାଇ ଶିଖିବାକୁ

ସମ୍ମତ ହେଲାରୁ ଶ୍ରୀମତୀ ସି. ଥି. ଆସି ସେମାନଙ୍କୁ ପଢ଼ାଇବା ସକାଶେ ସମ୍ମତ ହେଲେ । ସର୍ବଶେଷରେ ଶ୍ରୀମତୀ ହ୍ୱାଲାମ୍ ବଡ଼ ବଡ଼ୁକୁ ଅନାଇ କହିଲେ—"ଏଁ ଏଁ ଏଁ ତୁମେ ମୁଣ୍ଡରେ ଲାଲରଙ୍ଗ ଲଗିଯିବ ଯେତେଦିନ ପର୍ଯ୍ୟନ୍ତ ନମରି ଯିବ ତୁମ୍ଭ ସ୍ୱାମୀ' । ସ୍ୱାମୀ ମରିଯିବ ଏକଥା ଶୁଣିବା ହିନ୍ଦୁ ସ୍ତ୍ରୀ ମାନଙ୍କ ପକ୍ଷରେ ନିତାନ୍ତ କଷ୍ଟକର ଏବଂ ଅସହ୍ୟ । ବିଶେଷତେ ବଡ଼ ବଡ଼ୁଟି କଷ୍ଟରେ କୋପନ ସ୍ୱଭାବ ଥିଲେ ଶ୍ରୀମତୀ ହ୍ୱାଲମଙ୍କ କଥା ଶୁଣି କୋଧରେ କମ୍ପି ଉଠିଲେଣି । ମୁଁ ନିକଟରେ ଉପସ୍ଥିତ ଥିଲି । ଗୁଲଆସି ଅନ୍ୟକଥା ପକାଇ ସେ କଥାଟା ଢାଙ୍କିନେଲି । ମେମ୍ ସାହେବମାନେ ମେଲାଣି ଘେନ ଗ୍ରଲଗଲେ । ବଡ଼ବହୁ ଉପ୍ରଙ୍କର ରଡ଼ଟାଏ କରି ଧାଇଁ ଆସି ମେମ୍ ସାହେବଙ୍କ ଉପର ରାଗ ମୋ ଉପରେ ଝାଡ଼ିବାକୁ ଲଗିଲେ । ତେମେ କହୁଥିଲ ପରା ମେମ୍ ସାହେବମାନେ ବଡ଼ ଭଲ ସ୍ତ୍ରୀ, ତେର ଭଲ କଥା କହିବେ ? ହଁ, ସତ ବୁଢ଼ୀ ମେମ୍ଟି ବଡ଼ ଭଲଲୋକ । କ ସୁନ୍ଦର କଥା ଜାଣେ, କେଡ଼େ ସୁନ୍ଦର ସୁନ୍ଦର କଥା କହିଲା । ଏ ଡାହାଣୀ ଦୁଷ୍ଟାଟାକୁ ଘରକୁ ଡାକିଲ କଆଁ ? ଏଟା ନିଶ୍ଚୟ ମଦଖାଏ—ଗୋରୁଖାଏ—ଜୁଆନ ମାଇକିନିଆଟା । ମୁଣ୍ଡରେ ଲୁଗାନାହିଁ, ଦାଣ୍ଡରେ ବୁଲୁଛି—ଏ ବୁଢ଼ୀଙ୍କର ଠିକ୍ ଠିକଣା କ'ଣ ? ଏଗୁଡ଼ାକୁ କ'ଣ ଭଲ ଲୋକେ ଦୁଆର ଚଢ଼େଇ ଦିଅନ୍ତି ? କଥା ନାହିଁ ବାର୍ତ୍ତା ନାହିଁ ଗୁରୁଷ୍ଟରେ ଗାଳି ଦେଇଗଲା ।"

ଅବଶ୍ୟ ନିଜ ଘର ସ୍ତ୍ରୀ ଲୋକମାନଙ୍କୁ ମେମ୍ଙ୍କ ଦ୍ୱାରା ଶିକ୍ଷାଦାନ କରିବାରେ ଫକୀରମୋହନ ସଫଳ ହୋଇଥିଲେ । ଏପରି ଚମତ୍କାର ବର୍ଣ୍ଣନା ପ୍ରକାଶିତ ଆତ୍ମଚରିତ ପୁସ୍ତକରେ ସ୍ଥାନଲାଭ କରିନାହିଁ । ତେବେ ଯେ ଯାହାହେଉ ଊନବିଂଶ ଶତାବ୍ଦୀର ଓଡ଼ିଶାର ଚିତ୍ର ଜାଣିବା ପାଇଁ ଫକୀରମୋହନଙ୍କ ଆତ୍ମଚରିତ ଯଥେଷ୍ଟ ସାହାଯ୍ୟ କରିଥାଏ । ଓଡ଼ିଶାର ଉପକୂଳରେ ନୌବାଣିଜ୍ୟ, ଓଡ଼ିଆଭାଷା ଲୋପ, ଆନ୍ଦୋଳନ, ଲୋକ ହର୍ଷଣ କାରୀ ନଅଙ୍କ ଦୁର୍ଭିକ୍ଷ, ଗଡ଼ଜାତର ଅନ୍ଧାରି ଶାସନ, ସାହେବ କର୍ମଚାରୀ ମାନଙ୍କର ଆଚରଣ ପ୍ରଭୃତି ଅତ୍ୟନ୍ତ ନିପୁଣ ଲେଖନୀରେ ବର୍ଣ୍ଣିତ ହୋଇଅଛି । ଅବଶ୍ୟ ଆତ୍ମଚରିତର ସମ୍ପାଦନା ହେଲେ ଫକୀରମୋହନଙ୍କ ମୂଳ ଲେଖାର ସୌନ୍ଦର୍ଯ୍ୟ ଅଧିକ ଉପଲବ୍ଧି ହୋଇପାରିବ । ତଥାପି ଏହି ଖଣ୍ଡିତ ଆତ୍ମଚରିତ ପାଠ କରି ଅଧ୍ୟାପକ ପ୍ରିୟରଞ୍ଜନ ସେନ୍ ମତ ବ୍ୟକ୍ତ କରି ଥିଲେ ଯେ ତାହା ହେବ ଭାରତୀୟ ସାହିତ୍ୟର ଏକ ଅମୂଲ୍ୟ ସମ୍ପତ୍ତି । ବାସ୍ତବିକ ସମକାଳୀନ ଭାରତୀୟ ସାହିତ୍ୟରେ ଫକୀରମୋହନଙ୍କ ଆତ୍ମଚରିତଦୁର୍ଲଭ କହିଲେ ଚଳେ ।

ଫକୀରମୋହନଙ୍କ ପରେ ଅନେକକାଳ ପର୍ଯ୍ୟନ୍ତ ଆତ୍ମଚରିତ କେହି ଲେଖିବାକୁ ସାହାସ କରି ନଥିଲେ । ତେବେ ତାଙ୍କର କନିଷ୍ଠ ପରବର୍ତ୍ତୀ ସାହିତ୍ୟ ସାଧକ ଗୋପାଳ ଚନ୍ଦ୍ର ପ୍ରହରାଜ ନିଜର ଆତ୍ମଚରିତ ଲେଖି ଯାଇଥିଲେ ବୋଲି ଜଣାଯାଇଛି । ୧୯୭୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ପୁଜ୍ୟପୁଜା ସଂସଦ ଆନୁକୂଲ୍ୟରେ ପ୍ରହରାଜ ପରିକ୍ରମା ପ୍ରକାଶିତ ହେଲା । ଅତ୍ୟନ୍ତ ସୌଭାଗ୍ୟର କଥା ଯେ ଏଥିରେ ପ୍ରହରାଜଙ୍କ ଆତ୍ମଜୀବନୀର କିୟଦଂଶ ସଂଗୃହୀତ ହୋଇ ସ୍ଥାନ ଲାଭ କରିଛି । ସେହି ମୂଲ୍ୟବାନ ରଚନା ସମ୍ପର୍କରେ ପୁଜ୍ୟପୁଜାସଂସଦ ସଭାପତି ଶ୍ରୀ କୁଞ୍ଜବିହାରୀଦାସ ଲେଖିଛନ୍ତି—୧୯୪୧ରେ ଗ୍ରାମରେ ଥିଲା ବେଳେ ତାଙ୍କୁ ଆତ୍ମଜୀବନ ଚରିତ ଲେଖିବାଲାଗି ଅନୁରୋଧ କରିଥିଲି । ସେ ଲେଖିଥିଲେ ପୁଣି ମୋପରି,

କଣେ ଅନାମଧେୟ ସାହିତ୍ୟିକର ଅନୁରୋଧରେ । ଏପରି କହିବା ଅବଶ୍ୟ ଧୃଷ୍ଟତା । ପୂର୍ବସୂରୀ, ସମ୍ବଦର ସମ୍ପାଦକ ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ଶତପଥୀଙ୍କ ପ୍ରଚେଷ୍ଟାରେ ଆତ୍ମଚରିତର ଏକାଂଶ ମାତ୍ର ଆମର ହସ୍ତଗତ ହୋଇଅଛି । ଅନ୍ୟ ଅଂଶମାନ କାହା ପାଖରେ ଥିଲେ ଦେଲେ ଆଗାମୀ ଜନ୍ମଦିନ ପୂର୍ବରୁ ପ୍ରକାଶ କରିବୁ । ଯାହା ହେଉ ଅନୁରୋଧ କରି ଯେତିକି ସାହିତ୍ୟିକ ପୁଣ୍ୟ ଅର୍ଜ୍ଜନ କରିଥିଲି, ତାର ଏକାଂଶ ସଙ୍କଳନ କରି ସଦ୍ୟ ଫଳ ଭୋଗ କଲି—ଏହାହିଁ ମୋର ଆତ୍ମପ୍ରସାଦ । ମୋର ଦୃଢ଼ ବିଶ୍ୱାସ ଥିଲା, ପ୍ରହରାଜଙ୍କ ଆତ୍ମଜୀବନ ଚରିତ ଫକୀରମୋହନ ଆତ୍ମଚରିତରୁ ନିକମା ହେବ ନାହିଁ । ଅବଶ୍ୟ ଶୈଳୀ ବିଭବରେ । ମୋ ଆଶା କେତେଦୂର ଚରିତାର୍ଥ ହୋଇଛି, ବିଦଗ୍ଧ ପାଠକମାନେ ବିଗ୍ଭର କରିବେ ।

(୧୯୭୦—ପ୍ରହରାଜ ପରିକ୍ରମା—ପୃ—୧୭୭)

ଆତ୍ମଜୀବନୀ ଶେଷରେ ମନ୍ତବ୍ୟ ପ୍ରଦାନ କରି ସମ୍ପାଦକ ଲେଖିଥିଲେ-ଏ ଆତ୍ମଜୀବନୀ ଅସମାପ୍ତ । ଶୁଣିବାକୁ ମିଳେ ଅନ୍ୟ ଦୁଇଖଣ୍ଡି ଖାତାରେ ସ୍ୱର୍ଗତ ପ୍ରହରାଜ ତାଙ୍କ ଆତ୍ମଜୀବନୀର ଅବଶେଷାଂଶକୁ ଲିପିବଦ୍ଧ କରିଥିଲେ । କିନ୍ତୁ ତାହା ତାଙ୍କ ମୃତ୍ୟୁ ପରେ ବିପର୍ଯ୍ୟସ୍ତ ହୋଇ କେଉଁଠି କାହା ହାତରେ ପଡ଼ିଯାଇଛି । ୧୯୪୧ ସାଲ ପୂର୍ବରୁ ଏହି ଆତ୍ମଚରିତ ଲେଖା ହୋଇ ନଥିଲା ବୋଲି ଜଣା ପଡ଼ୁଛି । କାରଣ ସେହି ସାଲରେ ଡାଃ. କୃଷ୍ଣଚନ୍ଦ୍ର ଦାସ ପ୍ରହରାଜଙ୍କୁ ଆତ୍ମଚରିତ ଲେଖିବାପାଇଁ ଅନୁରୋଧ କରିଥିଲେ । ସ୍ୱର୍ଗତ ପ୍ରହରାଜ ୧୯୪୫ ସାଲରେ ହେଜାଲା ମାଙ୍ଗ କରି ଥିଲେ । ତେଣୁ ଏହାର ରଚନା କାଳ ୧୯୪୧ରୁ ୧୯୪୫ ମଧ୍ୟରେ । ଯାହାହେଉ ପ୍ରହରାଜଙ୍କ ଜୀବନଚରିତରେ ସାମ୍ପ୍ରତିକ କାଳର ଘଟଣା ବିଶେଷ ଲିପିବଦ୍ଧ ହୋଇନାହିଁ । କାରଣ ତାଙ୍କର ଜୀବନ ସେପରି ଘଟଣା ବହୁଳ ନଥିଲା । ଲୋକଜୀବନ ସହିତ ମିଶିବାପାଇଁ ସେ ବିଶେଷ ସୁଯୋଗ ପାଇ ନଥିଲେ । ସାମାଜିକ ଆନ୍ଦୋଳନରେ ଭାଗନେବାର ସୌଭାଗ୍ୟ ମଧ୍ୟ ତାଙ୍କର ଘଟି ନଥିଲା । ଏହି ଆତ୍ମଚରିତରେ ପ୍ରହରାଜଙ୍କ ବଂଶାନୁଚରିତର ଅନେକ କଥା ଲିପିବଦ୍ଧ ହୋଇଅଛି । ଲେଖାଟି ସମ୍ପୂର୍ଣ୍ଣ ଭାବରେ ବ୍ୟକ୍ତିନିଷ୍ଠ ହୋଇପଡ଼ିଛି । ତାଙ୍କର ସ୍ୱଜନ ଏବଂ ଲୋକମାନଙ୍କ ସମ୍ପର୍କରେ ନିଜର ଅନୁଭୂତି ଲେଖକ ପ୍ରଦାନ କରିଛନ୍ତି । ସେ ଏକ ଜମିଦାର ପରିବାରର ସନ୍ତାନ ଥିବାରୁ ସେକାଳରେ ଜମିଦାରୀ ଚଳଣୀର କିଛି କିଛି ପରିଚୟ ଏହି ଲେଖାରେ ସ୍ଥାନ ପାଇ ଯାଇଛି । ଉଦାହରଣ ସ୍ୱରୂପ ସେ ଲେଖିଥିଲେ ଏହିପରି—

"ନନା ନିଜେ ଆମ ଜମିଦାରୀ ବିଷୟ ବୁଝାସୁଝା କରୁଥିଲେ । କାହାକୁ ମ୍ୟାନେଜର କରି ନଥିଲେ । ତାଙ୍କ ସଙ୍ଗେ ସଦର ଗୁମାସ୍ତା ଚନ୍ଦ୍ରାମଣି ମହାନ୍ତି ଥାଆନ୍ତି । ଜମିଦାରୀର ଭିନ୍ନ ଭିନ୍ନ ତହସିଲ ଇଲକାର ହିସାବ, ରିପୋର୍ଟ, ଚିଠିବଳ ଆସିଲେ । ସେଥିର ଲେଖାପଢ଼ା ସଦର ହିସାବ, କଚେରୀରେ ଚଢ଼ାଇବା, ମଫସଲ ତହସିଲଦାର ମାନଙ୍କଠାକୁ ପଠାଇବା ହୁକୁମମାନଙ୍କର ଲେଖାଲେଖି କାମ ଚନ୍ଦ୍ରାମଣି ମହାନ୍ତି କରୁଥାଆନ୍ତି । ମୋ ପିଲା ଦିନେ ଆମ ଗ୍ରାମୁକରଣ, ସଦର ଗୁମାସ୍ତା ଓ ମଫସଲ ତହସିଲଦାରମାନେ ତାଲପତ୍ର ଲେଖନ ହାତାସାରେ ସବୁଥିର ପ୍ରାୟ ସମସ୍ତ ଲେଖାପଢ଼ି ଚଳାଉଥିଲେ । ଗୋଟିଏ

ଲେଖାଁ ପାଞ୍ଜି ବଡ଼ା ପାଇଁ ତାଳପତ୍ରମାନ ଲେଖନ ମୁଣ୍ଡରେ ଥିବା ଛୁରି ଦ୍ୱାରା କଟା-ହେଉଥିଲା ଓ ପତ୍ରମାନଙ୍କ ମୂଳରୁ ପ୍ରାୟ ଗୃହ ଆଙ୍ଗୁଳ ଛାଡ଼ିଦେଇ ଉକ୍ତ ତାଳପତ୍ରମାନ ସୂଆଳ ବା ମଟୁଆ ଦ୍ୱାରା ଗୁନ୍ଥା ହେଉଥିଲା । ପାଞ୍ଜିବଡ଼ା ବନ୍ଧା ସରିବା ପରେ ଲେଖା ହେବା ପାଇଁ ତାଳପତ୍ରମାନଙ୍କ ଆଗ ପାଖ ଦୁଇଫାଳ ହୋଇ ଚିରା ହେଉଥିଲା ଓ ଏହି ତାଳପତ୍ର ପୃଷ୍ଠାର ଦୁଇପିଠି ଲେଖାହେଉଥିଲା । ଏହିପରି କେତୋଟି ପାଞ୍ଜିବଡ଼ା ସଜଡ଼ା ହୋଇ ମାଦଳ ପରି ରହୁଥିଲା । ଏହି ବନ୍ଧା ହୋଇଥିବା ସୂଆଳକୁ ଧରି ମାଦଳାମାନଙ୍କୁ ଏକ ଜାଗାରୁ ଅନ୍ୟ ଜାଗାକୁ ଓହ୍ଲାଇ କରି ନେଇ ହେଉଥିଲା । ୪ଗୋଟି କାଠ ଖୁଣ୍ଟିରେ ୧ ୨ ହାତ ଉଚ୍ଚରେ ଦେଢ଼ ହାତଲେଖାଁ ଗ୍ରଡ଼ି କାଠର ଆଡ଼ ଧାରଣା ମରା ହେଉଥିଲା ଓ ସେହି ଚଉକୋଣିଆ ଆଡ଼ଧାରଣା ଉପରେ ମର୍ଦ୍ଦଳାକୃତ ପାଞ୍ଜିବଡ଼ାମାନ ସାଇତା ହେଉଥିଲା । କେଉଁ ମାଦଳାରେ କେଉଁ ସନର କଥା ଲେଖାଅଛି ତାହା ଛୋଟ ତାଳପତ୍ରରେ ଟିପାହୋଇ ରହୁଥିଲା । ଏହି ତାଳପତ୍ରକୁ ମାଦଳା ଡୋରରେ ଝୁଲାଇ ଦିଆ ହେଉଥିଲା । ଚିଠିପତ୍ର ଓ ନିମନ୍ତ୍ରଣପତ୍ର ଆଦି ମଧ୍ୟ ତାଳପତ୍ରରେ ଲେଖା ହେଉଥିଲା । କେବଳ ସରକାରୀ ଚିଠିପତ୍ର ପାଇଁ ହରିତାଳି କାଗଜ ( ଖୁବ୍ ବହଳିଆ ଈଷତ୍ ହଳଦିଆ ବା ନେଳିଆ ଦେଶୀ କାଗଜ ) ଦୁଆତ ଓ କଲମ ଆବଶ୍ୟକ ହେଉଥିଲା । ଜଉବ ଭଉଁରିଆ, ଜମାବନ୍ଦି, ଓ୍ୟାସିଲବାକି, ଓ୍ୟାରିଜା, ସିହା, ରୋକଡ଼ ମହାଜନୀ ଓ ଜମିଦାରୀ, ଜମାଖରଚ ହିସାବ, ପାଉଡିପଞ୍ଜା ତାଳପତ୍ରରେ ଲେଖା ହେଉଥିଲା । ଏମନ୍ତକି ଖାତକ ମହାଜନ ଠାରୁ ଋଣ କରି ତାଳପତ୍ରରେ 'ଟେଳା' ଲେଖି ଦେଉଥିଲା । ଭଦ୍ର ଜମିଦାର ଓ କରଣ ବଂଶର ସବୁ ପାଠ ପଢୁଆସିଲା ପିଲାଙ୍କୁ ତାଳପତ୍ରରେ ଲେଖନ ଦ୍ୱାରା ଲେଖିବା ଓ ତାଳପତ୍ର ପାଞ୍ଜି କାଟିବା ପ୍ରଣାଳୀ ଶିକ୍ଷା କରୁଥିଲେ ।" ପୃ ୩୭-୩୮ । ତେବେ ଆଲୋଚ୍ୟ ଜୀବନଚରିତରେ ଶ୍ରୀଯୁକ୍ତ ପ୍ରହରାଜ ନିଜର ସ୍ୱଜନ ଓ ପରିବାରଙ୍କ କଥା କହିବା ସମୟରେ ସେ କାଳର କେତେକ ସାମାଜିକ ଚିତ୍ର ପ୍ରଦାନ କରିଛନ୍ତି । ସେ କାଳର ଇଂରେଜୀ ଶିକ୍ଷିତ ପିଲେ ସହର ବଜାରରେ କୁସଙ୍ଗରେ ରହି କେବେକେବେ ଅସତ୍ ଚରିତ୍ର ହୋଇଯାଉଥିଲେ । ପ୍ରହରାଜଙ୍କ ଭାଗ୍ୟରେ ମଧ୍ୟ ଏପରି ଦୁର୍ଘଟଣା ଘଟିଥିଲା । ସେ ଜମିଦାର ଘର ସନ୍ତାନ ଥିବାରୁ ସ୍ୱଚ୍ଛଳତା ଓ ଆଭିଜାତ୍ୟ ବଶତଃ ବିଳାସରେ ବଢ଼ି ଆସିଥିଲେ । ୧୮୯୧ ରେ ପ୍ରହରାଜ ଏଣ୍ଟ୍ରାନସ ପାଶ କରିଥିଲେ ଏବଂ ଓଡ଼ିଶାରେ ତୃତୀୟସ୍ଥାନ ଅଧିକାର କରିଥିଲେ । ମାତ୍ର ସେ ଫାଷ୍ଟ ଇଅରରେ ପଢ଼ିଲାବେଳେ ଅନେକ ଗୁଣ୍ଡାଏ କୁସଙ୍ଗୀ ଜୁଟିଲେ । ସେମାନଙ୍କ ସଙ୍ଗେ କ୍ରମଶଃ ପଞ୍ଚମକାର ସେବାରେ ତାଙ୍କର ଅଧୋଗତି ହେବାକୁ ଲାଗିଲା ସେ ନାନା ଦୁରାରୋଗ୍ୟ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ, ପିତା ତାଙ୍କର ମୁଖାବଲୋକନ କଲେ ନାହିଁ । ତେଣୁ କିଛି କାଳ ପରେ ତରୁଣ ଗୋପାଳଚନ୍ଦ୍ରଙ୍କର ଅନୁତାପ ଆସିଲା । ତେଣୁ ସେ ଦୃଢ଼ ପ୍ରତିଜ୍ଞ ହେଲେ କୁସଙ୍ଗରୁ ଦୂରରେ ରହିବେ ଏବଂ ଏଫ. ଏ. ପାଶ କରିବେ । ଏହି କାରଣରୁ ସେ ଦୁଇଥର ଏଫ. ଏ. ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିଲେ । ତାଙ୍କର ନିଜ ଭାଷାରେ—

"ପଢ଼ାଘର ଖଞ୍ଜାରେ ସବୁବେଳେ ରହୁଥାଏ । କୁଅମୂଳେ ଗାଧୁଆ ପାଧୁଆ କରୁଥାଏ । ସନ୍ଧ୍ୟାବେଳେ ସଙ୍ଗୀମାନଙ୍କ ଠାକୁ ଜମ୍ମା ବଜାରକୁ ବୁଲିବା କେତେକ୍ ବନ୍ଦ କଲି ।

ସଙ୍ଗୀମାନେ ଆସି ଦାଣ୍ଡଦୁଆରେ ମତେ ଡାକଲେ ଗୃହରମାନେ ମୋର ଉପଦେଶ ଅନୁସାରେ କହୁଥାନ୍ତି ଯେ ବାବୁ ଘରେ ନାହାନ୍ତି । ସଙ୍ଗୀମାନେ ମଧ୍ୟ ପତ୍ରଦ୍ୱାରା, ପତ୍ରବାହକଦ୍ୱାରା ସାକ୍ଷାତକାର ପ୍ରାର୍ଥନୀ ହେଲେ । ସମସ୍ତଙ୍କୁ ଗୃହର ମାନଙ୍କର ଏକମାତ୍ର ଉତ୍ତର 'ବାବୁ ଘରେ ନାହାନ୍ତି' । ମୁଁ ଅକ୍ଳାନ୍ତ ପରିଶ୍ରମ ପୂର୍ବକ ପାଠ୍ୟ ପୁସ୍ତକମାନଙ୍କୁ ଅନ୍ତତଃ ୫।୧୦ ଥର ଆବୃତ୍ତି କଲି । × × × ସେ ବର୍ଷ ମୁଁ ଏଫ୍. ଏ. ପରୀକ୍ଷା ଦେଲି ଓ ଫାଷ୍ଟ ଡିଭିଜନରେ ପ୍ରଥମ ସ୍ଥାନ ଅଧିକାର କରି ପାଶ କଲି ।" (ପୃ ୧୧୩-୧୧୪)

ଏହି ଗୋଟିଏ ଘଟଣାରୁ ପ୍ରହରାଜଙ୍କ ବ୍ୟକ୍ତିତ୍ୱ ଏବଂ ନିଷ୍ଠା ସମ୍ପର୍କରେ ଅନୁମାନ କରାଯାଇପାରେ । ସେ କେବଳ ଦୀର୍ଘ ୩୦ ବର୍ଷ କାଳ କଠୋର ଭାବରେ ନିରବଚ୍ଛିନ୍ନ ସାଧନା କରି ବିଶାଳ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ପ୍ରଣୟନ କରିପାରିନ୍ତି, ରତ୍ନାକର ଦସ୍ୟୁ କେବଳ ବାଲ୍ମୀକି ମହର୍ଷିରେ ପରିଣତ ହୋଇ ପାରନ୍ତି । ଅତ୍ୟନ୍ତ ଦୁଃଖର କଥା ଯେ ପ୍ରହରାଜଙ୍କ ପରବର୍ତ୍ତୀ ଜୀବନ କାହାଣୀ ଜାଣିବା ପାଇଁ ପାଠକର ସୁଯୋଗ ଆସି ନାହିଁ । ପ୍ରକାଶିତ ଜୀବନଚରିତରେ ପ୍ରହରାଜ କେବଳ ୧୮୯୪ ସାଲ ପର୍ଯ୍ୟନ୍ତ ତାଙ୍କର ଅନୁଭୂତ ବ୍ୟକ୍ତ କରିଛନ୍ତି । ମାତ୍ର ଦୀର୍ଘ ୫୦ ବର୍ଷର ପରବର୍ତ୍ତୀ କର୍ମମୁଖର ଜୀବନ ସମ୍ପର୍କରେ ସେ କ'ଣ ଲେଖିଛନ୍ତି ତାହା ଏପର୍ଯ୍ୟନ୍ତ ଜାଣିବାର ଉପାୟ ନାହିଁ । ସୌଭାଗ୍ୟ କ୍ରମେ ଯଦି ତାହା ପ୍ରକାଶିତ ହୁଏ, ତେବେ ଫକୀରମୋହନଙ୍କ ଆତ୍ମଚରିତ ପରି ତାହା ଆଧୁନିକ ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ଉପାଦେୟ ମୂଲ୍ୟାଙ୍କନ ହେବ ବୋଲି ଆଶା କରାଯାଏ ।

ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ଲିଖିତ "ଜାତୀୟ ଜୀବନର ଆତ୍ମପ୍ରକାଶ" ଅନ୍ୟ ଏକ ବିଖ୍ୟାତ ଆତ୍ମଚରିତ । ସ୍ୱାଧୀନତାର ଅବ୍ୟବହିତ ଅବସ୍ଥାରେ ଏହି ପୁସ୍ତକ ପ୍ରକାଶିତ ହୋଇଥିଲା ଏବଂ ଏହାର ଦ୍ୱିତୀୟ ସଂସ୍କରଣ ହୋଇଥିଲା ୧୯୬୭ ସାଲରେ । ପୂର୍ବରୁ ପ୍ରକାଶିତ ଆତ୍ମଚରିତର ଲେଖକ ଥିଲେ ଦୁଇଜଣ ସାହିତ୍ୟିକ । ମାତ୍ର ବର୍ତ୍ତମାନ ଲେଖକ ଗୋବିନ୍ଦଚନ୍ଦ୍ର ଥିଲେ ଜଣେ ଚରମ ବିପ୍ଳବୀ ଏବଂ ରାଜନୈତିକ ଆନ୍ଦୋଳନର କର୍ଣ୍ଣଧାର । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଜଣେ କିଶୋର ଭାବରେ ଦଶପଲ୍ଲା ଗଡ଼ଜାତର ଅନ୍ଧାରମୂଳକରେ ଜୀବନ ଅତିବାହିତ କରି ପରେ ସେ ଜାତୀୟ ଆନ୍ଦୋଳନର ମହାନ ସ୍ରୋତରେ ଝାସ ଦେଇଥିଲେ । ସେକାଳର ଗଡ଼ଜାତ ଅଞ୍ଚଳର ରାଜାପ୍ରଜା ସମ୍ପର୍କ, ଶିକ୍ଷା ବ୍ୟବସ୍ଥା, ଲୋକ ମାନଙ୍କର ଆର୍ଥିକ ଓ ସାମାଜିକ ଅବସ୍ଥା, ତତ୍କାଳୀନ ଆଚାରବିଚାର ଓ ଅନୁଷ୍ଠାନ ଇତ୍ୟାଦି ସମ୍ପର୍କରେ ଅନେକ ରୋମାଞ୍ଚକର ବର୍ଣ୍ଣନା ଏହି ପୁସ୍ତକରୁ ମିଳିଥାଏ । ଜାତୀୟ ଆନ୍ଦୋଳନ ନାଟକରେ ସେ ନିଜେ ଜଣେ ଅଭିନେତା ହୋଇଥିବାରୁ ଓଡ଼ିଶାରେ କିପରି ଜାତୀୟତାର ମହାନସ୍ରୋତ ପ୍ରବାହିତ ହୋଇଥିଲା ତାହାର ବସ୍ତୁନିଷ୍ଠ ବିବରଣୀ ଏହି ଜୀବନଚରିତରୁ ଉପଲବ୍ଧ ହୋଇଥାଏ । ରାଜା ହରିଶ୍ଚନ୍ଦ୍ର ନାଟକ ଦେଖି ମହାତ୍ମା ଗାନ୍ଧିଙ୍କର ବାଲ୍ୟ ଜୀବନରେ ଅପୂର୍ବ ପରିବର୍ତ୍ତନ ଆସିଥିଲା ବୋଲି ଜଣାଯାଏ । ସେହିପରି ଦୁଇଟି ନାଟକ ଦର୍ଶନ କରି ଗୋବିନ୍ଦଚନ୍ଦ୍ରଙ୍କ ଜୀବନରେ ଗଭୀର ଭାବାନ୍ତର ଜାତ ହୋଇଥିଲା । ଏହି ପ୍ରସଙ୍ଗରେ ଲେଖକ ଲେଖିଛନ୍ତି—"ଇତିମଧ୍ୟରେ କନିକ ବାସନ୍ତୀ ଥିଏଟର ପଦରେ ରାଣୀ ଦୁର୍ଗାବତୀ ନାଟକ ଅଭିନୀତ ହୋଇଥିଲା ।

ଆମ ହଷ୍ଟେଲରୁ କେତେକ ଛାତ୍ର ନାଟକ ଦେଖିବାକୁ ଗଲେ, ମୁଁ ମଧ୍ୟ ଗଲି । ରାଣୀ ଦୁର୍ଗାବତୀ ନାଟକ ଦେଖି ଆସିଲା ପରେ ମୋ ମନ ଓ ଚରିତ୍ରରେ ଘୋର ପରିବର୍ତ୍ତନ ସୃଷ୍ଟି ହେଲା । ରାଣୀ ଦୁର୍ଗାବତୀ ନିଜ ରାଜ୍ୟର ସ୍ୱାଧୀନତା ରକ୍ଷା କରିବା ପାଇଁ କିପରି ଲଢ଼େଇ କରିଥିଲେ ସେ କଥା ଅନବରତ ମୋ ଆଖି ଆଗରେ ନାଚି ଉଠିଲା । ମନର ଏହିପରି ଅବସ୍ଥାରେ ଶିବାଜୀଙ୍କ ଚରିତ୍ର ନାଟକଆକାରରେ ଲିଖିତ ଖଣ୍ଡିଏ ପୁସ୍ତକ ପାଠ କରିବାକୁ ପାଇଲି । ଶିବାଜୀ ନାଟକ ପାଠ କରୁ କରୁ ମୋଗଲ ବାଦ୍‌ସାହା ଆଉରଂଗଜେବ, ଶିବାଜୀଙ୍କୁ କିପରି ବନ୍ଦୀଶାଳାରେ ରଖିଲେ ଏ ସେହି ବନ୍ଦୀଶାଳାରୁ ଶିବାଜୀ କୌଶଳ କରି କିପରି ପଳାଇ ଆସିଥିଲେ ଇତ୍ୟାଦି ଘଟଣା ବିଶେଷ ଭାବରେ ମୋର ଚିତ୍ତାକର୍ଷଣ କରିଥିଲା । ଏହି ଦୁଇଟି ଘଟଣା ପରେ ଦେଶପାଇଁ ଏବଂ ଦେଶର ସ୍ୱାଧୀନତା ପାଇଁ କିପରି କିଛି କାର୍ଯ୍ୟ କରନ୍ତି ଏହିପରି ଗୋଟିଏ ଭାବ ମନକୁ ବିଚଳିତ କଲା ।"

(ଜାତୀୟ ଜୀବନର ଆତ୍ମବିକାଶ—୨ୟ ଖ-ପୃ ୭୨)

ସେ ହେଉଛି ୧୯୧୨ ସାଲର କଥା । ଓଡ଼ିଶାରେ ରାଜନୀତିର ଗନ୍ଧ ନଥିଲା । ରାଜନୈତିକ ଜୀବନ ନଥିଲା । ଚାରିଆଡ଼େ କେବଳ ଅନ୍ଧକାର । ଦେଶ ଓ ଜାତି ଆଗରେ କେବଳ ପରାଧୀନତାର ଗ୍ଲାନି । କୌଣସି ଆଦର୍ଶ ସମାଜକୁ ଆଲୋଡ଼ିତ କରିପାରୁ ନଥିଲା । ଅବଶ୍ୟ ସେତେବେଳେ କେତେକ ଉଚ୍ଚଶିକ୍ଷିତ ଯୁବକ ସତ୍ୟବାଦୀ ସ୍କୁଲରେ ସରଳଜୀବନ ଯାପନ କରି ଶିକ୍ଷାଦାନ କରୁଥିବାରୁ ଦେଶର ଦୃଷ୍ଟି ଆକର୍ଷଣ କରିଥିଲେ । ସେମାନଙ୍କର ସମାଜ ସଂସ୍କାର ଦେଶର ତରୁଣ ପ୍ରାଣକୁ ଚହଲାଇ ଦେଉଥିଲା । ପ୍ରକୃତରେ ଶିକ୍ଷକମାନେ ହିଁ ଛାତ୍ର ସମାଜର ଆଲୋକବର୍ତ୍ତିକା । ଶିକ୍ଷକ ଆଦର୍ଶପ୍ରାଣ ହୋଇ ବୈପ୍ଳବିକ ଭୂମିକା ଗ୍ରହଣ କଲେ ଛାତ୍ରମାନେ ମଧ୍ୟ ସେଦିଗରେ ଅଗ୍ରସର ହେବା ସ୍ୱାଭାବିକ । ମିସନ ସ୍କୁଲରେ ଅଧ୍ୟୟନ କାଳରେ ଏହିପରି ଜଣେ ଶିକ୍ଷକଙ୍କର ସମ୍ପର୍କରେ ଗୋବିନ୍ଦଚନ୍ଦ୍ର ଆସିଥିଲେ । ତାଙ୍କରି ସମ୍ପର୍କରେ ସେ ଲେଖିଛନ୍ତି— "ଲକ୍ଷ୍ମୀନାରାୟଣ ବାବୁ ସବୁ ବିଷୟରେ ଛାତ୍ରମାନଙ୍କୁ ଉତ୍ସାହ ଉତ୍ତେଜନା ଦେବା ବ୍ୟକ୍ତି । ସେ ଯାହା ଭାବିଥିବେ ତାହା କରିସିବେ । ସେଥିପାଇଁ ଦୁନିଆ କଣ କହୁଛି ସେଥିକୁ ତାଙ୍କର ଭ୍ରୂକ୍ଷେପ ନଥାଏ । ଏହି ସମୟରେ ସେ ଖଣ୍ଡିଏ ବହି ଲେଖି ଲେଖକ ଜାତିରେ ପାଣ' ବୋଲି ପ୍ରକାଶ କରିଥିଲେ । × × × ଏହି ଦୁଇଜଣ (ଶିକ୍ଷକ) ଲକ୍ଷ୍ମୀନାରାୟଣ ବାବୁ ଏପରି ନିଜକୁ ଜାତିରେ ପାଣ ବୋଲି ଲେଖିଥିବାରୁ ତାହାଙ୍କ ପ୍ରତି ସାମାଜିକ କଠୋର ନିୟମ ପ୍ରୟୋଗ କରିଥିଲେ । ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ହିନ୍ଦୁ ଛାତ୍ର ଯେଉଁମାନେ ମିଳାମିଶା କରନ୍ତି ସେମାନଙ୍କୁ ମଧ୍ୟ ଏହି ଦୁଇ ଶିକ୍ଷକ ଭଲ ଦୃଷ୍ଟିରେ ଦେଖନ୍ତି ନାହିଁ । କିନ୍ତୁ ଆମ୍ଭେମାନେ କିଛି ନମାନି ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ମିଳାମିଶା କରୁ । ଅନେକ ସମୟରେ ସେ ଆସି ଆମ୍ଭର ଏହି ଗୁପ୍ତ ସମାଜରେ ଯୋଗଦେଇ ନାନା କଥା ଆଲୋଚନା କରନ୍ତି । × × × ଲକ୍ଷ୍ମୀନାରାୟଣ ବାବୁଙ୍କୁ ସମସ୍ତେ କହନ୍ତି ପାଗଳା । ତାଙ୍କ ସହିତ ଆମ୍ଭମାନେ ମଧ୍ୟ ଏକପ୍ରକାର ପାଗଳ ।"

( ଜାତୀୟଜୀବନର ଆତ୍ମବିକାଶ-୨ୟ ଖ-ପୃ-୧୩ )

୧୯୧୯ ସାଲର କଥା ହେବ । ଏହି ସମୟରେ ଦଶପଲ୍ଲାରେ ଜନ୍ଦମେଳ ହେଲା ଏବଂ ଅନେକ ଜନଙ୍କୁ ନିର୍ମମ ଭାବରେ ହତ୍ୟା କରାଗଲା । କିନ୍ତୁ ସେତେବେଳେ ଦେଶରେ ସାଧାରଣ ଜୀବନ ନଥିବାରୁ, ରାଜନୈତିକ ଚେତନା ଜାଗ୍ରତ ହୋଇ ନଥିବାରୁ କେହି ଏ ବିଷୟରେ ଆଲୋଚନା କରୁ ନଥିଲେ । ତତ୍କାଳୀନ ସତ୍ୟବାଦୀ ଅନୁଷ୍ଠାନ ଦେଶର ଦୃଷ୍ଟି ଆକର୍ଷଣ କରିଥିଲେ ହେଁ ତାଙ୍କର ଲକ୍ଷ୍ୟ ଥିଲା ଖଣ୍ଡ ବିଖଣ୍ଡିତ ଓଡ଼ିଶାର ଏକତ୍ରୀକରଣ ଏବଂ ଓଡ଼ିଶାର ଶିକ୍ଷାପ୍ରସାର । ଗୋବିନ୍ଦଚନ୍ଦ୍ର ଦଶପଲ୍ଲାରେ ଶାସକମାନଙ୍କ ଅତ୍ୟାଚାର ସମ୍ପର୍କରେ ନ୍ୟାୟ ପାଇବାପାଇଁ ଓଡ଼ିଶାରେ କିଛି ଉପାୟ ଖୋଜି ପାଇଲେ ନାହିଁ । ଶେଷରେ କଲିକତା ପଳାଇଯାଇ ବହୁ ବିଶିଷ୍ଟ ସମ୍ପାଦକ ଓ ସମାଜସେବୀଙ୍କ ସମ୍ପର୍କରେ ଆସି ସାହାଯ୍ୟ ଭିକ୍ଷା କଲେ । ଦୀନବନ୍ଧୁ ଆଣ୍ଡ୍ରୁଜ ଏବଂ ମହାତ୍ମାଗାନ୍ଧୀଙ୍କ ସମ୍ପର୍କରେ ଆସିଥିଲେ । ପ୍ରଥମ ଭାଗର ବିଷୟବସ୍ତୁ ଏଠାରେ ଶେଷ ହୋଇଅଛି । ଦ୍ୱିତୀୟ ଭାଗରେ ଲେଖକ ଗାନ୍ଧିଜୀଙ୍କ ଆଶ୍ରମରେ ଅବସ୍ଥାନ କରିବା ଏବଂ ବହୁ ପରେ ଓଡ଼ିଶାରେ ଆସି ଆଶ୍ରମ ପ୍ରତିଷ୍ଠା କରି ରାଜନୈତିକ ଜୀବନ ଆରମ୍ଭ କରିବା ପ୍ରଭୃତି ବିଶ୍ଳେଷଣ କରାଯାଇଛି । ମୋଟ ଉପରେ ଏହି ଦୁଇଟି ଜୀବନଚରିତରୁ ଓଡ଼ିଶାର ରାଜନୈତିକ ଜୀବନର ବିକାଶକ୍ରମ ସମ୍ପର୍କରେ ଯଥେଷ୍ଟ ଆଲୋକପାତ ହୋଇଥାଏ ।

୧୯୪୯ ସାଲରେ ପ୍ରକାଶିତ ହରେକୃଷ୍ଣ ମହତାବଙ୍କର ଆତ୍ମଚରିତ 'ସାଧନାର ପଥେ' ଓଡ଼ିଆ ସାହିତ୍ୟରେ ଆଉ ଏକ ରାଜନୈତିକ ଇତିବୃତ୍ତର ମନୋଜ୍ଞ ପରିପ୍ରକାଶ । କାରଣ ଶ୍ରୀଯୁକ୍ତ ମହତାବ ଭାରତୀୟ ରାଜନୈତିକ ଆକାଶର ଜଣେ ବିଶିଷ୍ଟ ଜ୍ୟୋତିଷ୍କ । ଭାରତୀୟ ଜାତୀୟ ସଂଗ୍ରାମର ସେ ଜଣେ ପ୍ରମୁଖ ସେନାପତି ଥିଲେ । ତେଣୁ ସାଧନାର ପଥେ କେବଳ ମହତାବଙ୍କ ଜୀବନକାହାଣୀ ନୁହେଁ । ଏହା ଭାରତୀୟ ରାଜନୈତିକ ଚେତନା ଓ ଆନ୍ଦୋଳନର ସମ୍ୟକ ପରିପ୍ରକାଶ କହିଲେ ଅତ୍ୟୁକ୍ତି ହେବନାହିଁ । ଅବଶ୍ୟ ଜୀବନ ଚରିତରେ ବ୍ୟକ୍ତିବିଶେଷ ଚରିତ୍ରାଧାର ପ୍ରଭାବଶାଳୀ ହୋଇଥିବାରୁ ରାଜନୈତିକ ଚରିତ୍ରଗୁଡ଼ିକ ମହତାବ ବାବୁଙ୍କ ଭୂମିକା ଦୃଷ୍ଟିରୁ ଉପସ୍ଥାପିତ ହୋଇଥିବା ସ୍ୱାଭାବିକ । ୧୯୪୭ ସାଲ ପର୍ଯ୍ୟନ୍ତ ଭାରତୀୟ ଜାତୀୟ ସଂଗ୍ରାମରେ ମହତାବ ବାବୁ ଓତଃପ୍ରୋତ ଭାବରେ ଜଡ଼ିତ ଥିବାରୁ 'ସାଧନାର ପଥେ'ର ଆଲୋଚନା ଚଳନ୍ତି ଇତିହାସ ଦୃଷ୍ଟିରୁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ୧୯୪୭ ସାଲରେ ସ୍ୱାଧୀନତାର ସକାଳରେ ଶ୍ରୀଯୁକ୍ତ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରିତ୍ୱ ଗ୍ରହଣ କରି ଦୀର୍ଘକାଳ ପର୍ଯ୍ୟନ୍ତ ଏହି ପ୍ରଦେଶର ବିକାଶ କ୍ଷେତ୍ରରେ ପ୍ରତ୍ୟକ୍ଷ ଓ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଥିଲେ । ତେଣୁ ପରେ ପ୍ରକାଶିତ ତାଙ୍କର ଜୀବନଚରିତର ଦ୍ୱିତୀୟ ଭାଗରେ ତାହାର ସବିଶେଷ ବିବରଣୀ ପ୍ରଦତ୍ତ ହୋଇଅଛି । 'ସାଧନାର ପଥେ' ମହତାବ ବାବୁଙ୍କ ବିଶାଳ ବ୍ୟକ୍ତିତ୍ୱର ଅନ୍ତର୍ନିହିତ ଶକ୍ତି ଓ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିଥାଏ । ଜୀବନଚରିତ ଲେଖିବା ପ୍ରସଙ୍ଗରେ ଲେଖକଙ୍କର ମତ ହେଲା— ପ୍ରତ୍ୟେକର ଜୀବନ ବାସ୍ତବିକ ତା' ପକ୍ଷରେ ଏକ ବିରାଟ ସାଧନା । ସେ ନିଜେ ତାହା ଜାଣି ପାରୁ ବା ନ ପାରୁ, ତାର ନିଜ ଜୀବନଟି ମଧ୍ୟରେ ସେ ନାନା ଅବସ୍ଥାର

ତାଡ଼ନା ଭିତରେ ଗଢ଼ି କରି ତାର ନିର୍ଦ୍ଦିଷ୍ଟ ସାଧନା ସେ ସମ୍ପାଦନ କରୁଛି । ଜୀବନଟି ଜନ୍ମଠାରୁ ଆରମ୍ଭ ହୋଇ ନାହିଁ କି ମୃତ୍ୟୁରେ ତାର ଶେଷ ହୋଇଯାଉ ନାହିଁ । ବହୁ ଅଭିଜ୍ଞତା ଓ ସାଧନା ପ୍ରତ୍ୟେକ ଜୀବନ ବହୁ କାଳରୁ ଅର୍ଜନ କରି ଆସୁଛି ଓ ବହୁକାଳ ପର୍ଯ୍ୟନ୍ତ ସେହିପରି କରି ଚାଲିଥିବ । ଏ ସମସ୍ତ ଭିତରେ କୌଣସି ନିୟମ ଓ ଶୃଙ୍ଖଳା ନିର୍ଣ୍ଣୟ କରିବା ସାଧାରଣ ମନୁଷ୍ୟର କାମ ନୁହେଁ । × × × ପଥ ମଝିରେ ଯେପରି ଆଗକୁ ଯିବାପାଇଁ ବେଳେ ବେଳେ ପଛକୁ ଅନାଇବାକୁ ପଡ଼େ । ସେହିପରି ନିଜ ଜୀବନର ଅତୀତ ଅନୁଭୂତି ମଧ୍ୟ ଆଲୋଚନା କରିବାର ଆବଶ୍ୟକତା ଅଛି । × × × ଏହି ସବୁ ବିଚାରରୁ ମୋର ଜୀବନକାହାଣୀ ଲେଖା ।”

(ସାଧନାର ପଥେ—୧୯୪୯—ପୃ ୧—୨)

ମହତାବ ଥିଲେ ସ୍ୱଭାବତଃ କର୍ମୀ । ନୂତନତ୍ୱର ସନ୍ଧାନରେ ବ୍ରତୀ ହେବା ଥିଲା ତାଙ୍କର ଏକ ନିଶା । ଅଭିନବ ଅନୁଭୂତି ହାସଲ ପାଇଁ ସେ ସର୍ବଦା ଉଦ୍‌ଗ୍ରୀବ ହୋଇ ପଡ଼ୁଥିଲେ । ତେଣୁ କିଶୋର ବୟସରେ ତାଙ୍କର ଉଚ୍ଚଶିକ୍ଷା ପାଇଁ ପରିବାରର ସ୍ୱଜନମାନେ କୁଣ୍ଠିତ ହେଲାବେଳେ ତାଙ୍କର ମନର ପ୍ରତିକ୍ରିୟା ଲକ୍ଷ୍ୟ କରିବାର କଥା । ସେ ଲେଖିଛନ୍ତି—‘ମୋ ଆଗରେ ପ୍ରଶ୍ନ ଥାଏ, ମୁଁ ଜଣେ ସାଧାରଣ ଗୃହସ୍ଥ ହୋଇ ରହିବି ନାଁ ତାଠାରୁ ଆଉ କିଛି ଅଧିକ କରିବି ।      (“— ପୃ ୨୨)

ଏହି କିଛି ଅଧିକ କରିବାର ଅଭିଳାଷ ହିଁ ମହତାବଙ୍କୁ ଘରର ମୁରବୀମାନଙ୍କ ମତ ବିରୁଦ୍ଧରେ ବିଦ୍ରୋହୀ କରିଥିଲା । କାଳକ୍ରମେ ସେହି କ୍ଷୁଦ୍ର ବୀଜ କିପରି ମହାଦ୍ରୁମରେ ପରିଣତ ହୋଇ ପାରିଲା, ଏହା ସାଧନାର ପଥେ’ର ପ୍ରଧାନ ଆବେଦନ ବୋଲି ଅନୁଭବ କରାଯାଇ ପାରିବ । ବିଦ୍ରୋହ ପଥରେ ପଦ ଦେଇ ନଥିଲେ ଗୋଟିଏ କ୍ଷୁଦ୍ର ଜମିଦାରୀରେ ସ୍ୱଚ୍ଛଳ ଜୀବନଯାପନ କରି ସେ ଲୋକଲୋଚନ ଅଗୋଚରରେ ରହିଯାଇଥାନ୍ତେ । ମାତ୍ର ଓଡ଼ିଶା ତଥା ଭାରତର ବିଶାଳ କର୍ମ କ୍ଷେତ୍ରରେ ତାଙ୍କର ନେତୃତ୍ୱର ଭୂମିକା ପାଇଁ ଯେଉଁ ଯୋଗ୍ୟତା ତାହା କିପରି ଧୀରେ ଧୀରେ ହାସଲ କରାଯାଇଥିଲା, ତାହାହିଁ ହେଉଛି ସାଧନାର ପଥେର ବାଣୀ । ଅଥଚ ଏଥିରେ “ମୁଁ” ତ୍ୱର ଆଟୋପ ଅଥବା ବ୍ୟକ୍ତିନିଷ୍ଠ ଆଲୋଚନାକୁ ମୁଖରିତ କରାଯାଇ ନାହିଁ । ଅତ୍ୟନ୍ତ ସୁଖପାଠ୍ୟ ଶୈଳୀରେ ଇତିହାସର ବର୍ଣ୍ଣିଳ ରଙ୍ଗସବୁରେ ମହତାବଙ୍କ ଅଭିନୀତ ଭୂମିକା ସହିତ ବହୁ ଦକ୍ଷ ରାଜନୈତିକ ଶିଳ୍ପୀଙ୍କର ପରିଚୟ ଏଥିରୁ ମିଳିଥାଏ । କଲେଜର ଛାତ୍ର ହିସାବରେ ସେହି ତରୁଣପ୍ରାଣ ନିଜର ପ୍ରଗତିଶୀଳ ବନ୍ଧୁମାନଙ୍କ ସହିତ କିପରି ଆତ୍ମମୁଖ୍ୟ ଗ୍ରହଣ କରିଥିଲା, ତାହା ତାଙ୍କର ଲେଖାରୁହିଁ ଉପଲବ୍ଧି କରାଯାଇପାରେ ।

‘ସାଧାରଣ ଜୀବନଠାରୁ ବାହାରେ କିଛି କରିବାକୁ ହେବ, ଏହାହିଁ ଆମର ଧ୍ୟେୟ ଥିଲା । କଲେଜରେ ଆମେ ପଢ଼ୁଥିଲେ ମଧ୍ୟ କଲେଜ ଜୀବନ ସହିତ ଆମର ସମ୍ପର୍କ ନ ଥିଲା ।

କହିଲେ ଚଳେ । ଆମ ନିଜ ନିଜ ଭିତରେ ଆମେ ନାନା ପ୍ରକାର ରାଜନୈତିକ ଓ ଅନ୍ୟ ବିଷୟ, ଆଲୋଚନା କରୁଥିଲୁଁ । × × × ଆମ୍ଭେମାନେ ନିଜକୁ ନିଜେ Free Thinkers ବା ସ୍ୱାଧୀନ ଚିନ୍ତା କରୁଥିବା ବ୍ୟକ୍ତି ବୋଲି ଭାବୁଥିଲୁ ଓ କହୁଥିଲୁ । ସାଧାରଣଙ୍କ ମତ ଅନୁସାରେ ଚଳିବା ଏକ ପ୍ରକାର ଦୁର୍ବଳତା, ନିଜେ ଯାହା ଠିକ୍ କରିବ ତଦନୁସାରେ ସାଧାରଣଙ୍କ ମତ ଗଠନ କରିବାହିଁ ହେଉଛି ସାମର୍ଥ୍ୟ—ଏହା ଆମର ସିଦ୍ଧାନ୍ତ ଥିଲା ଓ ଏହି ଅନୁସାରେ ଆମେ ମଧ୍ୟ ଚଳୁଥିଲୁଁ । ନିଜକୁ ବୀର କରିବା ପାଇଁ ଅର୍ଥାତ ସାଧାରଣଙ୍କ ମତକୁ ଭୟ ନକରି ନିଜ ମତରେ ସାହାସ ସହକାରେ ଚଳିବାର ଅଭ୍ୟାସ କରିବାପାଇଁ ନାନାପ୍ରକାର ପନ୍ଥା ଆମେ ଅବଲମ୍ବନ କରିଥିଲୁଁ । (ପୃ ୨୫)

ଆଲୋଚ୍ୟ ପୁସ୍ତକରେ ଲୁଣମରା ଆନ୍ଦୋଳନ, ଗାନ୍ଧିଜୀଙ୍କର ଉତ୍କଳ ପଦଯାତ୍ରା, ବିଭିନ୍ନ ସମୟରେ ମନ୍ତ୍ରିମଣ୍ଡଳ ଗଠନ ଜନିତ ଓଡ଼ିଶାର ରାଜନୈତିକ ବାତାବରଣ, ୧୯୪୨ ସାଲରେ 'ଭାରତ ଛାଡ଼' ଆନ୍ଦୋଳନ ଏବଂ ସ୍ୱାଧୀନତା ପ୍ରାପ୍ତି ସମୟର ଐତିହାସିକ ପୃଷ୍ଠଭୂମି ସମ୍ପର୍କରେ ନାନା ବିଚିତ୍ର କାହାଣୀ ଲିପିବଦ୍ଧ ହୋଇଅଛି । ଅବଶ୍ୟ ଲେଖକ ସମ୍ପୂର୍ଣ୍ଣ ଭାବରେ ଏହି ଆନ୍ଦୋଳନ ଗୁଡ଼ିକରେ ଜଡ଼ିତ ହୋଇ ପଡ଼ିଥିବାରୁ ସେ ନିଜେ ନାୟକର ଆସନରେ ଥାଇ ସମସ୍ୟାଟି ଉପସ୍ଥାପନ କରିଅଛନ୍ତି । ଏଥିରେ ସମକାଳୀନ ଅନ୍ୟ ଅଭିନେତାମାନେ କି ମନୋଭାବ ଗ୍ରହଣ କରିଥିବେ, ତାହା ସେମାନଙ୍କ ଅନୁଭୂତ ପାଠ ନ କଲେ ଜାଣିବା ସମ୍ଭବ ନୁହେଁ । ତେବେ ଏ କଥା ସତ୍ୟ ଯେ ଉତ୍କଳ ରାଜନୈତିକ ଜୀବନର ଏହା ଏକ ସାର୍ଥକ ଲିପିବଦ୍ଧ କାହାଣୀ । ଏଥିରେ ଏକ ବିଶାଳ ବ୍ୟକ୍ତିତ୍ୱର ସାଧନାପୂତ ଜୀବନ ପ୍ରଭାବଶାଳୀ ଘଟଣା ଜରିଆରେ ବିବୃତ ହୋଇଅଛି ।

'ପାଣୀ କବିଙ୍କର ଆତ୍ମକାହାଣୀ' ୧୯୫୫ ସାଲରେ ପ୍ରକାଶିତ ହୋଇଥିଲା । ପ୍ରକାଶିତ ହେବାପରେ ଏହି ପୁସ୍ତକର ସପକ୍ଷ ଓ ବିପକ୍ଷରେ ତତ୍କାଳୀନ ସମାଜରେ ନାନା ବିରୋଧ ଓ ସପକ୍ଷ ମତ ପ୍ରକାଶିତ ହୋଇଥିଲା । ପାଣୀକବି ଅତ୍ୟନ୍ତ ଅଶିକ୍ଷିତ । ଅସାମାଜିକ ଏବଂ ଜଣେ ଅଭିଜାତ୍ୟହୀନ ବ୍ୟକ୍ତି ଥିଲେ । ତାଙ୍କର କବିତା ଏବଂ ଗୀତନାଟ୍ୟ ଲୋକ ସମାଜରେ ସୁପ୍ରଶଂସିତ ଓ ଆଦୃତ ହେଲେହେଁ ବ୍ୟକ୍ତିତ୍ୱ ବିଷୟରେ ବୈଷ୍ଣବ ପାଣୀ ସମ୍ମାନିତ ହେବାର ସୁଯୋଗ ନଥିଲା । ପାଣୀକବି ନୈସର୍ଗିକ କବି ପ୍ରତିଭାର ଅଧିକାରୀ ଥିଲେ । ତାଙ୍କ ରଚିତ ଗୀତିନାଟ୍ୟ ଦର୍ଶକ ସମାଜର ମନ ହରଣ କରିବାପାଇଁ ସକ୍ଷମ ହୋଇଥିଲା । ଯେଣୁକରେ ହିଁ କବିଙ୍କ ପ୍ରତି ଜାତିର ସ୍ୱୀକୃତି ସୀମିତ ରହିବା କଥା । ବ୍ୟକ୍ତିଗତ ଜୀବନ ଆଦର୍ଶ ସ୍ଥାନୀୟ, ଅଥବା ଅନୁକରଣଯୋଗ୍ୟ ନ ହେଲେ ସେପରି ଜୀବନ ବୃତ୍ତାନ୍ତର କୌଣସି ମୂଲ୍ୟବୋଧ ନାହିଁ । ନିଜର ଓଡ଼ିଶା ଇତିହାସର ପରିଶିଷ୍ଟରେ ଐତିହାସିକ ହରେକୃଷ୍ଣ ମହତାବ ଓଡ଼ିଆ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ପ୍ରଥମେ ପାଣୀକବିଙ୍କୁ ସ୍ୱୀକୃତି ପ୍ରଦାନ କରିଥିଲେହେଁ 'ଝଙ୍କାର'ର ସମ୍ପାଦକୀୟରେ ପାଣୀକବିଙ୍କ ଆତ୍ମଚରିତକୁ କଠୋର ସମାଲୋଚନା କରିଥିଲେ । ବାସ୍ତବିକ ସାହିତ୍ୟର ଇତିହାସରେ ଜଣେ

ସୁରସିକ କବି ଏବଂ ଗୀତନାଟ୍ୟ ଓ ଯାତ୍ରା, ସୁଆଙ୍ଗର ଲେଖକ ହିସାବରେ ପାଣି କବିଙ୍କର ସ୍ଥାନ ଚିରଦିନ ଅମ୍ଳାନ ହୋଇ ରହିବ । ତାଙ୍କର ଆତ୍ମଚରିତରେ ତତ୍କାଳୀନ ଓଡ଼ିଆର ବହୁ ଚିତ୍ର ପ୍ରଦତ୍ତ ହୋଇଅଛି । ତଥାପି ତହିଁରେ ଏପରି କେତେକ ପ୍ରସଙ୍ଗର ଅବତାରଣା କରାଯାଇଛି, ଯାହା ଶାଳୀନତା ଓ ରୁଚିବୋଧ ଦୃଷ୍ଟିରୁ ଆଦୌ ଉଚିତ ହେବା ଉଚିତ ନଥିଲା । ମୋଟ ଉପରେ ପ୍ରସଙ୍ଗ ନିର୍ବାଚନରେ ବୈଷ୍ଣବ ପାଣି ଜୀବନଚରିତରେ ଉପଯୁକ୍ତ ନ୍ୟାୟ ପ୍ରଦାନ କରିପାରି ନାହାନ୍ତି । ମନେହୁଏ, ଏଥିରେ ଲିଖିତ ବହୁ ପ୍ରସଙ୍ଗ ଅପାଠ୍ୟ, ଅସ୍ୱାସ୍ଥ୍ୟକର ଏବଂ ବ୍ୟକ୍ତିଗତ ଉଚ୍ଛୃଙ୍ଖଳତାର ପରିପ୍ରକୃର ମାତ୍ର । ସମସ୍ତଙ୍କ ଜୀବନରେ ଅଙ୍ଗେ ନିଭାଇବା କାହାଣୀ ଅଛି । ମାତ୍ର ସବୁ କାହାଣୀ ପାଠ୍ୟ ହେବାର କୌଣସି କାରଣ ନାହିଁ । ଏହି ପରିପ୍ରେକ୍ଷିରେ ପାଣିକବିଙ୍କ ସାହିତ୍ୟିକ କୃତି ବନ୍ଦନୀୟ ହେଲେହେଁ ତାଙ୍କର ଜୀବନଚରିତର ମୂଲ୍ୟବୋଧ ସାହିତ୍ୟ ଇତିହାସରେ ଉଚ୍ଚସ୍ଥାନ ଲାଭ କରି ପାରିବ ନାହିଁ ।

ଓଡ଼ିଆ ସାହିତ୍ୟରେ ଏକ ଅନବଦ୍ୟ ଜୀବନଚରିତ ହେଉଛି 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ । "ଏହାର ଲେଖକ ହେଉଛନ୍ତି ସ୍ୱର୍ଗତ ଗୋଦାବରୀଶ ମିଶ୍ର । ୧୯୫୮ ସାଲରେ ଏହା ପ୍ରକାଶିତ ହେବା ପରଠାରୁ ବହୁ ସଂସ୍କରଣ ହେବାଦ୍ୱାରା ଏହି ଚରିତ ପୁସ୍ତକର ଲୋକପ୍ରିୟତା ପ୍ରମାଣିତ ହୋଇଅଛି । ପୁନଶ୍ଚ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଏହି ପୁସ୍ତକକୁ ପୁରସ୍କୃତ କରି ସର୍ବଭାରତୀୟ ସାହିତ୍ୟ କ୍ଷେତ୍ରରେ ଏହାର ସ୍ଥାନ ନିରୂପଣ କରି ଅଛନ୍ତି । ନିଜର ଲେଖା ସମ୍ପର୍କରେ ଆଲୋଚନା କରିବା ପ୍ରସଙ୍ଗରେ ଲେଖକ ଲେଖିଛନ୍ତି—

ଆତ୍ମ-ଜୀବନୀ ଲେଖିବାର ଦାୟିତ୍ୱ ବଡ଼ ବେଶି । ସେ ଦାୟିତ୍ୱ ଅପର ବ୍ୟକ୍ତିଙ୍କ ଜୀବନୀ ଲେଖିବା ଲେଖକଙ୍କର ନାହିଁ । ଅପର ବ୍ୟକ୍ତିଙ୍କ ଜୀବନରେ ନାନା ଘଟଣା ଲେଖକ ନିଜର ବା ପାଠକର ରୁଚି ଅନୁସାରେ ବାଦ ଦେଇ ପାରନ୍ତି । ମୋର ମନେ ହୁଏ, ଅନେକ ଜୀବନୀରେ ଏହିପରି ଅଳ୍ପାଧିକ ଘଟଣା ବାଦ ପଡ଼ିଥିବ । ତାର ଦାୟିତ୍ୱ ଜୀବନୀର ନାୟକଙ୍କ ଉପରକୁ ଯାଏ ନାହିଁ । ନାୟକ ନିଜେ ନିଜର ଜୀବନୀ ଲେଖିବାକୁ ବସିଥିଲେ ସେ ସବୁ ବୋଧହୁଏ ବାଦ ଦେଇ ନଥାନ୍ତେ × × × × ମୋ ଜୀବନରେ ରୋମାଞ୍ଚକର ଘଟଣା ନାହିଁ । ମୋ ଲେଖା ପରିପାଟୀ ଖୁବ୍ ବେଶି ନ ଥିଲେ ମଧ୍ୟ, ସାମାନ୍ୟମାତ୍ର ଯେ ନାହିଁ ତା ତ ନୁହେଁ । କିନ୍ତୁ ତା ବଳରେ ଲେଖି ବସିଲେ ମୁଁ ଉପନ୍ୟାସ ସିନା ଲେଖିବି, ଆତ୍ମ-ଜୀବନୀ ଲେଖିବି ନାହିଁ । ସୁତରାଂ ପରିପାଟୀ ଛାଡ଼ି ମୋତେ କେବଳ ମୋର ସାଧାରଣ ଦୁଃଖୀ ଜୀବନର ଘଟଣାବଳୀ ବର୍ଣ୍ଣନା କରିଯିବାକୁ ହେବ । ଆଉ କେହି ମୋ ଜୀବନୀ ଲେଖିଲେ, ସେ ସବୁ ଘଟଣାରୁ ଅନେକ ପାଣ୍ଡୁ ବାହାର କରି ଦିଅନ୍ତେ । × × × ମୋ ଭଳି ଅନେକ ଦୀନ ଦରିଦ୍ରଲୋକ ସମାଜର ନିମ୍ନସ୍ତରରେ ଅହରହ ଜୀବନ ସଂଗ୍ରାମରେ ଲାଗିଛନ୍ତି । ସେହିମାନଙ୍କ ପକ୍ଷେ ଏ ଲେଖାରୁ ହୁଏତ ଉପାଦାନ ମିଳିବ । ବିଭବଶାଳୀ ଓ ସୁବିଧାଭୋଗୀଙ୍କ ପାଇଁ ଏହା ନୁହେଁ ।"

(ପୃ ୨୩)

କାହିଁକି ସେ ନିଜର ଆତ୍ମଚରିତକୁ ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ ବୋଲି ନାମିତ କଲେ । ସେ ବିଷୟରେ ଲେଖକ କେତେକ ମତ ପ୍ରଦାନ କରିଛନ୍ତି । 'ସେ ହିସାବ ଅନୁସାରେ ମୋର ଜନ୍ମ ପଡ଼ୁଛି ୧୮୮୭ ମସିହାରେ । ୧୯୩୭ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୮୮୭ ରୁ ୧୯୩୭ ମସିହା ପର୍ଯ୍ୟନ୍ତ ପଚାଶ ବର୍ଷ । ଅର୍ଥାତ ଅର୍ଦ୍ଧଶତାବ୍ଦୀର ଘଟଣାମାନଙ୍କରୁ ଯାହା ମୋର ମନେ ଅଛି, ତାହାହିଁ ଏ ଲେଖାରେ ଲିପିବଦ୍ଧ କରିବି । ସେହି ପଚାଶ ବର୍ଷ ମୋର ଦେଶସେବା ଓ ଜନ ସେବା ନିମନ୍ତେ ନିଜ ଜୀବନ ଗଢ଼ିବାର କାଳ । ୧୯୩୭ ମସିହାରେ ପର ଘଟଣାମାନ ମୁଁ ପରେ ସ୍ୱତନ୍ତ୍ର ଭାବରେ ଲେଖିବି ।" (--ପୃ-୪)

ଦୁଃଖର କଥା, ଏହି ଆତ୍ମଚରିତ ଅପୂର୍ଣ୍ଣ ରଖି ଲେଖକ ୧୯୫୬ ମସିହା ଜୁଲାଇ ୨୬ ତାରିଖରେ ଇହଲୀଳା ସମ୍ବରଣ କଲେ । ତେଣୁ ତାଙ୍କର ପରିକଳ୍ପିତ ଆତ୍ମଚରିତର ଦ୍ୱିତୀୟଭାଗ ଲେଖା ହୋଇ ପାରିଲା ନାହିଁ । ଏଥିପାଇଁ ସେ ଯେଉଁ ସୂଚୀପତ୍ର ପ୍ରସ୍ତୁତ କରିଥିଲେ ତାହା ଆଲୋଚ୍ୟ ପୁସ୍ତକରେ ସ୍ଥାନ ଲାଭ କରିଛି । ଏଥିରେ ୧୯୫୧ ସାଲ ପର୍ଯ୍ୟନ୍ତ ଓଡ଼ିଶାର ରାଜନୈତିକ ଜୀବନର ଏକ ସ୍ୱତନ୍ତ୍ର ଦିଗ ସମ୍ପର୍କରେ ପାଠକ ସମାଜ ଜାଣିବାକୁ ପାଇଥାନ୍ତେ ଏବଂ ଓଡ଼ିଆ ସାହିତ୍ୟ ଏକ ମନୋଜ୍ଞ ଜୀବନଚରିତ ଲାଭ କରି ସମୃଦ୍ଧ ହୋଇ ଥାଆନ୍ତା । ପ୍ରଥମ ଭାଗରେ ଲେଖକ ସୂଚୀ ପାଇଁ ୪୫ ଟି ଅଧ୍ୟାୟର ପରିକଳ୍ପନା କରିଥିଲେ ହେଁ ମାତ୍ର ୩୪ଟି ଅଧ୍ୟାୟ ମାତ୍ର ଲେଖିପାରି ପାରିଛନ୍ତି । ଅନ୍ୟ ଅଧ୍ୟାୟଗୁଡିକ ଚିରକାଳ ପାଇଁ ଅଲେଖା ରହିଗଲା ।

ଅପୂର୍ଣ୍ଣ ହେଲେ ମଧ୍ୟ କାହିଁକି ଗୋଦାବରୀଶଙ୍କ ଆତ୍ମଚରିତ ଏପରି ସ୍ମରଣୀୟ ସାହିତ୍ୟିକ କୃତି ହୋଇ ପାରିଲା, ତାହାର ଉତ୍ତର ଅତିଶୟ ସହଜ । ପଣ୍ଡିତ ଗୋଦାବରୀଶ ଏଥିରେ ଆଦୌ ଛଳନା କରି ନାହାଁନ୍ତି । ଏକ ନିରାଡ଼ମ୍ବର ଚରିତ୍ରର ନିରଳସ ଅଭିବ୍ୟକ୍ତି ନିର୍ବିକାର ଚିତ୍ତରେ ଏଥିରେ ଲାଭ କରିଅଛି । ତାଙ୍କର ସ୍ୱଭାବ ସୁଲଭ ଅଟକଳି ଭାଷାରେ ବଙ୍କିମ ଅଭିବ୍ୟକ୍ତି ପାଠକର ମନଛୁଆଁ ହୋଇଯାଏ । ନିଜ ବିଷୟରେ ସେ ଏହିପରି ସଫେଇ ଦେଇଛନ୍ତି —

"ମୁଁ ଯାହା ଲେଖିବି ତାକୁ ପଢ଼ି କେହି ଯେ ଆନନ୍ଦ ବା ଦୁଃଖ ଅନୁଭବ କରିବେ, ସେଥିପାଇଁ ଲେଖିବି ନାହିଁ; ମନୁଷ୍ୟ କପରି ନିଜ ଦୁର୍ବଳତାର ଦାସ, ତାହା ଦେଖାଇବାକୁ ଲେଖିବି ମାତ୍ର । ଏଥିରେ ଏପରି କେତେକ କଥାର ଉଲ୍ଲେଖ ରହିବ, ଯାହାକି କୌଣସି କୌଣସି ବନ୍ଧୁଙ୍କ ଆଗେ ପ୍ରକାଶ କରିବାବେଳେ ମୋ ମୁଣ୍ଡ ନଇଁ ପଡ଼ୁଛି । ଗୁପ୍ତ ଫାଟିଗଲା ପରି ଲାଗିଛି । ତଥାପି ମୁଁ ଅନୁତାପ ବେଳେ ତାହା ନ ଲୁଚାଇ କହୁଛି । × ×

ପୁଣି ମୁଁ କିଛି ନିଜର ଆତ୍ମଜୀବନୀ ଲେଖିବାକୁ ଯାଉନାହିଁ ଯେ, ବ୍ୟକ୍ତିଗତ ବିଷୟ ଉଲ୍ଲେଖ କରିବାକୁ ବାଧ୍ୟ ହେବି । ବାକି ସବୁ ତ ଲେଖିବି । ତେବେ ସେଥିରେ ମଧ୍ୟ

ଯେଉଁଠାରେ ନାମ ପ୍ରକାଶ କରିବାଫଳରେ ଅନ୍ୟ କାହାରି ଅସୁବିଧା ହେବ ବୋଲି ଭାବିବି, ନାମ ପ୍ରକାଶ କରିବି ନାହିଁ । ଯାହା ଯେଉଁମାନଙ୍କ ନାମ ପ୍ରକାଶ କରିବାକୁ ପଡ଼ିବ ବା ଯେଉଁମାନଙ୍କ କଥା ଉଲ୍ଲେଖ ନ କଲେ ବିଷୟ ଅପୂର୍ଣ୍ଣ ଅଥବା ଅସଂଗତ ହେବ, ସେମାନେ ତାଲାଗି ମୋତେ କ୍ଷମା କରିବେ ଆଶା କରୁଛି । × × × ମୁଁ ଆତ୍ମଜୀବନୀ ଲେଖୁଥିଲେ, ମୋ ନିଜ ବ୍ୟକ୍ତିଗତ କଥାଗୁଡ଼ାକ ପ୍ରକାଶ କରିବାର ଦାୟିତ୍ୱ ସେତିକି ତୁଲନ୍ତା, ଅନ୍ୟ କାହାରି ବ୍ୟକ୍ତିଗତ କଥା ଦୂରେ ଥାଉ, ସାଧାରଣ ବିଷୟମାନ ସୁଦ୍ଧା ପ୍ରକାଶ ନ କରିବା ନିମନ୍ତେ ସେତିକି ଅବକାଶ ମିଳନ୍ତା; ମାତ୍ର ମୋ ନିଜ ଜୀବନଟାକୁ ମୁଁ ଗୋଟାଏ ଆତ୍ମଜୀବନୀର ଉପଯୁକ୍ତ ମଣୁନାହିଁ ।”

(ପୃ ୬-୭)

ବାସ୍ତବରେ ଗୋଦାବରୀଶଙ୍କ ଜୀବନୀରେ ଏକ ଅନାସକ୍ତ ନିର୍ଲିପ୍ତ ବ୍ୟକ୍ତିତ୍ୱର ଜୀବନବ୍ୟାପୀ ସାଧନା ରୂପାୟିତ । ତେଣୁ ଏଥିରେ ଗୋଦାବରୀଶଙ୍କ ଜୀବନଚରିତ ଅପେକ୍ଷା ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଓଡ଼ିଶାର ନାଟକୀୟ ପରିବର୍ତ୍ତନର କାହାଣୀ ଲିପିବଦ୍ଧ ହୋଇଅଛି । ସେଥିପାଇଁ ଏହି ଜୀବନଚରିତ ଏତେ ସ୍ୱାଦ୍ୟ ଏବଂ ରସମୟ । ଏଥିରେ ବାଗାଡ଼ମ୍ବର ଏବଂ ଆତ୍ମପ୍ରଶଂସାର ପ୍ରୟାସ ହୋଇ ନାହିଁ । ତେଣୁ ପାଠକର ରୁଚିବୋଧକୁ ଆଘାତ କରିବାର ଅବକାଶ ଏଥିରେ ଅଳ୍ପ । ଗୋଦାବରୀଶଙ୍କ ଅତୁଳ ଶୈଳୀର ଗୋଟିଏ ଉଦାହରଣ ଏଠାରେ ଦେଲେ ଅପ୍ରାସଙ୍ଗିକ ହେବନାହିଁ । ଭାତ ହାଣ୍ଡିରୁ ଗୋଟିଏ ଚିପିଲି ପରି ତାହା ସମଗ୍ର ପୁସ୍ତକ ପ୍ରତି ପ୍ରଯୋଜ୍ୟ ହୋଇପାରେ । ସେ ନିଜର ଭବିଷ୍ୟତ ଜୀବନ ସମ୍ପର୍କରେ ପିତାଙ୍କ ଅଭିଳାଷ ବିଷୟଟି ଉଲ୍ଲେଖ କରିଥିଲେ ଏହିପରି :—

‘ମୋ ପିତାଙ୍କ ଇଚ୍ଛା ଥିଲା ଯେ, ମୁଁ ଇଂରେଜୀ ପଢ଼ି ଓକିଲ ହୋଇ ପୁରୀରେ ଓକିଲାତି କରିବି । ସେ ସମୟରେ ହରିହର ମିଶ୍ରେ ପୁରୀର ଏକମାତ୍ର ଓଡ଼ିଆ ଓକିଲ । ସେ ମୋ ପିତାଙ୍କର ଲେଖାଯୋଖା ଭାଇ । ପରେ ମୁଁ ବୁଝିଲି ଯେ ସେ ଭାଇ ସମ୍ପର୍କରେ ଲେଖା ଅପେକ୍ଷା ଯୋଖା ଭାଗଟା ଅଧିକ । ସେ ମୋ ପିତାଙ୍କ ବୋଉର ଭାଇଙ୍କ ଶଳାର ମାମୁଁ ପୁଅ ଭାଇର ପିଉସୀ ଝିଅ ଭଉଣୀର ପୁଅ । ସେ ବୋଧହୁଏ କୌଣସି ପ୍ରକାର ଓକିଲାତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ନଥିଲେ । ସେ କାଳର ଓକିଲମାନଙ୍କୁ କୌତୁକରେ ‘ରୁ ହେଲୁ ଓକିଲ କୁହା ଯାଉଥିଲା ।—

(ପୃ ୨୩)

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାର ଅବସ୍ଥା କିପରି ଥିଲା । ଓଡ଼ିଶାରେ ଶିକ୍ଷିତ ଲୋକେ କିପରି ଅବସ୍ଥାରେ ଥିଲେ, ତାର ପରିଚୟ ଅତ୍ୟନ୍ତ ଚମତ୍କାର ଭାଷାରେ ବର୍ଣ୍ଣନା କରାଯାଇଛି । ଆଧୁନିକ କାଳର ପରିବର୍ତ୍ତିତ ଅବସ୍ଥାରେ ବେଳେବେଳେ ଏ କଥା ବିଶ୍ୱାସ କରିବାକୁ ଇଚ୍ଛା ହୁଏ ନାହିଁ । ମାତ୍ର ତାହାହିଁ ଥିଲା ଦିନେ ନିବିଡ ବାସ୍ତବତା ।

"ମୁଁ ପୁରୀରେ ପଢ଼ିବାକୁ ଯିବା ପୂର୍ବରୁ ପିତାଙ୍କ ସଙ୍ଗେ ଦୁଇଥର ସେଠାକୁ ଯାଇଥିଲି । ପ୍ରଥମ ଥର ଯିବା ବେଳକୁ ରେଳରାସ୍ତା ଦକ୍ଷିଣଆଡ଼ୁ ମୋଟେ ବାଲୁଗାଁ ପର୍ଯ୍ୟନ୍ତ ପଡ଼ି ଆସି ଆଗକୁ ତିଆରି ହେଉଥାଏ । ସୁତରାଂ ସେତେବେଳେ ଡଙ୍ଗାରେ ଚିଲିକା ପାରହୋଇ ଯିବାକୁ ପଡ଼ୁଥାଏ । ନୂଆ ରେଳରାସ୍ତାରେ ପଡ଼ିବା ନିମନ୍ତେ ଗୋଡ଼ିପଥର ଆଦି ଯେଉଁ ଖୋଲାମାଲ-ଡବାରେ ବୁହାହୁଏ, ସେଥିରେ ବସି ମାଇଲେ ଦୁଇ ମାଇଲ ଯିବାର ମଜା ପାଇଁ ପ୍ରତିଦିନ ଶହ ଶହ ଲୋକ ବାଲୁଗାଁରେ ଭିଡ଼ ହୁଅନ୍ତି । ପଇସାଏ ବା ଦୁଇପଇସା ଦେଇ ଖୋଲା ଡବାରେ ଯାଆନ୍ତି ଓ ଫେରିଲା ବେଳକୁ ଚାଲି ଚାଲି ଆସନ୍ତି । ଯେଉଁମାନଙ୍କ ଭାଗ୍ୟରେ ତାହା ଯୁଟେ, ସେମାନେ ଗ୍ରାମରେ ଲୋକମାନଙ୍କୁ ଆଠ ଦଶଦିନ ପର୍ଯ୍ୟନ୍ତ ନିଜ ନିଜ ଅନୁଭୂତି ଶୁଣାଇବାରେ ବ୍ୟସ୍ତ ରହନ୍ତି ।

ରେଳରାସ୍ତା ତିଆରି ହେବା ସମୟରେ କେତେକଙ୍କର ଆମୋଦ ଯେପରି ହୋଇଛି, ପ୍ରମାଦ ମଧ୍ୟ ସେହିପରି ଘଟିଛି । ଅନେକଙ୍କ ଧାନ ଜମି ଉପରେ, ବିନା କ୍ଷତି ପୂରଣରେ ଜବରଦସ୍ତ ରାସ୍ତା ପକାଇ ଦିଆଗଲା । କେହି କେହି ସେଥିରେ ସର୍ବସ୍ୱାନ୍ତ ହୋଇ ମୁଣ୍ଡରେ ହାତଦେଇ ବସିଲେ । କାଗଜପତ୍ରରେ ହୁଏତ କ୍ଷତିପୂରଣ ମଞ୍ଜୁର ହୋଇଥିବ । ମାତ୍ର କ୍ଷତିଗ୍ରସ୍ତ ହେଉଥିବା ଲୋକଙ୍କ ହାତକୁ ଆସୁ ନଥିଲା । ବରଂ ରାସ୍ତା ତିଆରି କରିବାରେ ନିଯୁକ୍ତ ଥିବା କର୍ମଚାରୀଙ୍କ ଅଣ୍ଟାଗୁଞ୍ଜା ମିଳୁଥିଲା । ସେତେବେଳେ ଚାରିଆଡ଼ ଅନ୍ଧାର । ପ୍ରତିବାଦ ନିମନ୍ତେ କାହାରି ଛାତିରେ ବଳ ନଥିଲା । ସରକାରୀ କର୍ମଚାରୀମାନେ ସବୁ ଜାଣି ଆଖି ବୁଜି ରହୁଥିଲେ । ଗରିବ ଲୋକଙ୍କର ମା-ବାପ ନଥିଲେ । ରେଳରାସ୍ତା ଆଜି ଗୋଟାଏ ସାଧାରଣ ଜିନିଷ । ମାତ୍ର ତା ପଛରେ ବହୁତ କରୁଣ କାହାଣୀ ଲୁଚି ରହିଛି । ସେତେବେଳେ ତାହା ଗୀତରେ ଗାଇବାକୁ ଜଣେ କବି ସୁଦ୍ଧା ବାହାରିଲେ ନାହିଁ ।"

(ପୃ ୨୪-୨୫)

ଗୋଦାବରୀଶଙ୍କ ବକ୍ରୋକ୍ତି ଯେତିକି ଶାଣିତ ଓ ପ୍ରଭାବଶାଳୀ, ତାଙ୍କର ଅଭିବ୍ୟକ୍ତି ମଧ୍ୟ ସେହି ପରିମାଣରେ ହାସ୍ୟରସାତ୍ମକ । ରେଳ ଆସିବାର ବହୁକାଳ ପରେ ସୁଦ୍ଧା କିପରି ସେ ସମ୍ପର୍କରେ ନାନା ଦୁର୍ଘଟଣା ଘଟିଥିଲା, ତାହାର ମନୋରଞ୍ଜକ ବିବରଣୀ ପାଠ କଲେ ନ ହସି ରହି ହୁଏ ନାହିଁ । ସେ ହେଉଛି ୧୯୨୫ ମସିହାର କଥା । ପାରିକୁଦ ରାଜାଙ୍କ ଉଆସରେ ହୋମ, ଯଜ୍ଞ, ପୂଜାମନ୍ତ୍ର, ବ୍ରାହ୍ମଣ ଭୋଜନ ଆଦି ଚାଲିଲା । ତାର କାରଣ ପଶ୍ଚିମ ଦିଗରେ କେତେଦିନ ଧରି କାଳିଜାଈ ପାହାଡ଼ପଟେ, ରାତି ଅଧ ସମୟରେ ଏକ ପ୍ରକାଣ୍ଡ ଆଲୋକ ବାହାରି କିଛି ସମୟପରେ ଅଦୃଶ୍ୟ ହୋଇଯାଏ । କାଳିଜାଈ ଦେବୀ ରୁଷ୍ଟ ହୋଇଛନ୍ତି ବୋଲି ଧାରଣା ଜନ୍ମିଲା । ତାଙ୍କର ତୃପ୍ତି ନିମନ୍ତେ ହୋମ ଯଜ୍ଞ ଆଦିର ଅନୁଷ୍ଠାନ । ସେ ସବୁ ହୁଏତ ଆହୁରି ଚାଲିଥାନ୍ତା, ମାତ୍ର ଏକ ଭ୍ରମୂଳ ହସ ବୃଷ୍ଟିପରେ ବନ୍ଦ ହୋଇଗଲା । ଖବର ମିଳିଲା ଯେ ଦକ୍ଷିଣରୁ ଆସୁଥିବା ମାନ୍ଦ୍ରାଜ ଡାକ ଗାଡ଼ିରେ ନୂଆ ହୋଇ ଯେଉଁ ପ୍ରକାଣ୍ଡ ଆଲୁଅ ଖଞ୍ଜାଯାଇଛି, ତାହାହିଁ ଦୂରକୁ ସେପରି ଦିଶୁଛି । (ପୃ ୨୫)

ବିରାଟ ଦାରିଦ୍ର୍ୟ ମଧ୍ୟରେ ଗୋଦାବରୀଶଙ୍କ ବ୍ୟକ୍ତିତ୍ୱ ବିକଶିତ ହୋଇଥିଲା । ପିଲାଦିନେ ତାଙ୍କ ଘରେ ଅଧିକାଂଶ ଦିନ ଚୁଲି ଜଳୁ ନଥିଲା । ବେଳେବେଳେ ଘର ଲୋକଙ୍କୁ ପେଜ ଓ ମାଣ୍ଡିଆ ଜାଉରେ କ୍ଷୁଧା ନିବାରଣ କରିବାକୁ ପଡୁଥିଲା । ତାରି ମଧ୍ୟରେ ଗୋଦାବରୀଶଙ୍କ ତ୍ୟାଗପୂତ ବିଶାଳ ବ୍ୟକ୍ତିତ୍ୱ ବିକଶିତ ହୋଇଥିଲା । ଛାତ୍ରାବାସରେ ଥିଲାବେଳେ ତାଙ୍କର ଅବସ୍ଥା ଏଜନିତ ଏହିପରି ଥିଲା—

"ସେତେବେଳେ ମୋର ଖଣ୍ଡିଏ ମାତ୍ର ମୋଟାଲୁଗା ଥାଏ । ରବିବାର ସକାଳେ ମୁଁ ଝରକାବାଟେ ଧୋବାକୁ ବଢ଼ାଇ ଦେଇ ଉପରଓଳି ପର୍ଯ୍ୟନ୍ତ କବାଟ କିଲି ରହିଥାଏ । ଧୋବା ସଜ ଧୋଇ କରି ତାହା ସନ୍ଧ୍ୟାକୁ ଫେରାଇ ଦିଏ । (ପୃ ୭୨)

ଆଲୋଚ୍ୟ ଜୀବନଚରିତରେ ଲେଖକ ନାନା ଝଡ଼ଝଞ୍ଜା ମଧ୍ୟରେ କିପରି ପଣ୍ଡିତ ଗୋଦାବରୀଶ ହୋଇଲେ, ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ଏବଂ ଜାତୀୟଜୀବନର ନାନା ଘଟଣା ମଧ୍ୟରେ ତାଙ୍କର ବୈପ୍ଳବିକ ଭୂମିକା କଣ ଥିଲା, ତାଙ୍କର ନିକଟ ସମ୍ପର୍କରେ ଆସିଥିବା ସେ କାଳର ଅନେକ ମାନ୍ୟଗଣ୍ୟ ସ୍ୱନାମଧନ୍ୟ ବ୍ୟକ୍ତିଙ୍କ ସମ୍ପର୍କରେ ବହୁ ରୋମାଞ୍ଚକର ଅନୁଭୂତିର କାହାଣୀ ଏଥିରୁ ମିଳିଥାଏ । ବାସ୍ତବିକ ଫକୀରମୋହନଙ୍କ ଆତ୍ମଚରିତ ପରେ ଓଡ଼ିଆ ସାହିତ୍ୟରେ ଗୋଦାବରୀଶଙ୍କ ଆତ୍ମଚରିତ ଏକ ସାର୍ଥକ କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗୋଦାବରୀଶ ମିଶ୍ରଙ୍କ ଆତ୍ମଚରିତ ପ୍ରକାଶିତ ହେବାର ଅଳ୍ପକାଳ ପରେ ସୁଲେଖକ ମନୋଜ ଦାସଙ୍କ ସମ୍ପାଦନାରେ ଦିଗନ୍ତ ମାସିକ ସାହିତ୍ୟ ପତ୍ରିକା ଆତ୍ମପ୍ରକାଶ କଲା । ଏହି ପତ୍ରିକାରେ ବିଶିଷ୍ଟ ସମାଜସେବୀ ଓ ସୁଲେଖକ ଶ୍ରୀ ନାରାୟଣ ବୀରବର ସାମନ୍ତ ଧାରାବାହିକ ଭାବରେ ବର୍ଷାଧିକ କାଳ ନିଜର ଜୀବନ-ସ୍ମୃତି ପ୍ରକାଶ କରିଥିଲେ । ପ୍ରଥମେ ଏହା ୧୯୫୯ ସାଲ ଡିସେମ୍ବର ମାସରେ ଦିଗନ୍ତର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାଠାରୁ ପ୍ରକାଶିତ ହୋଇଥିଲା । ସେ କାଳରେ ଦିଗନ୍ତ ପତ୍ରିକାର ଏହା ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା ବୋଲି ସ୍ୱୀକାର କରିବାକୁ ହେବ । ସମ୍ପାଦକ ଏହି ଆତ୍ମକାହାଣୀ ପ୍ରକାଶ କରି ଟିପ୍ପଣୀ ଦେଇଥିଲେ— ରାଜପରିବାରର ସୌଖୀନ ପରିବାର ଭିତରୁ ଜନସମୁଦ୍ରର ଦିଗନ୍ତବିସ୍ତାରି ଏକ ବିପ୍ଳବୀ ଜୀବନର ରୋମାଞ୍ଚକର କାହାଣୀ ପ୍ରାକ୍ ସ୍ୱାଧୀନତା ଓଡ଼ିଶା ଇତିହାସର କେତେକ କେତେକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଏହି ଆତ୍ମଚରିତରୁ ମିଳିପାରିବ । ଲେଖକ କୁଜଙ୍ଗ ସାମନ୍ତ ପରିବାରର ହୋଇଥିବାରୁ ଏବଂ ରାଜନୀତି କ୍ଷେତ୍ରରେ କୁଜଙ୍ଗକୁ ପ୍ରତିନିଧିତ୍ୱ କରିଥିବାରୁ ଏଥିରେ କୁଜଙ୍ଗରେ ଭୌଗୋଳିକ ସୀମାକୁ କେନ୍ଦ୍ରକରି ଅନେକ ଐତିହାସିକ ଘଟଣା ଲିପିବଦ୍ଧ ହୋଇଥିଲେହେଁ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନରେ ଅନେକ ଆକର୍ଷଣୀୟ ବିବରଣୀ ଏଥିରୁ ଉପଲବ୍ଧ ହୋଇଥାଏ । ନାରାୟଣ ବୀରବର ସାମନ୍ତ ଭାରତର ସର୍ବ ପ୍ରଥମ ଅସହଯୋଗୀ ଛାତ୍ର ଥିଲେ ବୋଲି ଉଲ୍ଲେଖ କରିଛନ୍ତି । ଏହା ଓଡ଼ିଶା ପକ୍ଷରେ କମ ଗୌରବର କଥା ନୁହେଁ । ଅନୁନ୍ନତ ଓଡ଼ିଶାରେ ଜଣେ ଛାତ୍ର ହିସାବରେ ଭାରତର ଜାତୀୟ ଆନ୍ଦୋଳନରେ ପ୍ରଥମ ଅସହଯୋଗୀ ହେବା ଅତ୍ୟନ୍ତ ଅଦ୍ଭୁତ ପରି ମନେ ହୋଇଥାଏ । ସେ ହେଉଛି ୧୯୨୦

ସାଲର କଥା । ଗାନ୍ଧିଜୀଙ୍କ ଅସହଯୋଗ ଡାକରା ଦେଶର ପ୍ରତ୍ୟେକ ପ୍ରାନ୍ତରେ ଖେଳି ଯାଉଥାଏ । "ଦାସେ ଆପଣଙ୍କ ନିର୍ଦ୍ଦେଶମତେ ଖବରକାଗଜ ନିୟମିତ ପଢ଼ିବାକୁ ଆରମ୍ଭ କଲି ଏବଂ କିଛି କିଛି ବୁଝୁଥାଏ । କିଛି କିଛି ବୁଝୁ ନଥାଏ । ଏହିପରି ଭାବେ କିଛିଦିନ ପରେ ବୁଝିପାରିଲି "ଅହିଂସା ଅସହଯୋଗ"ର ମର୍ମ । କିନ୍ତୁ ଧୈର୍ଯ୍ୟର ଯେ ସୀମା ଅଛି । ଏଥିର ତତ୍କାଳିକ ସମାଧାନକୁ ଛାଡ଼ି ଏ ଅହିଂସାପଥର ଗୀତାଶିଷ୍ୟ ଭାରତବାସୀ ଗ୍ରହଣ କରିବାରେ ମୋର ଘୋର ସନ୍ଦେହ ହେଲା । ତଥାପି ଆପାତତଃ ଆନ୍ଦୋଳିତ ଅବସ୍ଥାରେ ମୁଁ କାଳକ୍ଷେପଣ କରିବାରୁ ଅହିଂସା ଅସହଯୋଗ ବରଣ କରିନେବା ଶ୍ରେୟ ମନେ କଲି । 'ଦାସେ ଆପଣଙ୍କ ନିକଟରେ ସବୁ ମନକଥା ପ୍ରକାଶ କରିବାର ସୁଯୋଗ ନଥିଲା । କିନ୍ତୁ ଏ ଦିଗରେ କିଛି ଆଲୋଚନା କିମ୍ବା ସମାଲୋଚନା ନ ହେଲେ ମୁଁ ମନକଥା ପ୍ରକାଶ କଲେ କାଳେ ବେହେଲା ହେବ, ଏଥିପାଇଁ ମୁଁ ସଙ୍କୋଚ ବୋଧ କଲି । କିନ୍ତୁ ମନ ମଧ୍ୟରେ ବିଶ୍ଳେଷଣ କରୁଥାଏ, ଏହା ମୋର ସଂଶୟବାଦର ଅଭାବ ନୁହେଁ ତ ? କ୍ରମଶଃ ଗାନ୍ଧିଜୀଙ୍କ ପ୍ରବନ୍ଧ ପରେ ପ୍ରବନ୍ଧ ମୋ ଭ୍ରାନ୍ତିକୁ ସମ୍ପୂର୍ଣ୍ଣରୂପେ ତୁଟାଇ ଦେଲା ଏବଂ ଅକୂଳ ସମୁଦ୍ରରେ କୂଳ ପାଇଲି ଭଳି ଏପରି ଏକ ଅବସ୍ଥାରେ ପହଞ୍ଚିଲି ଯେ କୋଷମୁକ୍ତ ପ୍ରଜାପତି ପରି ଉଡ଼ିଯାଇ 'ଦାସେ ଆପଣଙ୍କୁ ମୋର ସିଦ୍ଧାନ୍ତ ଜଣାଇ ଦେଲି । ସେ ଟିକଏ ବିସ୍ମିତ ହୋଇଯାଇ ପଚାରିଲେ, 'ଆମ ପିଲାଏ କେବେ ଗାନ୍ଧି ମହାତ୍ମାଙ୍କ କଥା ବୁଝୁଛନ୍ତି । ତାପରେ କେତେ ଆଲୋଚନା ହେଲା, ଅବଶ୍ୟ ଏକାନ୍ତରେ । ମୋ ଦୃଢ଼ତା ଦେଖି ସେ ଖୁବ୍ ଖୁସୀ ହେଲେ ଏବଂ ପରୀକ୍ଷାରେ ମଧ୍ୟ ମତେ ନିବର୍ତ୍ତାଇ ନାହାନ୍ତି । କେବଳ ଆଇ. ଏ ଟେଷ୍ଟ ପରୀକ୍ଷାଟା ଦେବାକୁ ଓ କଲିକତା ସ୍ୱତନ୍ତ୍ର କଂଗ୍ରେସ ଅଧିବେଶନ ପ୍ରସ୍ତାବକୁ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଲେ । କଲିକତା ଅଧିବେଶନ ଲାଲା ଲଜପତ ରାୟଙ୍କ ସଭାପତିତ୍ୱରେ ବସିଲା ଏବଂ ଗାନ୍ଧିଜୀଙ୍କ ପ୍ରସ୍ତାବ ଗୃହୀତ ହୋଇ ପାରିଲା ନାହିଁ । × × × ଟେଷ୍ଟ ପରୀକ୍ଷା ଫଳକୁ ଅପେକ୍ଷା କରିବାକୁ ମୋର ଅବସର ନଥିଲା । ଭାରତ ବର୍ଷରେ ପ୍ରଥମ ଅସହଯୋଗୀ ଭାବରେ ମୋ ନାଁ ପ୍ରାୟ ସବୁ କାଗଜରେ ବାହାରିଗଲା । ମୋ ଆତ୍ମକାର୍ଯ୍ୟରେ ଯେଉଁ ଘନ ଘନ ଆଘାତ ଲାଗୁଥିଲା, ତାହା କ୍ରମଶ ପ୍ରଶମିତ ହୋଇଗଲା ।"

(ଦିଗନ୍ତ—୧ମ ବର୍ଷ—୧ମ ସଂଖ୍ୟା—୧୯୫୧)

ଆଲୋଚନା ପ୍ରସଙ୍ଗରେ ୧୯୨୭ ମସିହାର ନିର୍ବାଚନ ସଂଗ୍ରାମ, ଓଡ଼ିଶାରେ ଅସହଯୋଗୀଙ୍କ ଆଗମନ, ଐତିହାସିକ କଂଗ୍ରେସ ସମ୍ମିଳନୀ, ଆଇନଭଙ୍ଗ ଆନ୍ଦୋଳନ, ସତ୍ୟାଗ୍ରହ ଅଭିଯାନ ପ୍ରଭୃତି ବିଷୟରେ ନାନା କଥା ଉଲ୍ଲିଖିତ ଅଛି । ଆଲୋଚ୍ୟ ଜୀବନକାହାଣୀ ଲେଖକଙ୍କୁ ଜାତୀୟ ସଂଗ୍ରାମର ଏକ ଐତିହାସିକ ଚିତ୍ର ଦେବାକୁ ଯଥେଷ୍ଟ ସାହାଯ୍ୟ କରିଥାଏ । ଗାନ୍ଧିଜୀ ଓ ଗୋପବନ୍ଧୁଙ୍କ ନେତୃତ୍ୱରେ କିପରି ଦେଶର ତରୁଣମାନେ ଉଦବୁଦ୍ଧ ହୋଇ ପରିବାରର ଓ ବୈଷୟିକ ମୋହ ଓ ଐଶ୍ୱର୍ଯ୍ୟ ତ୍ୟାଗ କରି ଦେଶସେବା କାର୍ଯ୍ୟପାଇଁ ଆଗେଇ ଆସୁଥିଲେ, ଏଥିରୁ ମଧ୍ୟ ତାହାର ପ୍ରମାଣ ମିଳିପାରିବ । ଏହି ବିବରଣୀର ଐତିହାସିକ ମୂଲ୍ୟବୋଧ ଅନସ୍ୱୀକାର୍ଯ୍ୟ ।

ଉତ୍କଳର କୃଷ୍ଣବିହାରୀ ଦାସ ଜଣେ ପ୍ରତିଷ୍ଠିତ କବି ଓ ସମାଲୋଚକ । ସେ କର୍ମମୟ ଜୀବନରୁ ଅବସର ଗ୍ରହଣପରେ ସାଂସ୍କୃତିକ ଜୀବନସହିତ ନିବିଡ଼ଭାବରେ ସଂପୃକ୍ତ ରହିଥିଲେହେଁ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନଚରିତ ରଚନାରେ ବ୍ୟାପୃତ ରହିଥିଲେ । ୧୯୭୦ ସାଲରେ ପ୍ରକାଶିତ ତାଙ୍କର ପ୍ରବନ୍ଧ ସଂକଳନ 'ଶ୍ରୀମନ୍ତ'ରେ 'ମୋ ଜୀବନର ଗୋଟିଏ ଅଧ୍ୟାୟ' ପ୍ରକାଶିତ ହୋଇଥିଲା । ଏହି ଗୋଟିଏ ଅଧ୍ୟାୟରୁ ଜଣେ ସାହିତ୍ୟିକ ବ୍ୟକ୍ତିତ୍ୱ, ଶିକ୍ଷାବିତ୍ ଏବଂ କବି ଜୀବନର ବିକାଶକ୍ରମ ଜାଣିବା ବିଷୟରେ ଅନେକ ସାହାଯ୍ୟ ମିଳିଥାଏ । ସାହିତ୍ୟ ସାଧନାର ଅନ୍ତରାଳରେ କି ପ୍ରେରଣା ଜାଗ୍ରତ ହୋଇଥିଲା, ତାହା ବୁଝାଇ କବି କୃଷ୍ଣବିହାରୀ ଲେଖିଛନ୍ତି—

"ଲୋକେ ପଢ଼ନ୍ତି ମହାପୁରୁଷଙ୍କ ଜୀବନଚରିତ; ସେଥିରେ ଶିକ୍ଷଣୀୟ ଉପାଦାନ ଥାଏ । ଜୀବନ ନିର୍ମାଣ ଲାଗି ପ୍ରେରଣା ମିଳେ ପ୍ରଚୁର । ମୋ ଜୀବନ ନାସ୍ତିବାଚକ । ଏଥିରେ ବିପୁଳ ଜୀବନ ଅନୁଭୂତିର ସ୍ପର୍ଶ ନାହିଁ । ରାଜନୀତିର ଘଟଣା ବହୁଳତା ନାହିଁ । ସମାଜସେବାର ତତ୍ପରତା ବା ବୈଜ୍ଞାନିକର ପରୀକ୍ଷା ନିରୀକ୍ଷା ନାହିଁ । ଜ୍ଞାନର ଗରିମା ନାହିଁ ବା ତ୍ୟାଗର ମହିମା ନାହିଁ । ତେଣୁ ଆତ୍ମଚରିତ ନୁହେଁ, ଜୀବନସ୍ମୃତି ନୁହେଁ, ସଂଗ୍ରାମ ଜୀବନର ସାମାନ୍ୟ ସୂଚନା ମାତ୍ର ଦେଉଅଛି । ମୋ କବିତାର ମରମୀ ପାଠକଙ୍କ ଲାଗି ଏହା ଲେଖା ।"

(ଶ୍ରୀମନ୍ତ—ପୃ ୧)

ବାଲ୍ୟରୁ ଦାରିଦ୍ର୍ୟ ମଧ୍ୟରେ କୃଷ୍ଣବିହାରୀ ବଢ଼ିଥିଲେ । ସେ ଯୁଗର ଖେଳନାଟିଏ କିଣିବା ପାଇଁ ଘରେ ବିତ୍ତ ନଥିଲା । ଅଧିଲିଆ ବେଙ୍ଗବାଇଦ, ବରଡ଼ାପତ୍ର ପେଁକାଳି ଥିଲା ତାଙ୍କର ବାଜା । କନାତିଆରି ଅଦଆ ବୁଢ଼ା, କାଠକୁଣ୍ଢେଇ, ମାଟିଘୋଡ଼ା ଥିଲା ତାଙ୍କର ଖେଳଣା ।

ପିଲାଦିନୁ ଚାଷୀ ହେବାପାଇଁ ସେ ଏକପ୍ରକାର ପ୍ରସ୍ତୁତ ହୋଇ ରହିଥିଲେ । ସେ ବିଲ ବାଛିଲେ, ହଳ ଜୋଇଲେ, ଗାଈ ଚରେଇ ମଧ୍ୟ ଗଲେ । ମାତ୍ର ହଠାତ୍ ଜୀବନର ଗତି ବଦଳି ଗଲା । ସେ ମାଇନର ପଢ଼ିଲେ ଏବଂ ସେହିଠାରେ ତାଙ୍କ ମନରେ କବିତା ଲେଖାର ପ୍ରେରଣା ଜାତ ହେଲା । ସେ ହେଉଛି ୧୯୩୧ ସାଲର କଥା । ନିଜ ଅର୍ଜନରେ ପଢ଼ି ଅତ୍ୟନ୍ତ କଷ୍ଟରେ ଚଳି ସାନଭାଇଙ୍କୁ ମଧ୍ୟ ପଢ଼ାଉଥିଲେ । ଛାତ୍ରଜୀବନରୁ କବିତା ଲେଖାପ୍ରତି ଝୁଙ୍କ ଥିଲା ଅଧିକ । କବିଙ୍କ ନିଜ ଭାଷାରେ—"ବହିପତ୍ର ନଥାଏ । ତେଣୁ ଦଉଡ଼ି ଟିଉସନ ସନ୍ଧରେ ଟିକିଏ ଅବସର ମିଳିଲେ କବିତା ଲେଖିବସେ । କେହି କେହି କହନ୍ତି—କବିତା ଲେଖା ଗୋଟାଏ ନିଶା । କବି ନିଶାଖୋର । କିନ୍ତୁ ମୋ ପକ୍ଷରେ ଏ ଗୋଟାଏ ବ୍ୟାଧି । ମୁଁ ବ୍ୟାଧିଗ୍ରସ୍ତ ହୋଇ ପଡ଼ିଲି । କବିତା ଲେଖି ନିଜର ଯାହା କ୍ଷତି କରିଛି, ତାର ତୁଳନା ନାହିଁ ।"

(ଶ୍ରୀମନ୍ତ—ପୃ ୧୪ । ୧୫)

ନିଜର ସଂଗ୍ରାମୀ ଜୀବନରେ କୁଞ୍ଜବିହାରୀ କପର ପୋଲିସ ଚାକିରି ଗ୍ରହଣ ନକରି ଉଚ୍ଚଶିକ୍ଷାରେ ଅଗ୍ରସର ହେଲେ ଏବଂ ଅତ୍ୟନ୍ତ ଗୌରବର ସହିତ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ହାସଲ କରିଥିଲେ, ତାହାର ସମ୍ୟକ ବର୍ଣ୍ଣନା ଏହି ଲେଖାରୁ ମିଳିଥାଏ। ବାସ୍ତବିକ କୁଞ୍ଜବିହାରୀଙ୍କ ସଂଗ୍ରାମୀଜୀବନର ଇତିବୃତ୍ତ ପରବର୍ତ୍ତୀ କାଳରେ ଧାରାବାହିକ ଭାବରେ ଅନେକ ଦିନ ପର୍ଯ୍ୟନ୍ତ ବିଖ୍ୟାତ ସାହିତ୍ୟ ପତ୍ରିକା 'ଡଗର'ରେ ମୋ ନିଜ କାହାଣୀ ନାମରେ ପ୍ରକାଶିତ ହେଲା। ୧୯୭୬ ଖ୍ରୀଷ୍ଟାବ୍ଦରେ ଏହି ଆତ୍ମଚରିତ ପୁସ୍ତକ ରୂପରେ ପ୍ରକାଶିତ ହୋଇଅଛି। ଏଥିରେ କବିଙ୍କର ବ୍ୟକ୍ତିଗତ ଜୀବନର ସାଧନା ସହିତ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା, ନିଜର ସାହିତ୍ୟ ସାଧନା ସହିତ ଓଡ଼ିଶାର ସାହିତ୍ୟିକ ପାଣିପାଗ ସମ୍ପର୍କରେ ବିଶଦ ଆଲୋଚନା କରାଯାଇଛି। କୁଞ୍ଜବିହାରୀଙ୍କ ଆତ୍ମଚରିତ "ମୋ ନିଜ କାହାଣୀ" ପାଠକଲେ ତାହାଙ୍କୁ ଇଂରେଜୀ କବି ଗୋଲ୍ଡସ୍ମିଥ୍‌ଙ୍କ ସହିତ ତୁଳନା କରିବାକୁ ଇଚ୍ଛା ହୁଏ। ଜୀବନର ଅସରନ୍ତି ଦୁଃଖ ଓ ଦୁର୍ବିପାକ ମଧ୍ୟରେ ଯେଉଁ ଗୋଲ୍ଡସ୍ମିଥ୍‌ଙ୍କ କବି ପ୍ରତିଭା ଲୁକ୍କାୟିତ ଥିଲା, ସମୟକ୍ରମେ ତାହା ଉଦ୍‌ଭାସିତ ହୋଇ ଜଗତ ବିଖ୍ୟାତ ହେଲା। ତେଣୁ ସେହି ମହାମନସ୍ୱୀ ପ୍ରତିଭାକୁ ଅଧ୍ୟୟନ କରି ଇଂରେଜୀ ସାହିତ୍ୟର ବହୁ ଜୀବନୀ ଲେଖକ ପ୍ରସିଦ୍ଧି ଅର୍ଜନ କରିଅଛନ୍ତି। ସେଦିନର କୁଞ୍ଜବିହାରୀ ଲଙ୍ଗଳ ଚଷୁ ଚଷୁ ଯେ କଲମ ଚାଷ କରି ପ୍ରସିଦ୍ଧ କବି ଓ ଗବେଷକ ହେବେ ଏ କଥା କିଏ କଳ୍ପନା କରିଥିଲା। ଇଂରେଜୀରେ ଯେଉଁ କଥାଅଛି A poet is born, not made. ତାହା କୁଞ୍ଜବିହାରୀଙ୍କ ଜୀବନୀ ଆଲୋଚନା କଲେ ବାସ୍ତବିକ ହୃଦ୍‌ବୋଧ ହୁଏ। ମୋ ନିଜ କାହାଣୀ" କେବଳ କବି କୁଞ୍ଜବିହାରୀଙ୍କ କାହାଣୀ ନୁହେଁ, ଏଥିରୁ କହି କବି, ଗବେଷକ, ଅଧ୍ୟାପକ, ଓ ସମାଜସେବୀଙ୍କ ଜୀବନକାହାଣୀ ଜାଣିବାର ସୁଯୋଗ ମିଳିଥାଏ।

ବୋଧହୁଏ ୧୯୬୦ ସାଲ ବେଳକୁ ସମ୍ପାଦକ ବୈରାଗୀଚରଣ ମିଶ୍ରଙ୍କ ଆତ୍ମଜୀବନୀ "ସ୍ୱଭାବନିଃସୃତ ଜୀବନଧୁନି" ପ୍ରକାଶିତ ହୋଇଥିଲା। ଆତ୍ମଜୀବନୀ" କ୍ଷେତ୍ରରେ ଏହି ପୁସ୍ତକର ସ୍ୱତନ୍ତ୍ର ମର୍ଯ୍ୟାଦା ସ୍ୱୀକାର କରିବାକୁ ହେବ। କାରଣ ବୈରାଗୀ ମିଶ୍ର ସ୍ୱଭାବତଃ ଜଣେ ବିପ୍ଳବୀ ଏବଂ ସମାଜ ସଂସ୍କାରକ। ସେ କୌଣସି କ୍ଷମତାରେ ଅଧିଷ୍ଠିତ ହୋଇ ନଥିଲେ। ଉଚ୍ଚଶିକ୍ଷା ଅଥବା ପଦ ମର୍ଯ୍ୟାଦା ମଧ୍ୟ ତାଙ୍କର ନଥିଲା। ବିତ୍ତଶାଳୀ ମଧ୍ୟ ନଥିଲେ। ମାତ୍ର ନିଜର ନିର୍ବିକଳ୍ପ ସାଧନା, ଉଦ୍ୟମ, ଦୃଢ଼ତା ଓ ପ୍ରତିଜ୍ଞା ବଳରେ ସେ କାଳର କୁସଂସ୍କାରାଚ୍ଛନ୍ନ ସମାଜରେ ସେ ଅସମ୍ଭବକୁ ସମ୍ଭବ କରି ପାରିଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ। ନିଜର ଆତ୍ମଜୀବନୀ ପ୍ରାରମ୍ଭରେ ସେ ସମସ୍ତଙ୍କୁ ନିବେଦନ କରିଥିଲେ ଏହିପରି—ବିଶୃଙ୍ଖଳା ପୂର୍ଣ୍ଣ ଉପସ୍ଥିତ ମାନବ ସମାଜରେ ସତ୍ୟ, ସାମ୍ୟବାଦ, ବ୍ୟକ୍ତିଗତ ପୂର୍ଣ୍ଣ ସ୍ୱାଧୀନତା, ବିଶ୍ୱଭ୍ରାତୃତ୍ୱ ଓ ବିଶ୍ୱଶାନ୍ତି ପ୍ରତିଷ୍ଠା କରିବାକୁ କର୍ତ୍ତବ୍ୟବୋଧ କଲେ ଏବଂ ନିଜେ ଅନ୍ତଃସୁଖ ଓ ଅନ୍ତଃଶାନ୍ତି ଉପଲବ୍ଧି କରିବାକୁ ହେଲେ ଅନ୍ଧବିଶ୍ୱାସ, ଅନ୍ଧାନୁସରଣ ଓ ବୃଥାଡ଼ମ୍ବର ଉପରେ ପ୍ରତିଷ୍ଠିତ ଓ ଉପସ୍ଥିତ ଅସ୍ୱାଭାବିକ ଜୀବନଯାତ୍ରାକୁ ସ୍ୱଭାବନିଃସୃତ କରନ୍ତୁ। ବହୁକାଳର ପୂର୍ବାଭ୍ୟାସ ନିଜେ ପରିତ୍ୟାଗ କରି ନପାରିଲେ ମଧ୍ୟ ସର୍ବଦା ସତର୍କ ରୁହନ୍ତୁ। ଯେପରି ଅମର ଭବିଷ୍ୟତ ବଂଶଧରମାନେ ଆମକୁ ଅନୁସରଣ ନ କରନ୍ତି ଏବଂ ସେମାନଙ୍କର

ଜୀବନଯାତ୍ରାକୁ ସ୍ୱଭାବନିୟନ୍ତ୍ରିତ କରିବାକୁ ଶିଖନ୍ତୁ ।" ଶାସ୍ତ୍ର ପୁରାଣ ଅଥବା ମହାପୁରୁଷ କହିଛନ୍ତି ବୋଲି ତାକୁ ଅନୁସରଣ କରିବା ଉଚିତ ନୁହେଁ । ତାହା କେବଳ ଅନ୍ଧାନୁସରଣ ଏବଂ ଅନ୍ଧବିଶ୍ୱାସ । କଥାଟି କେତେଦୂର ସତ୍ୟ, ତାହା ପ୍ରତ୍ୟେକ ବ୍ୟକ୍ତି ଉପଲବ୍ଧି କରି ଗ୍ରହଣ କରିବା ଆବଶ୍ୟକ । ସେ ବାଲ୍ୟକାଳରୁ ଅନୁଭବ କରୁଥିଲେ ଯେ ଜନସାଧାରଣ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ବିବେକ ବୁଦ୍ଧି ହରାଉଅଛନ୍ତି ଏବଂ କାଳକ୍ରମେ ବିପଥଗାମୀ ହେଉଅଛନ୍ତି । ବୁଦ୍ଧଦେବ ଜଗତର ଦୁଃଖରେ ବିଚଳିତ ହୋଇ ଯେପରି ତପସ୍ୟା କଲେ ଏବଂ ପରିଶେଷରେ ବୁଦ୍ଧତ୍ୱ ଲାଭ କରି ଜଗତର କଲ୍ୟାଣ ପାଇଁ ଲାଗିପଡ଼ିଲେ, ସେହିପରି ଯୌବନ କାଳରେ ବୈରାଗୀ ବାବୁଙ୍କ ମନରେ ଧାରଣା ହେଲା ଯେ ଲୋକେ ବିବେକବୁଦ୍ଧି ହରାଇ ଦୁଃଖ ଲାଭ କରୁଅଛନ୍ତି । ଏଥିପାଇଁ ସେ ବହୁ ଚିନ୍ତା କରିଅଛନ୍ତି । ଜଣେ ସାଧାରଣ ସଂସାରୀର ଜୀବନରେ ଏପରି ଚିନ୍ତାଧାରା ତପସ୍ୟା ଛଡ଼ା ଆଉ କ'ଣ ହୋଇପାରେ । ଲୋକେ କିପରି ବିବେକ ବୁଦ୍ଧିର ପରିଚୟ ପାଇବେ ଏବଂ ସୁଖରେ ରହିବେ । ଏଥିପାଇଁ ସେ 'ସୁଖାନ୍ୱେଷଣ' ନାମକ ଏକ ପୁସ୍ତକ ପ୍ରଣୟନ କଲେ । ସେଥିରେ କେତେକ ଉଲ୍ଲେଖଯୋଗ୍ୟ କଥା ହେଲା—

"ମନୁଷ୍ୟ ଧର୍ମ ପାଳନ କରିବା ଏବଂ ବିବେକାନୁମୋଦିତ କାର୍ଯ୍ୟକରିବା ଏ ଦୁହେଁ ଏକା କଥା । ବିବେକ ବୁଦ୍ଧିର ପରିଚୟ ପାଇ ନଥିବାରୁ ଲୋକେ ଚିରାଚରିତ ପ୍ରଥା ସବୁର ଅନ୍ଧାନୁସରଣକୁ କର୍ତ୍ତବ୍ୟ ମନେ କରିଅଛନ୍ତି । ଲୋକ ନିନ୍ଦାକୁ ଭୟ କରି ଏବଂ ଲୋକଙ୍କଠାରୁ ପ୍ରଶଂସା ପାଇବାକୁ ଲାଳାୟିତ ହୋଇ ଲୋକେ ଯାହା ସବୁ କରୁଅଛନ୍ତି, ତାହା ପ୍ରକୃତରେ ସେମାନଙ୍କର କର୍ତ୍ତବ୍ୟ ନୁହେଁ ।"

(ସ୍ୱଭାବ ନିୟନ୍ତ୍ରିତ ଜୀବନଯାତ୍ରା—ପୃ ୧୭)

ଏହା ହେଉଛି ବୈରାଗୀମିଶ୍ରଙ୍କ ଯୌବନକାଳର କଥା । ସେତେବେଳେ କେହି ନିଜର ସ୍ତ୍ରୀକୁ ବିଦେଶକୁ ନେଉ ନଥିଲେ । ତାଙ୍କ ଗ୍ରାମର ଜଣେ ଓକିଲ ନିଜର ସ୍ତ୍ରୀକୁ କଟକ ଆଣିଥିବାରୁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଲା । ମାତ୍ର ସମାଜର ଏହି ପ୍ରଥା ବିରୁଦ୍ଧରେ ବୈରାଗୀବାବୁ ବିଦ୍ରୋହ ଘୋଷଣା କଲେ । ଲୋକ ଚଳଣିକୁ ଖାତିର ନକରି ସେ ନିଜର ସ୍ତ୍ରୀ ଓ ସନ୍ତାନମାନଙ୍କୁ ଚଲାଇ ଚଲାଇ କଟକ ଅଭିମୁଖେ ରେଳଷ୍ଟେସନକୁ ଚାଲି ଆସିଥିଲେ । ସେତେବେଳେ ତାହା ଘୃଣ୍ୟ ଦୃଷ୍ଟି କରିଥିଲା । ମହାତ୍ମାଗାନ୍ଧୀଙ୍କ ବାଣୀରେ ଅନୁପ୍ରାଣିତ ହୋଇ ସେ ସ୍ୱଦେଶୀ ଜିନିଷ ବ୍ୟବହାର କଲେ । ଏଥିପାଇଁ ତାଙ୍କୁ ଉଚ୍ଚ କର୍ତ୍ତୃପକ୍ଷଙ୍କ ବିଷଦୃଷ୍ଟିରେ ପଡ଼ିବାକୁ ହୋଇଥିଲା ।" ବ୍ରହ୍ମବିଦ୍ୟା ସମିତିର ପ୍ରଧାନ ମାତ୍ର ସତ୍ୟ ଓ ବିଶ୍ୱ ଭ୍ରାତୃତ୍ୱ ମଧ୍ୟ ତାଙ୍କୁ ବିଶେଷ ସ୍ପର୍ଶ କରିଥିଲା । ମାତ୍ର ପରବର୍ତ୍ତୀ କାଳରେ ଏହି ଅନୁଷ୍ଠାନର କେତେକ ଅନ୍ଧାନୁସରଣ ଲକ୍ଷ୍ୟ କରି ସେ ସମସ୍ତ ସମ୍ପର୍କ ତୁଟାଇ ଦେଇଥିଲେ । ଶ୍ରୀମିଶ୍ର ଜାତିଭେଦ, ପିଲାକନ୍ୟା ବିବାହ, ଓଢ଼ଣା ଓ ପରଦା ପ୍ରଥା ପ୍ରଭୃତି ବିରୁଦ୍ଧରେ ପ୍ରବଳ ଯୁଦ୍ଧ ଘୋଷଣା କରିଥିଲେ । ସମାଜପତିଗଣ ତାଙ୍କ ବିରୁଦ୍ଧରେ ଲାଲ ଆଖି ଦେଖାଇଲେ ମଧ୍ୟ ସେ ଆଦୌ ଭ୍ରୂକ୍ଷେପ କଲେ ନାହିଁ । ସେ କାଳରେ ପିଲାକନ୍ୟା ବିବାହ ପ୍ରଚଳିତ ଥିଲା । ଏହି ପିଲା ବୟସରେ

ଆଶୀର୍ବାଦ ଦେଇ ପୂର୍ବରୁ ଯେଉଁ କନ୍ୟା ମୃତ୍ୟୁ ବରଣ କରୁଥିଲା, ସେ ସାରାଜୀବନ ବୈଧବ୍ୟ ଦୁଃଖ ଭୋଗ କରୁଥିଲା । ବୈରାଗୀବାବୁ ଏହି ନିର୍ମମ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ସେ ଏହିପରି ସ୍ତ୍ରୀମାନଙ୍କୁ ବିଧବା ନ କହି ବିବାଗ (ବିଗତ ହୋଇଅଛି ବର ଯାହାର, ଧବ ନୁହେଁ) ବୋଲି ଆଖ୍ୟାତ କଲେ ଏବଂ ବିବାଗ ବିବାହ ଦେବାରେ ସଫଳ ହେଲେ । ଏହା ସେ କାଳରେ ଏପରି ଆଲୋଡ଼ନ ସୃଷ୍ଟି କରିଥିଲା ଯେ କାହ୍ନୁଚରଣ ମହାନ୍ତିଙ୍କ ପରି ଶକ୍ତିଶାଳୀ ଔପନ୍ୟାସିକ ଅନୁପ୍ରାଣିତ ହୋଇ ଲେଖିଥିଲେ ତାଙ୍କର 'ନିବୃତ୍ତି' ଉପନ୍ୟାସ । ପ୍ରଖ୍ୟାତ ସାହିତ୍ୟ ପତ୍ର 'ସହକାର' ମଧ୍ୟ ସମ୍ପାଦକୀୟରେ ଏହି ଆନ୍ଦୋଳନକୁ ସମର୍ଥନ କରିଥିଲେ । ବୈରାଗୀ ମିଶ୍ର ଯାହା କହୁଥିଲେ, ତାହା ନିଜ ଜୀବନରେ କାର୍ଯ୍ୟକାରୀ କରିଥିଲେ, ନିଜ ଜୀବନରେ ପରୀକ୍ଷା ନ କରି ସେ କିଛି କହୁ ନଥିଲେ । ତେଣୁ ନିଜର ଘରକୁ ସେ ଦୁଇଜଣ ବିବାଗ ସ୍ତ୍ରୀଙ୍କୁ ବୋହୂ କରି ଆଣିଥିଲେ । ବିବାଗମାନଙ୍କ ପରି ବିଧବାମାନେ ମଧ୍ୟ ବିବାହ କରନ୍ତୁ, ଏହା ଥିଲା ତାଙ୍କର ମତ । ତାଙ୍କର ଦୁଃସାହସିକ ପଦକ୍ଷେପ ଫଳରେ ପରବର୍ତ୍ତୀ କାଳରେ ବହୁ ବିବାଗ ଏବଂ ବିଧବା ବିବାହ ସମ୍ଭବ ହୋଇ ପାରିଥିଲା । ସନାତନୀ ରକ୍ଷଣଶୀଳମାନେ ପ୍ରବଳ ପ୍ରତିକ୍ରିୟା ପ୍ରକାଶ କରିଥିଲେହେଁ ଶେଷରେ ପରାସ୍ତ ହୋଇଥିଲେ । ତାଙ୍କର ଆନ୍ଦୋଳନର ଆଉ ଏକ ଦିଗ ଥିଲା ଆଦର୍ଶ ଉପବୀତ ଗ୍ରହଣ ଓ ଉପବୀତ ବିସର୍ଜନ । ଏ କ୍ଷେତ୍ରରେ ମଧ୍ୟ ସେ ରକ୍ଷଣଶୀଳ ମନୋଭାବ ବିରୁଦ୍ଧରେ ସଂଗ୍ରାମ କରି ଅସଂଖ୍ୟ ବ୍ରାହ୍ମଣ ବ୍ରହ୍ମସ୍ୱଙ୍କୁ ଉପବୀତ ପ୍ରଦାନ କରିଥିଲେ । ତାଙ୍କ ପ୍ରତିଷ୍ଠିତ ବିଶ୍ୱକଲ୍ୟାଣ ସମିତିର ପ୍ରତିଜ୍ଞାପତ୍ର ଥିଲା ଏହିପରି —

"ଯେଉଁମାନଙ୍କ ଅନ୍ଧବିଶ୍ୱାସ ଦୂର ହୋଇ ନାହିଁ, ସେମାନେ ସେମାନଙ୍କର ପିଲାମାନଙ୍କର ଉପବୀତ ଗ୍ରହଣ କର୍ମ କରନ୍ତୁ ଏବଂ ସେଥିପାଇଁ ଏକ ଟଙ୍କାରୁ ଅଧିକ ଅର୍ଥବ୍ୟୟ କରନ୍ତୁ ନାହିଁ । ମାତ୍ର ଯେଉଁମାନେ ପଇତା ପିନ୍ଧିବାଟା ଅନ୍ଧବିଶ୍ୱାସ, ଅନୁସରଣ ଓ ସମାଜର ଅନିଷ୍ଟପ୍ରଦ ବୋଲି ଉପଲବ୍ଧି କରୁଅଛନ୍ତି ଏବଂ ଶ୍ରେଣୀ ବିହୀନ ସମାଜ ଓ ନୂଆ ଦୁନିଆ ଗଠନ କରିବାର ଆବଶ୍ୟକତା ବୁଝୁଅଛନ୍ତି ସେମାନେ ପଇତା ବିସର୍ଜନ କରନ୍ତୁ ଏବଂ ନିଜର ପିଲାମାନଙ୍କୁ ପଇତା ପିନ୍ଧାଇବାରୁ ନିବୃତ୍ତ ହୁଅନ୍ତୁ ।"

(ସ୍ୱଭାବ ନିଯୁକ୍ତ ଜୀବନପ୍ରବନ୍ଧ—ପୃ ୧୬)

ବାସ୍ତବିକ ଆଲୋଚ୍ୟ ଜୀବନଚରିତ ଏକ କ୍ରାନ୍ତିକାରୀ ଦଲିଲ । ଏଥିରୁ ଜଣେ ଦୃଢ଼ଚେତା, ମହାନ ବ୍ୟକ୍ତିତ୍ୱ ଏବଂ ସମାଜସେବୀ ସାଧକର ତପସ୍ୟା ଜାଣିବାକୁ ମିଳିଥାଏ । ନିଜର ଜୀବିତକାଳରେ ତାଙ୍କର ସଂସ୍କାରପ୍ରୟାସ ଫଳପ୍ରସୂ ହେବା ଏବଂ ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରକୁ ଅନୁପ୍ରାଣିତ କରିବା କିଛି କମ ଗୌରବର ବିଷୟ ନୁହେଁ ।

୧୯୬୩ ମସିହାରେ ପଣ୍ଡିତ ନୀଳକଣ୍ଠଙ୍କ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡ ଆତ୍ମପ୍ରକାଶ କଲା । ଏହି ପ୍ରଥମଖଣ୍ଡରେ ତାଙ୍କର ଆତ୍ମଚରିତ ସ୍ଥାନଲାଭ କରିଥିବା ଜଣାଯାଏ । ପଣ୍ଡିତ ନୀଳକଣ୍ଠ ଏକାଧାରରେ ଜଣେ ପ୍ରବୀଣ ରାଜନୀତିଜ୍ଞ, ଶିକ୍ଷାବିତ୍, କବି ଓ ସୁଲେଖକ । ନୀଳକଣ୍ଠଙ୍କ

ରଚନାଶୈଳୀ ଅତ୍ୟନ୍ତ ସ୍ୱତନ୍ତ୍ର ଏବଂ ସାବଲୀଳ । ତେଣୁ ତାଙ୍କ ଲିଖିତ ଜୀବନଚରିତ ଓଡ଼ିଆ ସାହିତ୍ୟରେ ଏକ ସ୍ୱାଦ୍ୟ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ପଣ୍ଡିତଙ୍କଙ୍କ ଜୀବନ ଘଟଣା ବହୁଳ । ତତ୍କାଳୀନ ଓଡ଼ିଶାର ବହୁ ମହନୀୟ ବ୍ୟକ୍ତିଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ସେ ଆସିଥିଲେ । ତେଣୁ ଆଲୋଚ୍ୟ ଜୀବନଚରିତ ସମକାଳୀନ ସମାଜର ଏକ ଅଦ୍ଭୁତ ଐତିହାସିକ ବିବରଣୀ ପ୍ରଦାନ କରିଥାଏ । ଏଥିରେ ତାଙ୍କର ତରୁଣ ଜୀବନର ସଂସ୍କାରପ୍ରାଣତା, ଯୌବନ କାଳରେ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେବା ଏବଂ ଦେଶପାଇଁ ତ୍ୟାଗ ସ୍ୱୀକାର କରିବା, ବିଭିନ୍ନ ସଂସ୍କାରଧର୍ମୀ ଆନ୍ଦୋଳନରେ ଅଂଶ ଗ୍ରହଣ କରିବା ପ୍ରଭୃତି ବର୍ଣ୍ଣନା ଛଳରେ ଲିପିବଦ୍ଧ ହୋଇଥିବାରୁ ଏହି ଜୀବନଚରିତର ଏକ ସ୍ୱତନ୍ତ୍ର ମହିମା ଉପଲବ୍ଧି କରାଯାଏ । ଏଥିରେ ରାଧାନାଥ ଯୁଗ ସାହିତ୍ୟ ଏବଂ ସତ୍ୟବାଦୀ ଦଳୀୟ ସାହିତ୍ୟିକ ଆନ୍ଦୋଳନର ଇତିବୃତ୍ତ ମଧ୍ୟ ଅତ୍ୟନ୍ତ ଚମତ୍କାର ଭାବରେ ସ୍ଥାନ ଲାଭ କରିଛି । ଗୋପବନ୍ଧୁ, ବ୍ରଜସୁନ୍ଦର ଦାସ, ମି: ମଧୁସୂଦନ ଦାସ, ମହାତ୍ମାଗାନ୍ଧୀ, ସୁଭାଷଚନ୍ଦ୍ର ବୋଷ, ପ୍ରଭୃତଙ୍କ ଅନନ୍ତ ମିଶ୍ର, ଐତିହାସିକ କୃପାସିନ୍ଧୁ ମିଶ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ମହନୀୟ ବ୍ୟକ୍ତିମାନଙ୍କ ସମ୍ପର୍କରେ ଅନେକ ମଧୁମୟ ସ୍ମୃତି କଥା ଏହି ଜୀବନଚରିତକୁ ସମୃଦ୍ଧ ଓ ଆକର୍ଷଣୀୟ କରିଅଛି । ବିଶେଷତଃ ଓଡ଼ିଶାର ରାଜନୈତିକ ତଥା ସାହିତ୍ୟିକ ଆନ୍ଦୋଳନରେ ଆଧୁନିକ ଯୁଗରେ ସତ୍ୟବାଦୀ ବିଦ୍ୟାଳୟ ସ୍କୁଲର ଭୂମିକା ଏହି ଶତାବ୍ଦୀର ପ୍ରଥମ ଦୁଇଗୋଟି ଦଶକ ମଧ୍ୟରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପଣ୍ଡିତ ନୀଳକଣ୍ଠଙ୍କ ଲେଖନୀରେ ସମକାଳୀନ ଘଟଣାବଳୀ ଓଡ଼ିଆ ସାହିତ୍ୟ ଓ ରାଜନୀତିର ତଥା ସାଂସ୍କୃତିକ ଆନ୍ଦୋଳନର ନବଦିଗନ୍ତ ସୃଷ୍ଟି କରିଥାଏ । ଉକ୍ତ ଜୀବନଚରିତରେ ଅନେକ ସ୍ଥାନରେ ବର୍ଣ୍ଣନା ଉପନ୍ୟାସ ପରି ଅତ୍ୟନ୍ତ ଆକର୍ଷଣୀୟ ଏବଂ ସ୍ୱୋପାଖ୍ୟାନର । ଉଦାହରଣ ସ୍ୱରୂପ ପଣ୍ଡିତ ନୀଳକଣ୍ଠଙ୍କ "ନଣ ଆନ୍ଦୋଳନ, ପ୍ରସଙ୍ଗ ଉଦ୍ଧାର କରାଯାଇପାରେ ।

"ପଣ୍ଡିତମାନେ ମୋର ଲୋକବରିଷ୍ଠ କିମ୍ବା ଲୋକଙ୍କୁ ବୁଝାଇବାପାଇଁ ସଙ୍କେତ ସ୍ୱରୂପ ନଣଟାକୁ ଦେଖାଇଦେଲେ; ତେଣୁ ସେ କାଳର ଜାତି ବର୍ଣ୍ଣ ଭେଦ ହଠାଇବାପାଇଁ ଯେଉଁ ବିରାଟ ସାମାଜିକ ଆନ୍ଦୋଳନ ହୋଇଥିଲା, ତାହାର ନାମଟି ହେଉଛି 'ନଣ ଆନ୍ଦୋଳନ ।" ( ନୀଳକଣ୍ଠ ଗ୍ରନ୍ଥାବଳୀ—୧ମ ଭାଗ—ପୃ: ୬୪ )

ସେ କାଳର ଓଡ଼ିଶାର ଚିତ୍ର ଦେବାକୁ ଯାଇ ପଣ୍ଡିତଙ୍କ ଲେଖିଛନ୍ତି—

"ସେତେବେଳେ ଓଡ଼ିଶାର ପ୍ରଧାନ ରାଜନୀତି ଥିଲା, ସମାନ୍ତ ଓଡ଼ିଆଭୂମି ସବୁ ଉପରେ ଓଡ଼ିଶାରେ ମିଶିବ । ଏହା ୧୯୧୧ ଜନଗଣନାର ପୂର୍ବର କଥା । ତଥାପି ୧୯୦୧ ସାଲରୁ ମେଦିନୀପୁରର ଓଡ଼ିଆ କୈବର୍ତ୍ତମାନେ ନିଜକୁ ମାହିଷ୍ୟ ବୋଲି କହି ବଙ୍ଗାଳୀ ହୋଇଥିଲେ । ଓଡ଼ିଶାର ରାଜାମାନେ ମଧ୍ୟ ତାଙ୍କ ପିଚ୍ଛ ଧରିଥିଲେ । × × × ମୋଟକଥା ଓଡ଼ିଆ ସଂସ୍କୃତି ଗୁଡ଼ିକ ନିଜର ସଂସ୍କୃତିକୁ ବଙ୍ଗାଳୀ କରିବାପାଇଁ ଏମାନଙ୍କର ଘୋର ଚେଷ୍ଟା କମେ ପ୍ରକାଶ ପାଇଲା । ପୂର୍ବରୁ ଏ ଦେଶରେ ବଙ୍ଗାଳୀମାନଙ୍କର ଉପରେ ପ୍ରଚୁର ଓ ପ୍ରତିଷ୍ଠା ପ୍ରକାଶ ପାଇଥିଲା, ତାହାର ସ୍ପଷ୍ଟ ଆଭାସ ସ୍ୱର୍ଗତ ଫକୀରମୋହନ

ସେନାପତିଙ୍କ ଜୀବନୀରୁ ମିଳିବ । × × × ଏହି ଫଳରେ ୧୯୦୧ ସାଲର ଓଡ଼ିଆ ଗଣତିରେ ଅନାଶଙ୍କିତ ଭାବରେ ମେଦିନୀପୁରର ଓଡ଼ିଆ ଅଞ୍ଚଳରେ ଓଡ଼ିଆର ସଂଖ୍ୟା ସେଥିପାଇଁ ଶତକଡ଼ା ୮୦।୯୦ ପରିମାଣରେ କମିଯାଇଥିଲା ତାହା ଗୋପବନ୍ଧୁ ବାବୁଙ୍କୁ ବିଢ଼ ବାଧିଥିଲା ।"

( ନୀଳକଣ୍ଠ ଗ୍ରନ୍ଥାବଳୀ—୧ମଭାଗ—ପୃ, ୪୯-୫୦ )

ଆଲୋଚ୍ୟ ଜୀବନଚରିତ ମୁଖ୍ୟତଃ ବ୍ୟକ୍ତିକସ୍ଥ ଆଲୋଚନାରେ ଭରପୂର । ସେଥିପାଇଁ ବେଳେ ବେଳେ ନୀଳକଣ୍ଠଙ୍କ ମତାମତ ସହିତ ପାଠକ ଏକମତ ହୁଏ ନାହିଁ, ସୁସ୍ଥ ଓ ସ୍ୱାଭାବିକ ମନରେ ଗ୍ରହଣ କରିବାକୁ କୁଣ୍ଠିତ ହୁଏ । କେତେକ ସ୍ଥଳରେ ଅନୁଷ୍ଠାନ ଓ ବ୍ୟକ୍ତି ବିଶେଷଙ୍କ ପ୍ରତି ତାଙ୍କର ବିଦ୍ରୁପ ଓ ଅନୁଦାର ମତ ପାଠ କରି ପାଠକ ବିଚଳିତ ହୋଇପଡ଼େ । ତଥାପି ଏହି ଜୀବନଚରିତର ସାହିତ୍ୟିକ ଓ ଐତିହାସିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ । ବୋଧହୁଏ ପରିଣତ ବୟସରେ ଏହି ଜୀବନଚରିତ ଲେଖାଯାଇଥିବାରୁ ସ୍ମୃତିଚାରଣ କାଳରେ ବିସ୍ମୃତି-ସଙ୍କଟ ସମସ୍ୟା ଦେଖା ଦେଇଥିବା ସ୍ୱାଭାବିକ । ସୁସ୍ଥ ମନ ଓ ଶରୀରରେ ବହୁ ପୂର୍ବରୁ ଯଦି ଏହି ଜୀବନଚରିତ ଲେଖାଯାଇ ପାରିଥାନ୍ତା, ତାହାହେଲେ ଓଡ଼ିଆ ଗଦ୍ୟ ସାହିତ୍ୟ ଏବଂ ସାଂସ୍କୃତିକ ଇତିହାସ କ୍ଷେତ୍ରରେ ଏହା ହୋଇଥାନ୍ତା ଏକ ଅଭୁଳନୀୟ କୃତି ।

"ଦୃଷ୍ଟିପାତ," ଓଡ଼ିଆ ସାହିତ୍ୟରେ ଜଣେ ଶିକ୍ଷାବିତ୍‌ର ଆତ୍ମକଥା । ୧୯୬୫ ସାଲରେ ଏହା ମୁଦ୍ରିତ ହୋଇଥିଲା । ଲେଖକ ଅଧ୍ୟକ୍ଷ ବ୍ରଜମୋହନ ସେନାପତି ଓଡ଼ିଆ ସାହିତ୍ୟର କଥାସମ୍ରାଟ ଫକୀରମୋହନଙ୍କର ପରବର୍ତ୍ତୀ ବଂଶଧର । ଜଣେ ଶିକ୍ଷାବିତ୍‌ ହିସାବରେ ସେ ଆଦର୍ଶପ୍ରାଣ ଥିଲେ ଏବଂ ନିଜର ଅନୁଭୂତି ତରୁଣ ସମାଜ ଆଗରେ ଉପସ୍ଥାପିତ କରିବାର ଉଦ୍ଦେଶ୍ୟ ହେଉଛି ସେମାନଙ୍କର କଲ୍ୟାଣ କାମନା କରିବା । ଦୃଷ୍ଟିପାତର "ପୂର୍ବାଭ୍ୟାସ" ଲେଖିବା ପ୍ରସଙ୍ଗରେ ସେ କହିଛନ୍ତି—

"ସାରାଜୀବନର ସୁଖସୌଭାଗ୍ୟ ଓ ଦୁଃଖ ଦୁର୍ଦ୍ଦଶାର ଅନୁଭୂତି ବୃଦ୍ଧର ମାନସପଟରେ ଅଙ୍କିତ ହୋଇ ରହିଥାଏ । ପରବର୍ତ୍ତୀ ବଂଶଧରଗଣ ତାହାର ପୁଞ୍ଜୀଭୂତ ଅଭିଜ୍ଞତାରୁ ବହୁ ମୂଲ୍ୟବାନ୍ ଶିକ୍ଷାଲାଭ କରନ୍ତି । ବୃଦ୍ଧର ଅତୀତ କାହାଣୀ ତରୁଣ ତରୁଣୀମାନଙ୍କ ପଥ ପ୍ରଦର୍ଶକ ହୋଇଥାଏ । × × × ଯେ କୌଣସି ଲୋକର ଜୀବନୀ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ, ସେ ଉତ୍‌ଥାନ ଓ ପତନ ମଧ୍ୟଦେଇ ଗତିକରେ ଯେ ଯେତେ ଦୀର୍ଘାୟୁ ହୁଏ, ସେ ସେତେ ଅଭିଜ୍ଞତା ଲାଭ କରେ । ସପ୍ତତିବର୍ଷର ଜଣେ ବୃଦ୍ଧର ଅତୀତ ଜୀବନର କାହାଣୀ ଏହି ପୁସ୍ତକରେ ବର୍ଣ୍ଣିତ ହୋଇଅଛି ।

ତାହାଙ୍କ ନିଜର ଅଭିଜ୍ଞତାରୁ ଲେଖକ ସମାଜ ଓ ଜୀବନ ସମ୍ପର୍କରେ ଅନେକ ମୂଲ୍ୟବାନ ଶିକ୍ଷଣୀୟ ଉପଦେଶ, ପ୍ରଦାନ କରିଯାଇଅଛନ୍ତି । ୧୯୬୭ ମସିହାରେ ଉଚ୍ଛୃଙ୍ଖଳ

ଛାତ୍ର ସପ୍ତମ ଶ୍ରେଣୀ ପରୀକ୍ଷାରେ କପି କରି ଧରା ପଡ଼ିବାରୁ ସହକାରୀ ହେଡ଼ମାଷ୍ଟରଙ୍କ ପ୍ରତି ଅତ୍ୟନ୍ତ ଅଶୋଭନୀୟ ଆଚରଣ ପ୍ରଦର୍ଶନ କରିଥିଲା । ସାଂପ୍ରତିକ କାଳରେ ଦେଶବ୍ୟାପୀ ଛାତ୍ର ବିଶୃଙ୍ଖଳା ଏବଂ ବିଶ୍ୱବିଦ୍ୟାଳୟମାନେ ଅଶାନ୍ତ ଲକ୍ଷ୍ୟ କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ୧୯୬୭ ସାଲର ସେହି ଘଟଣା ସମ୍ପର୍କରେ ଶ୍ରୀଯୁକ୍ତ ସେନାପତି ଲେଖିଥିଲେ—

"ଘଟଣା ଗୁଡ଼ିକର ପୂର୍ବାପର ବିଶ୍ଳେଷଣ କରି ମୋର ଦୃଢ ପ୍ରତୀତି ଜନ୍ମିଛି ଯେ ଛାତ୍ରମାନଙ୍କର ଅଶୋଭନୀୟ ଆଚରଣ ସକାଶେ କେବଳ ଛାତ୍ରମାନେ ପୁରା ଦାୟୀ ନୁହଁନ୍ତି । ଶିକ୍ଷକମାନଙ୍କର ମଧ୍ୟ ଦୋଷ ଦୁର୍ବଳତା ଅଛି । ତଦୁପରି ପିତାମାତା ଓ ଅଭିଭାବକମାନେ ମଧ୍ୟ ବିଦ୍ୟାଳୟର କେତେକ କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରି ବିଦ୍ୟାଳୟର ସୁସ୍ଥ ବାତାବରଣକୁ ବେଳେବେଳେ କଳୁଷିତ କରୁଅଛନ୍ତି । ତା ଛଡ଼ା ଦେଶର ରାଜନୈତିକ ଦଳ ମାନଙ୍କର ପ୍ରଭାବ ଛାତ୍ରସମାଜ ଉପରେ ପଡୁଥିବାରୁ କେତେକ ଛାତ୍ରନେତା ଗୋଟିଏ ଗୋଟିଏ ଦଳର ଇଙ୍ଗିତରେ ପରିଚାଳିତ ହେଉଅଛନ୍ତି । ଫଳତଃ କଥା କଥାକେ ଆଜିକାଲି ଛାତ୍ରମାନେ ବିକ୍ଷୋଭ ପ୍ରଦର୍ଶନ କରି ଧର୍ମଘଟର ଆହ୍ୱାନ ଦେଉଅଛନ୍ତି । ଛାତ୍ରସମାଜର ଏହି ଶୃଙ୍ଖଳାହୀନ ପ୍ରବାହ ଦେଶର ଭବିଷ୍ୟତ ପ୍ରତି ଶୁଭସୂଚକ ନୁହେଁ ।

(—ପୃ ୬୮)

ଏବେ ମଧ୍ୟ ଏହି ଉକ୍ତିର ସତ୍ୟତା ଅନୁଭୂତ ହୋଇଥାଏ । ଲେଖକ ମୁଖ୍ୟତଃ ଆଜୀବନ ଶିକ୍ଷକ ଥିଲେ ଅଥବା ଶିକ୍ଷା ବିଭାଗୀୟ କର୍ମଚାରୀ ହିସାବରେ କାର୍ଯ୍ୟ କରିଥିଲେ । ତେଣୁ ଏଥିରେ ନିଜର ବ୍ୟକ୍ତିଗତ ଅନୁଭୂତି ଛଳରେ ଓଡ଼ିଶାର ଶିକ୍ଷାବିଭାଗର ବହୁତଥ୍ୟ ପ୍ରଦତ୍ତ ହୋଇଅଛି । ଗୋଟିଏ କଥା ଇଂରେଜୀରେ କୁହାଯାଇଛି —The end of writing is to instruct, the end of literature is to instruct by pleasing." ମନେହୁଏ 'ଦୃଷ୍ଟିପାତ' ଏକ ସୁଖପାଠ୍ୟ ଚରିତ ଗ୍ରନ୍ଥ ନୁହେଁ । ଏହାର ସାହିତ୍ୟିକ ମୂଲ୍ୟ ଅପେକ୍ଷା ଶିକ୍ଷାଗତ ଦାବୀ ଅଧିକ ।

ଶ୍ରୀ ଚନ୍ଦ୍ରଶେଖର ମିଶ୍ରଙ୍କ 'ସତ୍ୟବାଦୀରେ ସାତବର୍ଷ' ଏକ ସ୍ମରଣୀୟ ଜୀବନ-କାହାଣୀ । ଏହା ୧୯୬୬ରେ ପ୍ରକାଶିତ ହୋଇଥିଲା । ଆଲୋଚ୍ୟ ପୁସ୍ତକ ଏକ ମୂର୍ତ୍ତିଙ୍କ ଜୀବନଚରିତ ଭାବରେ ଆଖ୍ୟାତ ହୋଇ ପାରିବ ନାହିଁ । କାରଣ ଜୀବନର ମାତ୍ର ସାତୋଟି ବର୍ଷର ଅନୁଭୂତି ଏଥିରେ ଚିତ୍ରିତ ହୋଇଅଛି । ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ଛାତ୍ର ହିସାବରେ ଏହା ଥିଲା ଲେଖକଙ୍କର ଅଙ୍ଗେ ନିଭାଇବା କଥା । ତେଣୁ ବହୁସ୍ଥଳେ ଛାତ୍ରର ବ୍ୟକ୍ତିଗତ ଅନୁଭୂତି ଅତ୍ୟନ୍ତ ମନୋମୁଗ୍ଧକର ଭାଷାରେ ଲିପିତ ହୋଇଅଛି । ପଣ୍ଡିତ ଗୋପବନ୍ଧୁଙ୍କ ତ୍ୟାଗପୂତ ଜୀବନ, କର୍ମପ୍ରବଣତା, ଓ ଆତ୍ମତ୍ୟାଗରେ ଉତ୍କଳ ଅଭିବ୍ୟକ୍ତି ବକୁଳ ସତ୍ୟବାଦୀରେ ଶିକ୍ଷାଦାନ ପଦ୍ଧତି, ଛାତ୍ର ଜୀବନରେ ଶୃଙ୍ଖଳା, ଏକ୍ରାଗତା, ଆଦର୍ଶ ଶିକ୍ଷକମାନଙ୍କର ନିଷ୍ଠା ଓ ସାଧନା ପ୍ରଭୃତି ପାଠ କଲେ ଜନସାଧାରଣ ପାଠର ପ୍ରେମଶ୍ଚ ଜାତ ହୁଏ । ଦେଶବାସୀଙ୍କ ସ୍ମୃତିରେ ଅକ୍ଷର ହୋଇ ରହିଥିବା ସତ୍ୟବାଦୀ ଅନୁଷ୍ଠାନର ଇତିହାସ ଏଥିରେ ପ୍ରାଧାନ୍ୟଲାଭ

କରିବା ସ୍ୱାଭାବିକ ହେଲେହେଁ ଲେଖକଙ୍କର ବିଷୟ ଉପସ୍ଥାପନା ଏବଂ ବର୍ଣ୍ଣନାଶୈଳୀ ପାଠକ ପାଖରେ ଗମ୍ଭୀର ଭାବରେ ରେଖାପାତ କରିଥାଏ । ତେଣୁ ସାହିତ୍ୟର ଇତିହାସରେ ଆତ୍ମଚରିତ ଅଧ୍ୟାୟରେ ଆଲୋଚ୍ୟ ପୁସ୍ତକ ଅତ୍ୟନ୍ତ ଉଲ୍ଲେଖଯୋଗ୍ୟ ।

'ଜୀବନ-ତରଙ୍ଗ' ଜଣେ ଶିକ୍ଷାବିତ୍‌ଙ୍କର ଆତ୍ମକଥା । ଆଜୀବନ ଶିକ୍ଷକ ଓ ପ୍ରସିଦ୍ଧ ଶିଶୁ ସାହିତ୍ୟ ଲେଖକ ଶ୍ରୀ ରାମକୃଷ୍ଣ ନନ୍ଦ ୧୯୭୯ ସାଲରେ ଏହି ଆତ୍ମଚରିତ ପ୍ରକାଶ କରିଥିଲେ । ଏହା ଏକ ସୁଖପାଠ୍ୟ ଓ ଶିକ୍ଷଣୀୟ ଆତ୍ମଚରିତ । କାହିଁକି ସେ ଏହି ଆତ୍ମଚରିତ ଲେଖିବାପାଇଁ ଆଗ୍ରହୀ ହେଲେ, ତାର କୈଫିୟତ ପ୍ରସଙ୍ଗରେ ଲେଖକ ଲେଖିଥିଲେ—"ଭାବି ଜୀବନରେ ପ୍ରତିଷ୍ଠାଲାଭ କରିଥିବା ବ୍ୟକ୍ତିମାନେ ଆତ୍ମଜୀବନୀ ଲେଖିଲେ ତାର କିଛି ମୂଲ୍ୟ ଥାଏ ମୁଁ କାହିଁକି ଲେଖିବି ? ମୋ ଜୀବନରେ ବହୁ ଜୁଆର ଭଟ୍ଟା ଘଟିଛି ଏବଂ ମୁଁ ତାକୁ ଅତିକ୍ରମ କରି ଶୁଖିଲ ଭୂଇଁକୁ ଉଠି ଆସିଛି, ଏକଥା ସତ; କିନ୍ତୁ ଏପରି କ'ଣ ଅନ୍ୟମାନଙ୍କ ଜୀବନରେ ଘଟି ନାହିଁ ?

ପୁଣି ଭାବିଲି, ମୁଁ ଜଣେ ଶିକ୍ଷକ । ଉତ୍କଳର ଜାତୀୟ ବିଦ୍ୟାଳୟ ସତ୍ୟବାଦୀର ବକୁଳ କୁଞ୍ଜବନ କୁଞ୍ଜରେ ଗଢ଼ା ହୋଇଥିଲା ମୋର ମନ । ସ୍ୱାଧୀନ ଭାବରେ ଅନୁପ୍ରାଣିତ ହୋଇ ମୁଁ ଗଢ଼ି ଆସିଛି କେତୋଟି ଜୀବନ, ଶତକଡ଼ା ମହି ପର ସେ ସବୁ ନରମ ଥିଲେବେବେ । ସ୍ୱାଧୀନ ଭାରତରେ ଶିକ୍ଷକର ଭୂମିକା ଉଚିତର ସ୍ୱୀକୃତି ନ ପାଇଲେ ବି ତାର ମହତ୍ତ୍ୱ କେବେ ମଳିନ ହିବ ନାହିଁ । ଜୀବନ ଗଢ଼ିବାରେ ଯେଉଁ ଆନନ୍ଦ, କାବ୍ୟ ବା କୀର୍ତ୍ତି ନିର୍ମାଣର ଆନନ୍ଦଠାରୁ ତାହା ଊଣା ନୁହେଁ । × × × ଯଦି କେତୋଟି ହୃଦୟରେ ଏହି କର୍ମପ୍ରେରଣା, ଆତ୍ମନିର୍ଭରଶୀଳତା ଜାଗ୍ରତ ନ କରେ, ତେବେ ଏହି ଶିକ୍ଷକର ଜୀବନ ଲେଖା ସାର୍ଥକ ହେବ; ଏହି ବିଶ୍ୱାସରେ ବଳୀୟାନ ହୋଇ ମୁଁ ଜୀବନୀଲେଖା ଆରମ୍ଭ କରିଥିଲି ।

ବାସ୍ତବିକ ଏହି ଅନୁରୋଧରେ ଲେଖକଙ୍କର ଏହି ଆତ୍ମଚରିତ ଏକ ସାର୍ଥକ ଜୀବନଲିପି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ ଅତିରଞ୍ଜିତ୍ତ ନାହିଁ । ଆଡ଼ମ୍ବର, ଆଟୋପ ଅଥବା ପକ୍ଷପାତିତାର ଆତ୍ମମୁଗ୍ଧ୍ୟ ନାହିଁ । ସରଳ ଭାବରେ ସାବଲୀଳ ଶୈଳୀ ମାଧ୍ୟମରେ ଏକ ସଂଗ୍ରାମୀ ଜୀବନର କାହାଣୀ ନିର୍ମମ ଭାବରେ ବିବୃତ ହୋଇଅଛି । ଉଦାହରଣ ସ୍ୱରୂପ ନିଜର ଜନ୍ମଭିଟା, ଯାହା ୧୯୫୫ ମହାନଦୀର ବନ୍ୟାରେ ମାଟିରେ ମିଶି ଯାଇଛି, ତାହାର ବର୍ଣ୍ଣନା ଲେଖକଙ୍କର ଯାଦୁକରୀ ଲେଖନୀରେ ଅତ୍ୟନ୍ତ ମନୋଜ୍ଞ ହୋଇଅଛି । ସେ ଲେଖିଥିଲେ -

"ବିରାଟ ବସ୍ତି ଭିତରେ ସେଇ ଟିକକ ଥାନ ଥିଲା ମୋର ଶୈଶବର ସ୍ୱପ୍ନପୁରୀ ମାଟିର ଘର, କେଉଁଠି କୋଠିଏ ହେଲେ ଝରକା ନ ଥାଏ । ଗୁଳରେ ଅଙ୍କାବଙ୍କା କଣ୍ଟା-ବାଉଁଶର ବୁଦା । ଏଁଳ ପଟକୁ ଥିବା ସେଇ ବାଉଁଶର ନଳା ଭିତରେ ଚେମେଣି ଚଢ଼େଇ ବସା ବାନ୍ଧିଥାନ୍ତି । ଡିମଣା ସାଧ ମୂଷା ଖାଇବା ଲାଗି ଥରେ ଥରେ ସେ ଗୁଳରେ ପଶି

ପରିକ୍ରମା କରେ । ବର୍ଷାବେଳେ ସେ ଚାଳରୁ କସରା ପାଣିର ସମାନ୍ତରାଳ ଧାର ଗଡ଼ି ଚାଲିଥାଏ । ଅଗଣାରେ ପାଣିଫୋଟକାମାନେ ଘଣ୍ଟୁଆର କରନ୍ତି । ଯେତେବେଳେ ଗୋଡ଼ ଚିପି ଚିପି ଚାଲିଲେ ବି କଚଡ଼ା ଖାଇବାକୁ ହୁଏ । ଶୀତଦିନ ସନ୍ଧ୍ୟାରେ ସେଇଠାରେ ଚୁଲିମୁଣ୍ଡେ ବସି ବୁଢ଼ୀ ମା ଓ ପିଉସୀମାନେ ଆମକୁ ଭୂତପ୍ରେତ ଓ ରଜାପୁଅର କାହାଣୀ ଶୁଣାନ୍ତି । ଗ୍ରୀଷ୍ମ ରାତିରେ ସେଇ ଅଗଣାରେ ଝିଙ୍କୁରୀ ପଟିରେ ଶୋଇ ଶୋଇ ମେଘ ଫାଙ୍କରେ ଆମେ ଜହ୍ନମାମୁଁର ଲୁଚକାଳି ଦେଖୁ । କେତେ ଯେ ପୂଜାର୍ଥ ପର୍ବ, ପିଠାପଣା, ହସକନ୍ଦ, ସ୍ନେହ ଶରଧା, ଅଳି ଅର୍ଦ୍ଦଳର ମଧୁବୋଲା ସ୍ମୃତି ସେ ଛୋଟ ଘରଟିକରେ ଜଡ଼ିତ ଅଛି, ତାର ଇୟତ୍ତା ନାହିଁ । ସେହି ଘରୁ ଗୋଡ଼ କାଢ଼ି ଦୂର ଜାଗାକୁ ପଢ଼ିବାକୁ ଗଲାବେଳେ ସବୁଥର ଝରିପଡ଼େ ଧାର ଧାର ଲୁହ । ଛୁଟିପରେ ସେଇଘରେ ଆସି ପାଦ ଦେଲା ମାତ୍ରେ ପ୍ରାଣ ପୁଣି ଅପୂର୍ବ ପୁଲକରେ ଭରିଯାଏ ।" (—ଜୀବନ-ତରଙ୍ଗ-ପୃ-୧-୨)

ଆଜୀବନ ଜଣେ ଆଦର୍ଶ ଶିକ୍ଷକ ଭାବରେ ରାମକୃଷ୍ଣ ବାବୁ ଶିକ୍ଷାନୁଷ୍ଠାନ ଏବଂ ଛାତ୍ର-ମାନଙ୍କୁ ଗଢ଼ିବାର ଦାୟିତ୍ୱ ଗ୍ରହଣ କରିଥିଲେ । ପରେ 'ସଂସାର ପ୍ରେସ' ପ୍ରତିଷ୍ଠା କରି ନିଜର କର୍ମକୁଶଳତାର ଯେଉଁ ପରିଚୟ ଦେଇଥିଲେ ତାର ତୁଳନା ନାହିଁ । ଶିଶୁ ସାହିତ୍ୟର ଲେଖକ ହିସାବରେ ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ । ତାଙ୍କର ସମଗ୍ର ଜୀବନ ଇତିହାସର ଆଭିମୁଖ୍ୟ ହେଲା ଏହିପରି "ସୁତରାଂ ପୁଣି ସଂଗ୍ରାମ କରିବାକୁ ହେବ, ଜୀବନ-ସଂଗ୍ରାମ, କଠୋର ଜୀବନ-ସଂଗ୍ରାମ । ଛୋଟ ହେଉ, ବଡ଼ ହେଉ, ଜୀବନଟା ତ ସଂଗ୍ରାମର ସମଷ୍ଟି । × × × ସେଇ ସଂଗ୍ରାମ ହେଉଛି ମୋର ଜୀବନସାଥୀ । ଏହି ଜୀବନ ଯୁଦ୍ଧରେ ଜୟ ପରାଜୟ ମଧ୍ୟ ଲାଗି ରହିଛି, କିନ୍ତୁ ବିଫଳତାର ଆଶଙ୍କା ମୋ ଆତ୍ମପ୍ରତ୍ୟୟକୁ କେବେ ପଙ୍ଗୁ କରି ପାରିନାହିଁ ।"
(—ଜୀବନ-ତରଙ୍ଗ-ପୃ-୧୪୯)

ଦୃଢ଼ ଆତ୍ମପ୍ରତ୍ୟୟ ରାମକୃଷ୍ଣ ବାବୁଙ୍କ ଜୀବନର ମୂଳମନ୍ତ୍ର ଥିଲା । ତେଣୁ ସେ କୌଣସି ସମସ୍ୟାର ସମ୍ମୁଖୀନ ହୋଇଛନ୍ତି, ତାହା ସେ ସଫଳତାର ସହିତ ସମାଧାନ କରିଛନ୍ତି ଏବଂ ଜୀବନଯୁଦ୍ଧରେ ଉତ୍ତୀର୍ଣ୍ଣ ମଧ୍ୟ ହୋଇଛନ୍ତି । କର୍ମକ୍ଷେତ୍ରରେ ସେ କେବେ କ୍ଲାନ୍ତ ବା ପରାକ୍ରାନ୍ତ ହୋଇ ନାହାନ୍ତି । ଏହି ଲିପିବଦ୍ଧ ଅନୁଭୂତି ଉପନ୍ୟାସ ସୁଲଭ ଶୈଳୀରେ ବର୍ଣ୍ଣିତ ହୋଇଅଛି । ଅନେକ ଘଟଣା ପାଠ କରୁ କରୁ ପାଠକ ଅନୁପ୍ରାଣିତ ନ ହୋଇ ରହିପାରେ ନାହିଁ । 'ଜୀବନ-ତରଙ୍ଗ' ବାସ୍ତବିକ ତରଙ୍ଗର ସୁଷମା ବହନ କରି ରୂପବନ୍ତ ହୋଇଅଛି ।

"ମୋର ପୂର୍ବସ୍ମୃତି କଥା" ଓଡ଼ିଆ ସାହିତ୍ୟରେ ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଆତ୍ମଚରିତ । ୧୯୬୬ ସାଲରେ ଏହା ପୁସ୍ତକାକାରରେ ପ୍ରକାଶିତ ହୋଇଥିଲେ ହେଁ ଏହି ସାଲର ପୂର୍ବରୁ ଦୀର୍ଘ ୫ ବର୍ଷକାଳ ଲେଖକ ଭରତଚନ୍ଦ୍ର ନାୟକ ଧାରାବାହିକ ଭାବରେ 'ନବଜୀବନ' ସାହିତ୍ୟ ମାସିକ ପତ୍ରିକାରେ ତାଙ୍କର ସ୍ମୃତି କଥା ପ୍ରକାଶ କରିଥିଲେ । ଏହି ଜୀବନସ୍ମୃତି ପାଠ କରି ଉତ୍କଳର ମାୟାଧର ମାନସିଂହ ଲେଖିଥିଲେ—"ଆପଣଙ୍କ ଅଭିଜ୍ଞତା ସବୁ ଏକ ଲୁପ୍ତପ୍ରାୟ ଅନବଦ୍ୟ ସାମାଜିକ ଇତିହାସ । ଏଣୁ [illegible] କାଳରେ ଆପଣଙ୍କର

ନିଜର ସାଧନା, ସୃଷ୍ଟି ଓ ଜୀବନର ଆଦର୍ଶ ବହୁକାଳଯାଏଁ ଅନେକ ସଂଗ୍ରାମୀଙ୍କୁ ପଥ ଓ ସାହସ ଯୋଗାଇବ । ନିଜର ସ୍ମୃତିକଥା ସମ୍ପର୍କରେ ଲେଖକ ସୂଚନାରେ ଲେଖିଥିଲେ ଏହିପରି— "ତଥାପି ମୁଁ ଅନୁଭବ କରୁଅଛି ଯେ, ଯେ କୌଣସି ବିଷୟ ତୁଚ୍ଛ ହେଲେ ମଧ୍ୟ ଜନ୍ମରେ କୌତୁହଳ ଜାତ କରି ଥାଏ । ମୋର ଜନ୍ମସ୍ଥାନ ପୁରାତନ ଗଡ଼ଜାତ ପାଟଣା— ବର୍ତ୍ତମାନ ବଲାଙ୍ଗିର ପାଟଣା ଜିଲାରେ । ମୋର ପ୍ରାଥମିକ ଶିକ୍ଷା ସେହିଠାରେ । ଉଚ୍ଚଶିକ୍ଷା ସକାଶେ, ସ୍ଥାନାନ୍ତରକୁ ଯିବାକୁ ହୋଇଥିଲା । ତତ୍ପରେ କର୍ମକ୍ଷେତ୍ର ହେଲା 'ମେଗଲବନ୍ଦୀ' ଅଞ୍ଚଳ ଓ ଦୁଇ ଦୁଇଟି ଗଡ଼ଜାତ ରାଜ୍ୟ । ବାଲ୍ୟକାଳର ଅବସ୍ଥା ସହିତ ଆଧୁନିକ ପରିସ୍ଥିତି ଆଲୋଚନା କରିବାକୁ ଗଲେ ପୁରାତନ ଘଟଣାବଳୀ ଚକ୍ଷୁ ସମକ୍ଷରେ ଉଜ୍ଜ୍ୱଳ ହୋଇ ନାଚି ଉଠୁଅଛି । ଗଡ଼ଜାତର ଏକଛତ୍ର ଶାସନ, ତତ୍କାଳୀନ ମଧ୍ୟପ୍ରଦେଶର ଶାସନଦଣ୍ଡରେ ପରିଚାଳିତ ସମ୍ବଲପୁର ଓ ପାର୍ଶ୍ୱବର୍ତ୍ତୀ ଗଡ଼ଜାତ ରାଜ୍ୟଗୁଡ଼ିକର ଶିକ୍ଷାଦୀକ୍ଷା, ଶାସନ ପଦ୍ଧତି, ପାଟଣା ରାଜ୍ୟରେ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷାର ପ୍ରବର୍ତ୍ତନ, ଏଜେନ୍ସି ଇନ୍‌ସପେକ୍ଟର 'ଶ୍ମଶ୍ରୁ-ପ୍ରବୃଦ୍ଧି ଜନିତାନନ ବିକୃତି, କଣ୍ଟକିତ-ଦୀର୍ଘ ଦଣ୍ଡ-ଶୋଭିତ, ଦେଶୀକସରତ- ପ୍ରତିଷ୍ଠାତା ଗଣପତିଲାଲ ଚୌବେଙ୍କ ସ୍କୁଲ ପରିଦର୍ଶନ ସମୟର କର୍ତ୍ତବ୍ୟୋନ୍ମାଦନା, ମରହଟ୍ଟା ହାକିମମାନଙ୍କ କର୍ତ୍ତବ୍ୟନିଷ୍ଠା, (ଛପନସାଲ, ୧୮୯୯)ର କରାଳ ଦୁର୍ଭିକ୍ଷ, ବଂଶୀଆର ନେତୃତ୍ୱରେ ତକାସ୍ୟୁତିଦଳଙ୍କ ରାଜ୍ୟବ୍ୟାପୀ ଲୁଣ୍ଠନ, ସମ୍ବଲପୁର ସହିତ ସେହି ଅଞ୍ଚଳର ସ୍କୁଲ ଓ ଅଦାଲତରୁ ଓଡ଼ିଆ ଭାଷାର ନିର୍ବାସନ ଓ ତତ୍ପରବର୍ତ୍ତୀରେ ହିନ୍ଦିଭାଷାର ପ୍ରଚଳନ, ଏହା ବିରୁଦ୍ଧରେ ଦେଶବ୍ୟାପୀ ଆନ୍ଦୋଳନ ଏବଂ ଏହି ଫଳରେ ଏହି ଅଞ୍ଚଳର ଓଡ଼ିଶା ସହିତ ସମ୍ମିଶ୍ରଣ—ଏ ସମସ୍ତ ଅନୁଭୂତି ମୂଳକ । ଏ ସମସ୍ତ ଘଟଣା ମୋର ଯୁବାବସ୍ଥାର । ସରକାରୀ କାର୍ଯ୍ୟରେ ରହି ଦୁଇଗୋଟି ଗଡ଼ଜାତ ରାଜ୍ୟ, ଢେଙ୍କାନାଳ ଓ ବଣେଇରେ ଦେଓ୍ୱାନୀ କରିବାକୁ ହୋଇଥିଲା । ଏହି ଅଞ୍ଚଳ ସମ୍ବନ୍ଧରେ ଅନୁଭୂତିନିଚୟ ମଧ୍ୟ ଲେଖନର ବିଷୟ । ଏ ସମସ୍ତ ବିଷୟ ଶିକ୍ଷଣୀୟ ନ ହେଲେ ମଧ୍ୟ ମୋର ଆଶା ଏହା ପାଠକମାନଙ୍କ ଅନୁପଭୋଗ୍ୟ ହେବ ନାହିଁ ।"

ବାସ୍ତବିକ ଲେଖକଙ୍କର ଶେଷୋକ୍ତ ମତାମତ ଅକ୍ଷରେ ଅକ୍ଷରେ ସତ୍ୟ ହୋଇଅଛି । ଏହି ଜୀବନସ୍ମୃତି କେବଳ ଉପଭୋଗ୍ୟ ନୁହେଁ, ଅତ୍ୟନ୍ତ ଶିକ୍ଷଣୀୟ ମଧ୍ୟ । ଫକୀରମୋହନ ସେନାପତିଙ୍କ ଆତ୍ମଚରିତକୁ ବାଦଦେଲେ ଏପରି ବିଚିତ୍ର ବର୍ଣ୍ଣନାବହୁଳ ବିବରଣୀ ଆଉ କୌଣସି ଆତ୍ମଚରିତରେ ପଢ଼ିବାକୁ ମିଳେ ନାହିଁ । ଅବଶ୍ୟ ଫକୀରମୋହନଙ୍କ ରଚନାଶୈଳୀ ଏଥିରେ ନାହିଁ । ଉଦାହରଣ ସ୍ୱରୂପ ଫକୀରମୋହନଙ୍କ ନଅଙ୍କ ଦୁର୍ଭିକ୍ଷର କରାଳଚିତ୍ର ପାଠକ ପ୍ରାଣରେ ଯେଉଁ କ୍ରନ୍ଦନ ସୃଷ୍ଟି କରେ, ଆଲୋଚ୍ୟ ସ୍ମୃତିକଥାର 'ଛପନ ସାଲର ଦୁର୍ଭିକ୍ଷ' ସେହିପରି ଚିତ୍ର ପ୍ରଦାନ କରିବାକୁ କ୍ଷମ ହୋଇ ପାରିନାହିଁ । ତେବେ ସେ କାଳର ବହୁ ଇତିହାସ ନିଜ ଅଭିଜ୍ଞତା କଥାରୁ ଲେଖକ ବର୍ଣ୍ଣନା କରିଛନ୍ତି । ସେ କାଳର ଅନଭିଜ୍ଞ ପାଠକଲେ ମନରେ ବାସ୍ତବିକ କୌତୁହଳ ଜାତ ହୋଇଥାଏ । ପ୍ରାଚୀନ ଓଡ଼ିଶାର ସାମାଜିକ ଜୀବନକୁ ଜାଣିବା ପାଇଁ ଏହା ଯଥେଷ୍ଟ ସାହାଯ୍ୟ କରିଥାଏ । କେତେକ ଗଡ଼ଜାତରେ ରାଜାମାନଙ୍କର ଚଳଣି, ଇଂରେଜ ରାଜକର୍ମଚାରୀମାନଙ୍କର ବ୍ୟବହାର, ଓଡ଼ିଶାର ଶାସନ ବ୍ୟବସ୍ଥା, ଓଡ଼ିଶାରେ ରାଜ-

ନୈତିକ ଜୀବନର କ୍ରମବିକାଶ ପ୍ରଭୃତି ପ୍ରସଙ୍ଗ ଅତ୍ୟନ୍ତ ଚମତ୍କାର ଭାବରେ ବର୍ଣ୍ଣିତ ହୋଇଯାଇଅଛି । ଲେଖକ ନିଜର ଅନୁଭୂତ ଲିପିବଦ୍ଧ ଛଳରେ ଦୀର୍ଘକାଳର ଓଡ଼ିଶାର ସାମାଜିକ ଜୀବନର ଅତ୍ୟନ୍ତ ଆକର୍ଷଣୀୟ ଚିତ୍ର ପ୍ରଦାନ କରିବାକୁ କ୍ଷମ ହୋଇଅଛନ୍ତି ।

ସୁଖର କଥା ଯେ ଗତ କେତେବର୍ଷ ମଧ୍ୟରେ କେତେକ ସାହିତ୍ୟିକ ସେମାନଙ୍କର ଆତ୍ମଜୀବନୀ ଲେଖିବାପାଇଁ ଆଗ୍ରହୀ ହୋଇଅଛନ୍ତି । ଅବଶ୍ୟ ଏ କ୍ଷେତ୍ରରେ ଫକୀରମୋହନ ହେଉଛନ୍ତି ପଥପ୍ରଦର୍ଶକ । ଔପନ୍ୟାସିକ ଅନନ୍ତଚରଣ ପଣ୍ଡା ୧୯୬୮ ଖ୍ରୀଷ୍ଟାବ୍ଦରେ ତାଙ୍କ ଗ୍ରନ୍ଥାବଳୀର ଦ୍ୱିତୀୟ ଭାଗରେ 'ମୋ ଜୀବନ ସ୍ମୃତି' ଶୀର୍ଷକ ଆତ୍ମଜୀବନୀକୁ ସ୍ଥାନ ଦେଇଛନ୍ତି । ସେ ଆଜୀବନ ସରକାରୀ କର୍ମଚାରୀ ଥିଲେ ଏବଂ କର୍ମମୟ ଜୀବନ ମଧ୍ୟରେ ଓଡ଼ିଆ ସାହିତ୍ୟର ସେବା କରିବା ପାଇଁ ପଶ୍ଚାତ୍ପଦ ହୋଇ ନାହାନ୍ତି । ଲେଖକ ଗ୍ରନ୍ଥର ସୂଚନାରେ ସ୍ୱୀକାର କରିଛନ୍ତି ଯେ ତାଙ୍କର ଜୀବନ ଘଟଣାବହୁଳ ନୁହେଁ, କିନ୍ତୁ ଅନୁଭୂତି ବହୁଳ । ଏହି ଅନୁଭୂତି-ରଞ୍ଜିତ ବିବରଣୀ ଅନେକ ସମୟରେ ରସାଳ ହୋଇ ନଥିବାରୁ ତାହା ପାଠକର ମନକୁ ଛୁଏଁ ନାହିଁ । ତେବେ କେତେକ କୌତୂହଳୋଦ୍ଦୀପକ ବିବରଣୀ ପାଠ କଲେ ଅତ୍ୟନ୍ତ ଆନନ୍ଦ ଅନୁଭୂତ ହୋଇଥାଏ । ଉଦାହରଣ ସ୍ୱରୂପ ୧୯୩୪ ସାଲର ଏକ ବିବରଣୀ ଏହିପରି ।

"ସେତେବେଳେ ସମ୍ବଲପୁରକୁ ବସ ସର୍ଭିସ ନ ଥାଏ । ସମ୍ବଲପୁର ଯିବାକୁ ହେଲେ ଖଡ଼ଗପୁରବାଟେ ଯିବାକୁ ପଡ଼େ । ମୁଁ ସପରିବାର ବରଗଡ଼ ଅଭିମୁଖେ ଯାତ୍ରା କଲି ଖଡ଼ଗପୁର ବାଟେ । × × × ପ୍ରଥମେ ବରଗଡ଼ରେ ପହଞ୍ଚିଲି ପରେ ମୁଁ ବଳଦଗାଡ଼ିରେ ଗସ୍ତ କଲି । କିନ୍ତୁ ସେଥିରେ ସୁବିଧା ହେଲ ନାହିଁ । ସେଥିପାଇଁ ଗୋଟିଏ ମଟରକାର କିଣିଲି । ପୁରୁଣା ଫୋର୍ଡ କାର୍, ମୂଲ୍ୟ ମାତ୍ର ପାଞ୍ଚଶହ ଟଙ୍କା । ସେତେବେଳେ ପୁରୁଣା କାରର ଦାମ ଥିଲା ସେହିପରି । ମାତ୍ର ପାଞ୍ଚଶହଟି ଟଙ୍କାରେ ଗୋଟିଏ ମଟରକାର୍ । ବର୍ତ୍ତମାନ ସାଲରେ କେହି ବିଶ୍ୱାସ କରିବେ ନାହିଁ । କିନ୍ତୁ ସେତେବେଳର ଅବସ୍ଥା ଥିଲା ସେହିପରି । ଟଙ୍କାଟିଏ ଦେଲେ ଚବିଶ ସେର ଚାଉଳ । ଯୋଡ଼ିଏ ପଇସାରେ ସେରେ ବଳଦି ବାଇଗଣ, ଯାହାକୁ ବରଗଡ଼ରେ 'ପାଟଲ ଘଣ୍ଟା' ବୋଲି କହନ୍ତି । ଯାହାହେଉ ମୋଟରକାର୍ କିଣିଲାପରେ ଗସ୍ତ କରିବାରେ ଆଉ କୌଣସି ଅସୁବିଧା ରହିଲା ନାହିଁ । ବରଗଡ଼ର ପ୍ରତି ଗାଁକୁ ମୋଟରକାର୍ ଯାଇପାରେ । କାରଣ ସେଠାକାର ଆଇନ୍ ଅନୁସାରେ ପ୍ରତି ଗାଁକୁ ରାସ୍ତା ହେଉଛି ଯାହାକୁ 'ଧର୍ସା' ବୋଲି କହନ୍ତି । ଏଇ 'ଧର୍ସା'ର ମରାମତିର ଭାର ଥାଏ ଗାଁର ଗୌନ୍ତିଆ ଉପରେ ।

('ଅନନ୍ତପ୍ରସାଦ ଗ୍ରନ୍ଥାବଳୀ—ଦ୍ୱିତୀୟ ଭାଗ-ପୃ-୨୪୯)

ତେବେ ଅନନ୍ତ ପ୍ରସାଦଙ୍କ ଜୀବନସ୍ମୃତି ପାଠ କଲେ ତାଙ୍କର ପ୍ରତ୍ୟେକ ପ୍ରସିଦ୍ଧ ଲେଖାର ପରିବେଶ ସମ୍ପର୍କରେ କେବଳ ଧାରଣା ହୁଏ ନାହିଁ, ଓଡ଼ିଶାର ସାହିତ୍ୟିକ ପାରିପାର୍ଶ୍ୱିକ ସମ୍ପର୍କରେ ଅନେକ କଥା ଜାଣିବାର ସୁଯୋଗ ମିଳିଥାଏ । ତାଙ୍କର ଅନୁଭୂତିସିଦ୍ଧ ଜୀବନରେ ଯେ ଯାହା ଅଙ୍ଗେ ନିଭାଇଛନ୍ତି, ତାର ମୋଟାମୋଟି ଆଭିମୁଖ୍ୟ ହେଲା—"ଜୀବନରେ ଉନ୍ନତି

କରିବାକୁ ହେଲେ କଳ୍ପନା ହିଁ ପ୍ରଥମେ ମନ ମଧ୍ୟରେ ଜାଗ୍ରତ କରିବାକୁ ହେବ । ଭାଗବତରେ ଅଛି— ମନର ମୂଳେ ଏ ଜଗତ । ମନକୁ କେବା ସମରଥ । ବାସ୍ତବିକ ଅତି ନଗ୍ନ ସତ୍ୟକଥା । ମନୁଷ୍ୟ ତା ର ମନ ମଧ୍ୟରେ କଳ୍ପନାର କାଉଁରୀ କାଠି ସ୍ପର୍ଶରେ ଯେଉଁ ଭବିଷ୍ୟତର କଳ୍ପନା କରେ, ସେଇ କଳ୍ପନା ହିଁ ଦିନେ ବାସ୍ତବତାରେ ପରିଣତ ହୁଏ ।"

ଓଡ଼ିଆ ସାହିତ୍ୟର ଅନ୍ୟ ଏକ ଅନବଦ୍ୟ ଆତ୍ମଚରିତ ହେଉଛି "ମୋର ବାରବୁଲା ଜୀବନ" । ଭାରତ ସେବକ ଲକ୍ଷ୍ମୀନାରାୟଣ ସାହୁ ଏହି ଆତ୍ମଜୀବନୀ ଲେଖିଯାଇଥିଲେ ହେଁ ତାଙ୍କର ମୃତ୍ୟୁପରେ ୧୯୬୮ ଖ୍ରୀଷ୍ଟାବ୍ଦରେ ଏହା ପୁସ୍ତକରୂପେ ଆତ୍ମପ୍ରକାଶ କଲା । ଲକ୍ଷ୍ମୀନାରାୟଣ ଥିଲେ ଜଣେ ଅଭୂତକର୍ମୀ ଏବଂ ଅଶାନ୍ତ କର୍ମଯୋଗୀ । ତାଙ୍କର ଜୀବନବ୍ୟାପୀ ସାଧନାର ଅନ୍ତ ନାହିଁ । ସେ ହେଉଛନ୍ତି ଓଡ଼ିଶାର ପ୍ରଥମଲୋକ ଯେ କି ଭାରତର ବିସ୍ତୃତ କର୍ମକ୍ଷେତ୍ରରେ ପ୍ରଥମେ ନିଜକୁ ନିୟୋଜିତ କରି ପ୍ରତିଷ୍ଠିତ ହୋଇଥିଲେ । ସେ ପୁଣି ଥିଲେ ଓଡ଼ିଶାର ତରୁଣ ସମାଜର ପ୍ରେରଣାର ଦୀପ୍ତିମନ୍ତ ପ୍ରତିଭା । ତେଣୁ ତାଙ୍କର ଜୀବନକାହାଣୀ ବାସ୍ତବିକ ଅତ୍ୟନ୍ତ ଲୋଭନୀୟ ଏବଂ ବରଣୀୟ । ତାଙ୍କର ଜୀବନସ୍ମୃତି ସମ୍ପର୍କରେ ବରେଣ୍ୟ ନେତା ହରେକୃଷ୍ଣ ମହତାବ ଲେଖିଥିଲେ ଲକ୍ଷ୍ମୀନାରାୟଣଙ୍କ ଆତ୍ମଜୀବନୀ ହେଉଛି ଏକ ମହତ୍ତ୍ୱ ଜୀବନର ସଂକ୍ଷିପ୍ତ ବିବରଣୀ । ବିଂଶ ଶତାବ୍ଦୀର ଆରମ୍ଭରୁ ଓଡ଼ିଶାରେ ଯେଉଁ କେତୋଟି ପ୍ରତିଭା ଓଡ଼ିଆର ଭାବଧାରାକୁ ପ୍ରଭାବିତ କରି ଓଡ଼ିଆ ସମାଜକୁ ଉନ୍ନତି ମାର୍ଗରେ ଅଧିରୂଢ଼ କରାଇଛନ୍ତି, ସେମାନଙ୍କ ମଧ୍ୟରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ଅନ୍ୟତମ । ବାଲ୍ୟାବସ୍ଥାରୁ ବିପ୍ଳବର ସ୍ୱପ୍ନରେ ମଶ୍‌ଗୁଲ ହୋଇ ଶେଷରେ ସେ ସଫଳକାମ ହୋଇଥିଲେ । ବିପ୍ଳବର ଜୀବନ ସବୁଦା ଏକାକୀ । ସେ ଆସିଥିଲେ, ଗଲେ ମଧ୍ୟ ଏକା, କିନ୍ତୁ ରଖିଦେଇ ଗଲେ ଏକ ବିରାଟ କାହାଣୀ ଅଧ୍ୟବସାୟର, ସେବାପରାୟଣତାର, ସମାଜରେ ନୂତନ ଚେତନାର ଅବତାରଣାର । ଅଜା ସେ ଜୀବନୀ ହୁଏତ ଉପନ୍ୟାସ ପରି ମନେ ହୋଇପାରେ । ବାସ୍ତବିକ ଲକ୍ଷ୍ମୀନାରାୟଣ ବାବୁଙ୍କ ଜୀବନ ଆଦର୍ଶବାଦର ଏକ ଜୀବନ୍ତ ଉପନ୍ୟାସ । ଲକ୍ଷ୍ମୀନାରାୟଣ ସ୍ମୃତି ରକ୍ଷା ସମିତିର ଯୁଗ୍ମସଂପାଦକ ଅଧ୍ୟାପକ ନରସିଂହ ସାହୁ ଯଥାର୍ଥରେ ଲେଖିଥିଲେ— ଲକ୍ଷ୍ମୀନାରାୟଣ ଯଦି କେବଳ ବଞ୍ଚି ରହନ୍ତି, ବଞ୍ଚିବେ ଏଇ ପ୍ରେମ ପାଇଁ, ପ୍ରୀତି ପାଇଁ, ମାନବିକତା ପାଇଁ, ଗଭୀରତା ପାଇଁ, ହୃଦୟବତ୍ତା ପାଇଁ । ମଣିଷ ମଣିଷ । ସବୁ ମଣିଷ ଅମୃତର ସନ୍ତାନ । ସେଠି ହାଡ଼ି ନାହିଁ, ପାଣ ନାହିଁ, ପଠାଣ ନାହିଁ, ଖ୍ରୀଷ୍ଟିଆନ ନାହିଁ, ବଙ୍ଗାଳି ନାହିଁ, ତେଲୁଗୁ ନାହିଁ, ଗୋରା ନାହିଁ କଳା ନାହିଁ । ଚୈତନ୍ୟଙ୍କ ଭଳି, ଅବଧୂତଙ୍କ ଭଳି, Saint Francis of Assissiଙ୍କ ଭଳି ସମସ୍ତଙ୍କୁ କୋଳ କରିବା, ସମସ୍ତଙ୍କୁ ସଙ୍ଗୋଳି ଯାଇ ମାଗି ମାଗି ପଖାଳ କଂସାରେ ହାତ ପୂରାଇ ଏକା ସାଙ୍ଗରେ ଖାଇବା, ଅପମାନଙ୍କୁ ଝୁଲମୁଣିରେ ପୂରେଇ ଦେଇ ସମ୍ମାନକୁ ଗୋଇଠା ମାରି ହସି ହସି ଶତ୍ରୁ ମିତ୍ର ସମସ୍ତଙ୍କ ଗୋଡ଼ ତଳକୁ ଦଉଡ଼ିଯିବା—ପିଲାଛୁଆ, ବୁଢ଼ା, ହାଡ଼ା, ଯୁବକ, ଯୁବତୀ, ମୂର୍ଖ, ପଣ୍ଡିତ— ସମସ୍ତଙ୍କ ସାଙ୍ଗରେ ବସିବା, ହସିବା, ରସିବା, ମଜ୍ଜିବା, ଗୀତ ଗାଇବା, ବିଭୋର ହେବା— ଏଇ ଲକ୍ଷ୍ମୀନାରାୟଣ ।

'ମୋର ବାଲ୍ୟଜୀବନ, ପାଠ କଲେ ଲକ୍ଷ୍ମୀନାରାୟଣଙ୍କର ବର୍ଣ୍ଣିତ ଦୁଃସାହସିକତା ପରିପୂର୍ଣ୍ଣ ଜୀବନର ଅଦ୍ଭୁତଚିତ୍ର ଦେଖିବାକୁ ମିଳିଥାଏ । ତାହା ପାଠ କରୁ କରୁ ସ୍ଥାନପଠ ରୋମାଞ୍ଚ, ପୁଲକ, ହର୍ଷ ଓ ବିଷାଦ ଜାତ ହୋଇଥାଏ । ଲକ୍ଷ୍ମୀନାରାୟଣଙ୍କର ଚରିତ୍ର ପରି ତାଙ୍କ ଆତ୍ମଚରିତର ଲେଖନଶୈଳୀ ମଧ୍ୟ ବ୍ୟତିକ୍ରମ, ତଥାପି ଅତ୍ୟନ୍ତ ମନୋମୁଗ୍ଧକର ।

ଲକ୍ଷ୍ମୀନାରାୟଣ କଭଳି ବ୍ୟକ୍ତିତ୍ୱ ଥିଲେ ତାହା ସହଜରେ କଳନା କରାଯାଇ ପାରିବ ନାହିଁ । ସେ ଥିଲେ ବରଫର ପାହାଡ଼ ପରି ଯେ କି ମହାସାଗର ମଧ୍ୟରେ ଭାସି ବୁଲୁଥାଏ । ତାହାର ପରି ଲକ୍ଷ୍ମୀନାରାୟଣଙ୍କ ବ୍ୟକ୍ତିତ୍ୱ ଦୃଶ୍ୟ ଯେତେ, ତାର ବହୁଗୁଣ ପୋତା ହୋଇ ପରି ବୋଧ ହେଉଥିଲା । ସେ ଥିଲେ ସମସ୍ତଙ୍କର ଆପଣାର, ତଥାପି ତାଙ୍କର ବିଶାଳ ବ୍ୟକ୍ତିତ୍ୱ କିପରି ଅବୋଧ ମନେ ହେଉଥିଲା । ଆଜୀବନ ସେ ଥିଲେ ତପସ୍ୱୀ, ବହୁପାଠୀ ଏବଂ ବିପ୍ଳବୀ । ତାଙ୍କର ଆଦର୍ଶ ସମ୍ପର୍କରେ ସେ ନିଜେ ଲେଖିଛନ୍ତି ଏହିପରି—

"ଜୀବନର ପ୍ରଥମ ବିକାଶରେ ମୁଁ ଆପଣାକୁ ଉଚ୍ଚ ଆଦର୍ଶରେ ଗଢ଼ିବାକୁ ଲାଗିଲି । ଶଙ୍କରାଚାର୍ଯ୍ୟଙ୍କ ମୋହ ମୁଦ୍‌ଗର ମୋ ଜୀବନର ପ୍ରଥମ ଆଲୋକ ବର୍ତ୍ତିକା । ସେହି ଗ୍ରନ୍ଥରେ ମୁଁ ନିଜକୁ ଗଢ଼ିବାକୁ ଚେଷ୍ଟା କଲି । ବାଇରନ୍‌ଙ୍କ କବିତାରେ ଗୋଟିଏ କଥା ପାଇଲି । Freedom's battle once begun, Bleeding from sire to son. though of lost is ever won." ଏହା ପଢ଼ି ମୁଁ ସ୍ୱଦେଶପ୍ରେମିକ ହେବି ବୋଲି ମନ ବଳାଇଲି ।

ଯୌବନର ବିକାଶରେ Child Harold ପଢ଼ିଲି । What is writ is writ, would it were worthier. ପଢ଼ି ମନରେ ବହୁ ଦୁଃଖ ହୋଇଥିଲା । ବାଇରନ୍‌ଙ୍କୁ ଏକାନ୍ତ ଆପଣାର କରିଥିଲି । × × ×" ବାଇରନ୍‌ଙ୍କୁ ଛାଡ଼ି କଲେଜ ଯେତେବେଳେ ଆସିଲି ୧୮ ବର୍ଷ ବୟସ ଆରମ୍ଭରେ ରସ୍କିନ୍ ପଢ଼ି ଏକାବେଳକେ ବିମୁଗ୍ଧ । ସଙ୍ଗେ ସଙ୍ଗେ କାର୍ଲାଇଲ ଏବଂ ଇମାର୍ସନ ମଧ୍ୟ ମୋ ପ୍ରାଣକୁ ଖୁବ୍ ମାଡ଼ି ବସିଥିଲେ । କାର୍ଲାଇଲ ଅପେକ୍ଷା ଇମାର୍ସନ ମୋର ଅଧିକ ପ୍ରିୟ । ପଦ୍ୟରେ ବାଇରନ୍‌ଙ୍କୁ ଯେପରି ପାଇଥିଲି, ଗଦ୍ୟରେ ରସ୍କିନ୍‌ଙ୍କୁ ଏବଂ ଇମାର୍ସନ୍‌ଙ୍କୁ ସେହିପରି ପାଇଲି । ଇମାର୍ସନଙ୍କ ଅପେକ୍ଷା ରସ୍କିନ୍‌ଙ୍କ ଭାବଦ୍ୱାରା ବେଶୀ ମୁଗ୍ଧ ହେଉଥିଲି ଏବଂ ଚକିତ ହେଉଥିଲି । ଇମାର୍ସନ କିପରି ଅଜାଣିଆ ଅଜାଣିଆ ଲାଗୁଥିଲେ । ବର୍ତ୍ତମାନ ମଧ୍ୟ ସେ ଅନ୍ଧକାର ଏକାବେଳକେ ତୁଟି ନାହିଁ । ଏହା ପରେ ଗାନ୍ଧୀ ଏବଂ ଥୋରୋଙ୍କ ଲେଖା ବଡ଼ ଆକ୍ରମଣ କରିଥିଲା ମୋତେ । କିନ୍ତୁ ଦୈବ ଇଚ୍ଛା ଭିନ୍ନ ପ୍ରକାର । ଭାଗ୍ୟ ମୋତେ ଗୋଖଲେଙ୍କ ଆଡ଼କୁ ଅଲକ୍ଷିତରେ ଟାଣି ନେଇଗଲା । ଗୋଖଲେଙ୍କ ସହିତରେ ମୁଁ ସମ୍ପୂର୍ଣ୍ଣ ଅପରିଚିତ । ତାଙ୍କ ମୃତ୍ୟୁପରେ ଭାରତ ସେବକ ସମିତିରେ ମୁଁ ଯୋଗ ଦେଲି । କିନ୍ତୁ ଯୋଗ ଦେବାପରେ ଶାସ୍ତ୍ରୀଙ୍କ ମହତ୍ତ୍ୱ ସୁଶୀଳତା ମୋତେ ଖୁବ୍ ମୁଗ୍ଧ କରିବାକୁ ଲାଗିଲା ।

'ସ୍ୱଭାବତଃ ମୁଁ ଯୋଗୀ, ଋଷି କମ୍ବା ଲଢ଼େଇ କରିବା ସ୍ୱଭାବର । କିନ୍ତୁ ଏପରି ଅବସ୍ଥାରେ ମୁଁ ପଡ଼ିଲି, ଯେଉଁଠାରେ ନୀରବ ପରିଶ୍ରମ,, ଦେଶସେବା ଦରକାର ।"

(ମୋ ବାରବୁଲା ଜୀବନ—ପୃ ୩୪—୩୫)

ବାସ୍ତବରେ ସାରାଜୀବନ ସେ ଦେଶସେବା କରିଯାଇଛନ୍ତି । ଜାତି, ଧର୍ମ, ଗୋଷ୍ଠୀଗତ ଭେଦାଭେଦକୁ ଆଦୌ ସ୍ୱୀକାର କରିନାହାନ୍ତି । ଯଥାର୍ଥରେ ସେ ହୋଇଛନ୍ତି ଭାରତର ସେବକ । ଛୁଆଁ ଅଛୁଆଁ ଭେଦ ତାଙ୍କୁ ସ୍ପର୍ଶ କରିନାହିଁ । ଆଜୀବନ ଅଧ୍ୟୟନରୁ ନିବୃତ୍ତ ହୋଇ ନାହାଁନ୍ତି । ଅଥଚ କର୍ମଯୋଗୀ ହିସାବରେ ଅପୂର୍ବ ତପସ୍ୟା ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ନିଜ ଜୀବନ ସେ ପରପାଇଁ ଉତ୍ସର୍ଗ କରି ଦେଇଥିଲେ । ଏ କ୍ଷେତ୍ରରେ ତାଙ୍କର କୌଣସି ପ୍ରକାର ବୈଷୟିକ ଅଥବା ସାମାଜିକ ସ୍ୱାର୍ଥ ନଥିଲା । ସେ ନିଜେ ଶିକ୍ଷକ ଥିଲେ । ସମ୍ପାଦକ ଏବଂ ସମାଜସେବୀ ହିସାବରେ ସେ ମଧ୍ୟ ସମାଜର ଶିକ୍ଷକ ହୋଇଗଲେ । ଜୀବନ ହେଉଛି ଏକ ମହାବିଦ୍ୟାଳୟ । ଏହି ମହାବିଦ୍ୟାଳୟରେ ସେ ଥିଲେ ଅଭିଜ୍ଞ ଶିକ୍ଷକ । ଛାତ୍ରମାନଙ୍କ ବିଷୟରେ ତାଙ୍କର ମତ ହେଲା—"ଆମେ ଛାତ୍ରମାନଙ୍କ ମଧ୍ୟରୁ ଅଳ୍ପ ଉଚ୍ଚ ଆଦର୍ଶ ଉଚ୍ଚଚରିତ ଦ୍ୱାରା ଅନୁପ୍ରାଣିତ ଓ ଗଠିତ । ପ୍ରତିଜ୍ଞା କରି ପ୍ରତିଜ୍ଞା ରକ୍ଷା କରିବା, ଏହା ଅତି ଅଳ୍ପ ଛାତ୍ରଙ୍କ ଭିତରେ ଦେଖିଲି । ଏପରିକି ଉଚ୍ଚ, ସୁନ୍ଦର, ଉନ୍ନତକାମୀ ଓ ଉନ୍ନତକାଂକ୍ଷୀ ଛାତ୍ରଙ୍କ ମଧ୍ୟରେ ଏପରି ଚରିତ୍ରର ସନ୍ଧାନ ପାଉଛୁ ଯାହାକି ଶୋଭନୀୟ ନୁହେଁ, ମହତ୍ତ୍ୱ ନୁହେଁ । ଏହାର ପ୍ରଧାନ କାରଣ ମୁଁ ଅନୁଭବ କରେ Guardian ବା ମୁରବୀର ଅଭାବ । ମୁରବୀ ଆମ ଦେଶରେ ଅଶିକ୍ଷିତ । ସେମାନେ ପିଲାକୁ ବାଲ୍ୟବସ୍ଥାରୁ ପରିଚାଳିତ କରନ୍ତି ନାହାନ୍ତି । ଅଧିକାଂଶ ଜାଗାରେ କୁକୁଡ଼ାଛୁଆ ଯେପରି ଚରି ବୁଲି ଖୁଣ୍ଟିଖାଏ ଏବଂ ବଢ଼େ, ଆମର ଛାତ୍ରମାନଙ୍କର ସେହି ଅବସ୍ଥା । ଏଥିରେ ଦୋଷ ଗୁରୁଜନମାନଙ୍କର । ଛାତ୍ରମାନଙ୍କର ନୁହେଁ ।"

(ମୋ ବାରବୁଲା ଜୀବନ —ପୃ ୯୯)

ଲକ୍ଷ୍ମୀନାରାୟଣ ଥିଲେ ସବୁ ଦଳର, ସବୁ ମତବାଦର, ସମସ୍ତଙ୍କ ସହିତ ମିଳାମିଶି ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରି ପାରୁଥିଲେ । ଏହା ଏକ ଅସାଧାରଣ ଶକ୍ତି । ଲକ୍ଷ୍ମୀନାରାୟଣଙ୍କ ଜୀବନଚରିତ ସବୁ ଶ୍ରେଣୀର ପାଠକ ମାନଙ୍କ ପାଇଁ ଅତ୍ୟନ୍ତ ମୂଲ୍ୟବାନ ମନେ ହୋଇଥାଏ । ବିଭିନ୍ନ ଜାତି ଓ ଧର୍ମର ଲୋକ ଏଥିରୁ ପ୍ରେରଣା ଲାଭ କରିପାରନ୍ତି ।

"ମୋ ଜୀବନର ଏକ ଅଧ୍ୟାୟ—ଅଗଷ୍ଟ ବିପ୍ଳବ" ୧୯୭୨ ସାଲରେ ପ୍ରକାଶିତ ହୁଏ । ରାଜନୀତିକ ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ଜୀବନର ଏକତମ ଅଧ୍ୟାୟ ବୋଲି କୁହାଯାଇଛି । ତେଣୁ ଏହି ପୁସ୍ତକ ତାଙ୍କର ପୂର୍ଣ୍ଣାଙ୍ଗ ଆତ୍ମଚରିତ ନୁହେଁ । ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ ୧୯୪୨ ସାଲର ଅଗଷ୍ଟ ଆନ୍ଦୋଳନରେ ଶ୍ରୀ ଦ୍ୱିବେଦୀ ଥିଲେ ଅନ୍ୟତମ ସେନାପତି । ଭାରତୀୟ ଇତିହାସରେ ନାନା କାରଣରୁ ଓଡ଼ିଶାର ଉଜ୍ଜ୍ୱଳ ଅଧ୍ୟାୟ ଗୁଡ଼ିକ ପୂର୍ଣ୍ଣଭାବରେ ଲିପିବଦ୍ଧ ହୋଇପାରି ନାହିଁ । ସେଥିପାଇଁ ଓଡ଼ିଶାର ସ୍ୱୀକୃତି ପାଇଁ

ଓଡ଼ିଶା ବାହାରେ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥାଏ । ଅଗଷ୍ଟ ବିପ୍ଳବର କ୍ରାନ୍ତିକାରୀ ଘଟଣାଗୁଡ଼ିକ ନିଜ ଅନୁଭୂତିରୁ ଲେଖକ ଏଥିରେ ବର୍ଣ୍ଣନା କରିଯାଇଅଛନ୍ତି । ଅନେକ ଦୁଃସାହାସିକ ଏବଂ ରୋମାଞ୍ଚକର ଗୋପନୀୟ ଘଟଣା ଏଥିରେ ସ୍ଥାନଲାଭ କରିଅଛି । ଆଜି ତାହା ଉପନ୍ୟାସ ପରି ମନେହେଲେ ହେଁ ଦିନେ ତାହା ନିଛାଟ ବାସ୍ତବ ଓ ସତ୍ୟ ଘଟଣା ଥିଲା । ଲୋକଲୋଚନର ଅଗୋଚରରେ ସ୍ୱାଧୀନତା ସଂଗ୍ରାମୀଗଣ ଅସୀମ ତ୍ୟାଗ ସ୍ୱୀକାର କରି ଅଭୁତ ଦେଶପ୍ରୀତି ଓ ଦୁଃସାହାସିକତାର ପରିଚୟ ଦେଇଥିଲେ । ଏହି ଆତ୍ମଲିପିରେ କେବଳ ସୁରେନ୍ଦ୍ର ଦ୍ୱିବେଦୀ ନୁହଁନ୍ତି, ବହୁ ସଂଗ୍ରାମୀ କର୍ମୀମାନଙ୍କର ଆତ୍ମତ୍ୟାଗର କାହାଣୀ ପାଠକଙ୍କୁ ଚମତ୍କୃତ କରିଥାଏ । ଏହି ଗ୍ରନ୍ଥର ଐତିହାସିକ ମୂଲ୍ୟ ଅନସ୍ୱୀକାର୍ଯ୍ୟ ।

ଅଗଷ୍ଟବିପ୍ଳବର ଜଣେ ଯୋଦ୍ଧା ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି ଧାରାବାହିକ ଭାବରେ ନିଜର ଆତ୍ମକାହାଣୀ ମନପବନ ମାସିକ ପତ୍ରରେ ପ୍ରକାଶ କରୁଥିଲେ । ଏହା ୧୯୭୩ ସାଲ ଜୁଲାଇ ମାସଠାରୁ ଡିସେମ୍ବର ପର୍ଯ୍ୟନ୍ତ ବିଭିନ୍ନ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହି ଅତ୍ମଜୀବନୀ ଆଜି ପର୍ଯ୍ୟନ୍ତ ପୁସ୍ତକାକାରରେ ମୁଦ୍ରିତ ହୋଇ ନାହିଁ । ତେବେ ପତ୍ରିକାରେ ଯେଉଁ ସାମାନ୍ୟ ଅଂଶ ପ୍ରକାଶିତ ହୋଇଥିଲା, ତହିଁର ଐତିହାସିକ ମୂଲ୍ୟ ସ୍ୱୀକାର କରିବାକୁ ହେବ । ଅଗଷ୍ଟ ବିପ୍ଳବର ଅମର ସହୀଦ୍ ଲକ୍ଷ୍ମଣ କୋରାପୁଟ ଜେଲରେ ଫାଶୀ ପାଇଥିଲେ । ସେହି ବିବରଣୀ ଲେଖକଙ୍କ ଭାଷାରେ ଏହିପରି—

"ନିର୍ଦ୍ଦିଷ୍ଟ ଦିନ ପାଖେଇ ଆସିଲା । ମୃତ୍ୟୁ ପୂର୍ବରୁ କୋରାପୁଟ ଅଞ୍ଚଳର ନେତା ରାଧାକୃଷ୍ଣ ବିଶ୍ୱାସରାୟ- ସଦାଶିବ ତ୍ରିପାଠୀ, ରାଧାମୋହନ ସାହୁ ତଥା ଗୋପବନ୍ଧୁ ଚୌଧୁରୀ ଆଶ୍ଚର୍ଯ୍ୟ ହରିହର ପ୍ରଭୃତିଙ୍କ ସହିତ ସାକ୍ଷାତ କରିବାକୁ ଯେ ଇଚ୍ଛା ପ୍ରକାଶ କଲେ । ନେତାମାନେ ଗଲେ । ଦେଖିଲେ, ମନରେ ତାଙ୍କର ଟିକିଏ ହେଲେ ଅବସନ୍ନତା ନାହିଁ । ହସହସ ମୁହଁ, ଜନ୍ମଭୂମିର ସ୍ୱାଧୀନତା-ଯଜ୍ଞ ବେଦୀରେ ନିଜକୁ ଆହୁତ ଦେଉଥିବାରୁ ଯେପରି ପ୍ରାଣ ପରିପୂର୍ଣ୍ଣ । ଏମାନଙ୍କୁ ଦେଖି କହିଲେ, ଅବଶୋଷ ରହିଗଲା । ମୁଁ ଦେଶର ସ୍ୱାଧୀନତା ଦେଖିପାରିଲି ନାହିଁ, କିନ୍ତୁ ମୋର ପିଲାମାନେ ନିଶ୍ଚୟ ଦେଖିବେ । ଅଶ୍ରୁଭରା ନୟନରେ ସେମାନେ ଫେରିଲେ । କିନ୍ତୁ ସିଂହପରି ଅଟଳ, ଅଟଳ ରହିଥାନ୍ତି ଲକ୍ଷ୍ମଣ ନାୟକ । ପ୍ରାଣଖୋଲା ହସରେ ସମସ୍ତଙ୍କୁ ସେ ବିଦାୟ ଦେଲେ ।

ସେଦିନ ତାଙ୍କୁ ଫାଶୀ ଦିଆଯିବାର କଥା । ରାତି ଚାରିଟାରେ ସେ ପ୍ରାର୍ଥନା ସାରିଲେ । ତା ପରେ ତାଙ୍କୁ ଗାଧୋଇ ଦିଆଗଲା । ନବବାବୁ ସବୁ ଦେଖୁଥାନ୍ତି । ଯେତେବେଳେ ତାଙ୍କୁ ଫାଶୀ ମଞ୍ଚ ପାଖକୁ ନିଆଗଲା, ସେତେବେଳେ ଲକ୍ଷ୍ମଣନାୟକ ଜୟଧ୍ୱନି କଲେ— ଭାରତମାତା କି ଜୟ, ମହାତ୍ମାଗାନ୍ଧି କି ଜୟ । ସ୍ୱାଧୀନ ଭାରତ କି ଜୟ । ନବବାବୁ ତାର ଜବାବ ଦେଲେ ।"

(ମନପବନ—ନଭେମ୍ବର—୧୯୭୩)

ସମଗ୍ର ଆତ୍ମଚରିତ ପ୍ରକାଶିତ ହେଲେ ଅଗଷ୍ଟ ବିପ୍ଳବ କାଳର ଅନେକ ଗୌରବମୟ ଅଧ୍ୟାୟ ଉଦ୍‌ଘାଟିତ ହେବା ସଙ୍ଗେସଙ୍ଗେ ଦେଶବାସୀଙ୍କର ପ୍ରତିଷ୍ଠିତ ଧାରଣାକୁ ବଦଳାଇ ଦେବାରେ ତାହା ସାହାଯ୍ୟ କରିବ ବୋଲି ଆଶା କରାଯାଏ ।

"ମୁକ୍ତି ପଥେ ସୈନିକ" ଏକ ରାଜନୈତିକ ଜୀବନଚରିତ । ଏହା ଦୁଇଟି ଭାଗରେ ବିଭକ୍ତ । ପ୍ରଥମ ଭାଗ ପ୍ରକାଶିତ ହେବାର ବହୁକାଳ ପରେ ୧୯୭୩ ଖ୍ରୀଷ୍ଟାବ୍ଦରେ ଏହାର ଦ୍ୱିତୀୟ ଭାଗ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକର ଲେଖକ ହେଉଛନ୍ତି ବିଶିଷ୍ଟ ରାଜନୀତିକ ନେତା ପବିତ୍ରମୋହନ ପ୍ରଧାନ । ପ୍ରଥମଭାଗର ଲେଖକ ୧୯୪୨ 'ଭାରତଛାଡ଼' ଆନ୍ଦୋଳନରେ ଯେଉଁ ଦୁଃସାହାସିକ କାର୍ଯ୍ୟ କରିଥିଲେ ତାହାର ବର୍ଣ୍ଣନା ଦିଆଯାଇଛି । ତେଣୁ ପ୍ରଥମ ଭାଗ 'ମୁକ୍ତିପଥେ ସୈନିକ । ଇତିହାସର ରୋମାଞ୍ଚିଳ କାହାଣୀ, ଏକ ସଂଗ୍ରାମୀ ଜୀବନର ଆକର୍ଷଣୀୟ ଅଭିବ୍ୟକ୍ତି ଭଳି ବୋଧ ହୋଇଥାଏ । ମାତ୍ର ଦ୍ୱିତୀୟ ଭାଗରେ ଲେଖକଙ୍କର ରାଜନୈତିକ ଜୀବନର ନାନା ବ୍ୟକ୍ତିଗତ ମୂଲ୍ୟବୋଧ ସ୍ଥାନ ପାଇଥିବାରୁ ଏକ ଜୀବନଚରିତ ହିସାବରେ ଏହାର ଗୁରୁତ୍ୱ ହ୍ରାସ ହୋଇଯାଇଅଛି ।

'ଜଣେ ଶିକ୍ଷକର ନିଜକଥା' ଶ୍ରୀ ବନମାଳୀ ବ୍ରହ୍ମଗ୍ରନ୍ଥଙ୍କର ଜୀବନଚରିତ । ୧୯୭୩ ସାଲରେ ଏହା ପ୍ରକାଶିତ ହୋଇଥିଲା । ଜଣେ ଆଦର୍ଶ ଶିକ୍ଷକର ଜୀବନ କିପରି ଘଟଣା-ବହୁଳ ଓ ହୃଦୟସ୍ପର୍ଶୀ, ତାହା ଏହି ଆତ୍ମଚରିତ ପାଠ କଲେ ଅନୁଭବ କରାଯାଇପାରିବ । ଏହି ପୁସ୍ତକର 'ଭୂମିକା'ରେ ସୁଲେଖକ ସୁରେନ୍ଦ୍ର ମହାନ୍ତି ମତବ୍ୟକ୍ତ କରିଥିଲେ ଏହିପରି— 'କ୍ଷମତାଶାଳୀ ରାଷ୍ଟ୍ରନାୟକ, ସଫଳରାଜନୀତିକ ନେତା, ଉଚ୍ଚପଦାଧାରୀ ସେନାପତି ଅଥବା ପଦ ବିଭୂଷିତ ଲେଖକମାନଙ୍କ ବ୍ୟତୀତ ଅନ୍ୟକାହାର ପକ୍ଷରେ ଆତ୍ମଜୀବନୀ ଲେଖିବା ଏକ ବିଡ଼ମ୍ବନା—ପାଠକ ସାଧାରଣଙ୍କ ମଧ୍ୟରେ ଏପରି ଏକ ଧାରଣା ଏବେ ସୁଦ୍ଧା ରହିଛି । ସାଧାରଣ ପାଠକ ଦୃଷ୍ଟିରେ ଏପରି ସାଧାରଣ ଜୀବନ ବୃତ୍ତାନ୍ତ ନିତାନ୍ତ ଶୂନ୍ୟଗର୍ଭ । ସେଥିରେ ନା ଅଛି ରୋମାଞ୍ଚ, ନାଁ ଅଛି ଉତ୍ତେଜନା, ନାଁ ଅଛି ଉପଲବ୍ଧି । କିନ୍ତୁ ସେମାନେ ଭୁଲି ଯାଇଥାନ୍ତି ଯେ ପ୍ରତ୍ୟେକ ବ୍ୟକ୍ତିର ଜୀବନ ନିଜ ସ୍ୱତାରେ ଉଜ୍ଜ୍ୱଳ ଅଭିବ୍ୟକ୍ତିର ଗୋଟିଏ ଗୋଟିଏ ପଲ୍ଲବ । ପ୍ରତ୍ୟେକର ଜୀବନ ଏକ ସାଧନା । ପ୍ରତ୍ୟେକର ଜୀବନରେ ଅଛି ଏପରି ଅନେକ କଥା, ଅନେକ ଅଭିଜ୍ଞତା—ଯାହା ଲିପିବଦ୍ଧ ହୋଇ ରହିବା ଆବଶ୍ୟକ ଉତ୍ତର ପୁରୁଷର ଦିଗଦର୍ଶନ ପାଇଁ ! ଶିକ୍ଷାବିତ୍ ଶ୍ରୀ ବନମାଳୀ ବ୍ରହ୍ମଗ୍ରନ୍ଥଙ୍କ ଆତ୍ମଜୀବନୀ ସେହି ସାଧାରଣ ସତ୍ୟରୁ ବହିର୍ଭୂତ ନୁହେଁ ।"

ବାସ୍ତବିକ ବନମାଳୀ ବ୍ରହ୍ମଗ୍ରନ୍ଥ ଜଣେ ସାଧାରଣ ଶିକ୍ଷକ ହେଲେହେଁ ନିଜର ସାଧନା ବଳରେ ସେ ଜଣେ ପ୍ରତିଷ୍ଠିତ ଶିଶୁ ସାହିତ୍ୟ ଲେଖକ ଏବଂ ଶକ୍ତିଶାଳୀ ସଙ୍ଗଠକ ହିସାବରେ ସୁନାମଧନ୍ୟ । ନାନା ସଂସ୍କାରମୂଳକ ଆନ୍ଦୋଳନରେ ସେ ପ୍ରତ୍ୟକ୍ଷ ଭାବରେ ଅଂଶ ଗ୍ରହଣ କରିଥିଲେ । ସେ କେବଳ ଆଜୀବନ ଶିକ୍ଷକତା କରିନାହାନ୍ତି, ବହୁ ଶିକ୍ଷାନୁଷ୍ଠାନ

ଗଢ଼ିଛନ୍ତି, ଏବଂ ବହୁ ଗ୍ରନ୍ଥମାନଙ୍କୁ ନିଜ ସାହାଯ୍ୟରେ ମଣିଷ କରିଛନ୍ତି । ତାଙ୍କପରି କର୍ମବୀର ବାସ୍ତବିକ ଆଦର୍ଶ ସ୍ଥାନୀୟ । ଏହି ଆତ୍ମଚରିତରେ ତାଙ୍କ ଜୀବନର ଅସଂଖ୍ୟ ଘଟଣା ଲିପିବଦ୍ଧ ହୋଇଅଛି । ଶିକ୍ଷକମାନଙ୍କର ହୀନମନ୍ୟତାର ଗ୍ଲାନି ଦୂର କରିବାରେ ଏ ପୁସ୍ତକ ପଥପ୍ରଦର୍ଶକ ହୋଇପାରେ । ଜଣେ ଶିକ୍ଷକ ଇଚ୍ଛା କଲେ ନିଜର ତ୍ୟାଗପୂତ ଜୀବନଦ୍ୱାରା ଅସମ୍ଭବକୁ ସମ୍ଭବ କରିପାରେ ।

କଲିକତାରୁ ପ୍ରକାଶିତ 'କଳନା' ମାସିକ ପତ୍ରରେ ୧୯୬୫ ଖ୍ରୀଷ୍ଟାବ୍ଦ ପୂଜା ସଂଖ୍ୟାରେ ସୁସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ପ୍ରଥମେ ଆତ୍ମଚରିତ ଲେଖିଲେ । ଧାରାବାହିକଭାବରେ କେତୋଟି ସଂଖ୍ୟାରେ ଜୀବନଚରିତର କିଛି ଅଂଶ ପ୍ରକାଶିତ ହେବାପରେ ସୁଧୀ ପାଠକ ମହଲରେ ପ୍ରବଳ ଆଗ୍ରହ ସୃଷ୍ଟି ହୋଇଥିଲା । କାରଣ କାଳିନ୍ଦୀଚରଣ ଦୀର୍ଘକାଳ ଧରି ଓଡ଼ିଶାର ସାଂସ୍କୃତିକ ଜୀବନ ସହିତ ସଂପୃକ୍ତ । ୧୯୬୭ ସାଲରେ ତାଙ୍କର ଆତ୍ମଚରିତ ପୁସ୍ତକ ରୂପରେ ଆତ୍ମପ୍ରକାଶ କଲା । କାଳିନ୍ଦୀଚରଣ ଜଣେ ଶକ୍ତିଶାଳୀ କବି ଓ ଔପନ୍ୟାସିକ । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକଠାରୁ ଆଜିପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ଭାବରେ ସାହିତ୍ୟ-ସାଧନା କରି ଆସିଅଛନ୍ତି । ତେଣୁ ତାଙ୍କର ଜୀବନଚରିତ ଓଡ଼ିଶାର ଦୀର୍ଘକାଳର ସାଂସ୍କୃତିକ ଇତିହାସ ଜାଣିବାପାଇଁ ସାହାଯ୍ୟ କରିଥାଏ । ଏଥିରେ ବହୁ ପ୍ରତିଷ୍ଠିତ କବି, ଶିଳ୍ପୀଙ୍କ ସମ୍ପର୍କରେ ଜାଣିବାକୁ ସୁଯୋଗ ମିଳିଥାଏ । ଜଣେ କବି କିପରି ବୈପ୍ଳବିକ ଭୂମିକା ଗ୍ରହଣ କରି ଜୀବନ ପଥରେ ଅଗ୍ରସର ହୁଏ, ତାହା ପାଠକମାନଙ୍କପାଇଁ ଅତ୍ୟନ୍ତ ଲୋଭନୀୟ । କାଳିନ୍ଦୀ ବାବୁଙ୍କ ଆତ୍ମଚରିତ 'ଅଙ୍ଗେଯାହା ନିଭାଇଛି'' ଏକ ଉପନ୍ୟାସ ସୁଲଭ ଆତ୍ମଲିପି । କାଳିନ୍ଦୀବାବୁ ଭାରତୀୟ ସାହିତ୍ୟିକ ଆନ୍ଦୋଳନ ସହିତ ପ୍ରତ୍ୟକ୍ଷଭାବରେ ସମ୍ପୃକ୍ତ ଥିବାରୁ ବହୁ ଭାରତୀୟ ସାହିତ୍ୟିକ ବ୍ୟକ୍ତିଙ୍କ ସହିତ ପରିଚିତ ହେବା ସହଜ ହୋଇପଡ଼େ । ସାହିତ୍ୟିକ ସମାଜ ଜୀବନର ରୂପାୟନରେ ସିଦ୍ଧହସ୍ତ । କାଳିନ୍ଦୀଚରଣ ଜଣେ ସାର୍ଥକ ଶିଳ୍ପୀ ହିସାବରେ ଆତ୍ମଚରିତ ଲେଖୁ ଲେଖୁ ସମକାଳୀନ ସମାଜଜୀବନକୁ ଅଙ୍କିତ କରିବାରେ କ୍ଷମ ହୋଇଛନ୍ତି ।

ଏ ପର୍ଯ୍ୟନ୍ତ ପ୍ରକାଶିତ ଆତ୍ମଚରିତମାନଙ୍କ ମଧ୍ୟରେ ''କୁମ୍ଭାର ଚକ''ର ଏକ ସ୍ୱତନ୍ତ୍ର ସ୍ଥାନ ଅଛି । ୧୯୬୫ ଖ୍ରୀଷ୍ଟାବ୍ଦରେ ଏହା ପୁସ୍ତକ ରୂପରେ ପ୍ରକାଶିତ ହୋଇଥିଲେହେଁ ବହୁ ପୂର୍ବରୁ କଳିଙ୍ଗ, ଆସନ୍ତାକାଲି, ସହକାର ପ୍ରଭୃତି ଦୈନିକ ଓ ମାସିକ ପତ୍ରିକା ଗୁଡ଼ିକରେ ଧାରାବାହିକ ଭାବରେ ନାଟ୍ୟକାର କାଳୀଚରଣ ପଟ୍ଟନାୟକ ନିଜର ଅତ୍ମଲିପିର କିଛି ଅଂଶ ପ୍ରକାଶ କରିଥିଲେ । ଏଥିରେ ନାଟ୍ୟକାର ଏବଂ କବି କାଳୀଚରଣଙ୍କ ଜୀବନବିକାଶ କେବଳ ଦେଖିବାକୁ ମିଳେନାହିଁ, ପୂର୍ବ ଅର୍ଦ୍ଧ ଶତାବ୍ଦୀର ଓଡ଼ିଶାର ନାଟ୍ୟ ଆନ୍ଦୋଳନ ସମ୍ପର୍କରେ ପାଠକ ଅବହିତ ହୋଇଥାଏ । କାଳୀଚରଣଙ୍କର ଜୀବନ ହେଉଛି ଘଟଣା ବହୁଳ । ତାଙ୍କର ଯାଦୁକରୀ ଉପନ୍ୟାସ ସୁଲଭ ଭାଷାରେ ସେ ସେକାଳର ସାମନ୍ତ ଓ ସାଧାରଣ ଜୀବନର ଯେଉଁ ଚିତ୍ର ପ୍ରଦାନ କରି ଅଛନ୍ତି, ତାହା ଅତ୍ୟନ୍ତ ମନଛୁଆଁ ଓ ମନଲୋଭା ହୋଇଅଛି । ସମୟେ ସମୟେ ବ୍ୟକ୍ତିଗତ ଅଭିରୁଚି ଦ୍ୱାରା ଭାରାକ୍ରାନ୍ତ ହୋଇ ଲେଖକ ବିଷୟ ନିର୍ବାଚନରେ

ଏବଂ ବ୍ୟକ୍ତିବିଶେଷ ଅଥବା ଅନୁଷ୍ଠାନ ସମ୍ପର୍କରେ ମତାମତ ଦେବାରେ ଅନୁଦାର ଏବଂ ବସ୍ତୁନିଷ୍ଠ ହୋଇଥିବା ଅନୁଭୂତ ହୁଏ । ନଚେତ୍ ଏହି ଆତ୍ମଚରିତ ଓଡ଼ିଆ ସାହିତ୍ୟରେ ଏକ ରସାଳ ଜୀବନକାହାଣୀ ବୋଲି ସ୍ୱୀକାର କରିବାକୁ ହେବ ।

ଏ ପର୍ଯ୍ୟନ୍ତ ପ୍ରକାଶିତ ଓଡ଼ିଆ ସାହିତ୍ୟର ଆତ୍ମଚରିତ ସମୀକ୍ଷା କଲେ ଜଣାପଡ଼େ ଯେ ଦୁଇଟି ଶ୍ରେଣୀର ବ୍ୟକ୍ତିହିଁ ଆତ୍ମଚରିତ ରଚନାରେ ମୁଖ୍ୟତଃ ମନ ବଳାଇ ଅଛନ୍ତି । ସେମାନେ ହେଲେ ସାହିତ୍ୟିକ ସ୍ତର ଏବଂ ରାଜନୈତିକ ସ୍ତର । ତେବେ ଏହି କ୍ଷେତ୍ରରେ ଆଉ ଏକ ଗୋଷ୍ଠୀ ହାତ ଦେଇଥିବା ଜଣାଯାଏ । ସେମାନେ ହେଲେ ଶିକ୍ଷକ-ସ୍ତର । "ନବଜୀବନ" ସାହିତ୍ୟ ପତ୍ରିକାରେ ଛଦ୍ମନାମରେ ଦୀର୍ଘକାଳ ଧରି ଶ୍ରୀ ଚନ୍ଦ୍ରମଣି ମିଶ୍ର ନିଜର ଆତ୍ମଚରିତ ପ୍ରକାଶ କରି ଆସୁଥିଲେ । ଏହା ଥିଲା ଏକ ସ୍ମରଣୀୟ ଏବଂ ଆକର୍ଷଣୀୟ ଆତ୍ମଲିପି । ତତ୍କାଳୀନ ଓଡ଼ିଶାର ରାଜନୀତି ଏବଂ ସାମାଜିକ ଆନ୍ଦୋଳନ ସମ୍ପର୍କରେ ଏହି ରଚନା ଗୁଡ଼ିକ ଗଭୀର ଆଗ୍ରହ ସୃଷ୍ଟି କରୁଥିଲା । ଦୁଃଖର କଥା, ତାହା ଏ ପର୍ଯ୍ୟନ୍ତ ପୁସ୍ତକ ଆକାରରେ ପ୍ରକାଶିତ ହୋଇ ନାହିଁ । ଆତ୍ମଚରିତର ଲେଖକ ଯେଉଁଠାରେ ଭୟଙ୍କର ଭାବରେ ବ୍ୟକ୍ତିନିଷ୍ଠ ହୋଇ ପଡ଼ିଛନ୍ତି, ସେଠାରେ ସେହି ଆତ୍ମଲିପି ଉଚ୍ଚକୋଟିର ହୋଇପାରି ନାହିଁ ! ରସାତ୍ମକ ରଚନା ପାଇଁ ବସ୍ତୁନିଷ୍ଠ-ବିଶ୍ଳେଷଣ ସର୍ବାଦୌ ଆବଶ୍ୟକ । ଆତ୍ମଚରିତର ଲେଖକ ନିଜେ ନାୟକ ଭୂମିକାରେ ଥିଲେହେଁ ସେ ବାସ୍ତବରେ ରହି ବିଶ୍ଳେଷଣ କଲେ ଆଲୋଚନା ଅଧିକ ଗମ୍ଭୀର, ଉଦାର ଏବଂ ଆପଣାର ହୋଇ ଉଠେ । ଏହିପରି ଆତ୍ମଚରିତ ଅଧିକ ପ୍ରଭାବଶାଳୀ ହୋଇଥିବା ଜଣାଯାଏ ।

———

# ଓଡ଼ିଆ ଚରିତମାଳା—ଇତିହାସ ଓ ପରମ୍ପରା

ସାହିତ୍ୟରେ ବ୍ୟକ୍ତିବିଶେଷଙ୍କର ଜୀବନୀ ଲିପିବଦ୍ଧ ହେଲେ ତାହାକୁ ଆମେ ଚରିତ ଆଖ୍ୟା ଦେଇଥାଉ । କାହିଁକି ଆମେ ଜଣେ ବ୍ୟକ୍ତି ବିଶେଷର ଜୀବନୀ ଲିପିବଦ୍ଧ କରୁ ? କିଣ ଅବା ଏପରି ଜୀବନ କାହାଣୀର ସାମାଜିକ ମୂଲ୍ୟବୋଧ ଅଛି ? ଯେଉଁ ମହାପୁରୁଷ, ଯୋଗଜନ୍ମା ବ୍ୟକ୍ତିଙ୍କର ବାଣୀ ସମାଜକୁ ପ୍ରେରଣା ପ୍ରଦାନ କରେ, କାଳ କାଳ ଧରି ଆଲୋକବର୍ତ୍ତିକା ପରି ପଥ ପ୍ରଦର୍ଶନ କରେ, ସେହି ପ୍ରତିଭାବାନ୍ ବ୍ୟକ୍ତିଙ୍କ ଜୀବନଚରିତ ମାଧ୍ୟମରେ ପ୍ରସ୍ତୁତ ହେବା ଆବଶ୍ୟକ । ସେମାନେ ଜଗତ ଓ ଜୀବନକୁ ଆଲୋକିତ କରି ଯାଇଅଛନ୍ତି । ଦେଶ, ଜାତି, ସମାଜ ପାଇଁ ସେମାନଙ୍କର ଦାନ ଅତୁଳନୀୟ । ସେମାନଙ୍କର ପ୍ରଦତ୍ତବାଣୀ ଯୁଗେଯୁଗେ ସମାଜ ପ୍ରାଣରେ ଝଙ୍କୃତ ହେଉଥାଏ । ଯେଉଁ ସାହିତ୍ୟରେ ଯେତେ ଉଚ୍ଚକୋଟୀର ଜୀବନୀ ପ୍ରକାଶିତ ଓ ପ୍ରସ୍ତୁତ, ସେହି ସମାଜର ଲୋକେ ଜୀବନର ଚଲାପଥରେ ଯଥେଷ୍ଟ ମାନସିକ ପାଥେୟ ସଂଗ୍ରହ କରିବାପାଇଁ ସକ୍ଷମ ହୋଇ ପାରନ୍ତି । ସମାଜରେ ମହାପୁରୁଷମାନେ ହେଉଛନ୍ତି ବିପ୍ଳବୀ ଏବଂ ପ୍ରଗତିର ବାର୍ତ୍ତାବହ । ସେମାନଙ୍କର ଜୀବନର କାହାଣୀ ହେଉଛି ସମଗ୍ର ସମାଜର ପ୍ରଗତିର ଇତିହାସ । ଅତଏବ ସମାଜଚେତନା, ଜାତୀୟତା ଭାବନା ସୃଷ୍ଟି ହେଲେ ଜୀବନୀସାହିତ୍ୟର ସମୃଦ୍ଧି ହେବା ସ୍ୱାଭାବିକ । ସେହି କାରଣରୁ ଓଡ଼ିଆ ଜୀବନୀ ସାହିତ୍ୟ ଅନେକ କାଳ ପର୍ଯ୍ୟନ୍ତ ବିଶେଷ ଅଗ୍ରଗତି କରି ପାରି ନଥିଲା । ଦୀର୍ଘକାଳ ପରାଧୀନତାର ଗ୍ଲାନି ଏବଂ ଶାସନତାନ୍ତ୍ରିକ ଅନୈକ୍ୟ ଅଞ୍ଚଳରେ ଓଡ଼ିଶାର ସମାଜରେ କିପରି ଏକ ପରଶ୍ରୀକାତରତା, ହୀନମନ୍ୟତା ସୃଜପଣ କରୁଥିଲା । ତେଣୁ ଇଂରେଜଶାସନ କାଳରେ ଏ ଦେଶକୁ ମୁଦ୍ରାଯନ୍ତ୍ରର ଆଗମନ ସଙ୍ଗେ ସଙ୍ଗେ ମୁଦ୍ରଣ ଶିଳ୍ପର ପ୍ରସାର ହୋଇ ଥିଲେହେଁ ଊନବିଂଶ ଶତାବ୍ଦୀର ଜୀବନୀସାହିତ୍ୟ ବିଶେଷ ଲୋକପ୍ରିୟ ହୋଇ ପାରି ନଥିଲା । ତେବେ ଇଂରେଜଙ୍କ ଆଗମନ ଏବଂ ଶାସନ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ଇଉରୋପୀୟ ଖ୍ରୀଷ୍ଟଧର୍ମ ପ୍ରଚାରକଗଣ ଏ ଦେଶରେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ନାନା ପୁସ୍ତକ ପ୍ରଚାର କରିଥିଲେ । ବାଇବେଲର ଓଡ଼ିଆ ଅନୁବାଦ ସଙ୍ଗେ ସଙ୍ଗେ ବହୁ ଖ୍ରୀଷ୍ଟଧର୍ମୀ ସନ୍ଥ ସାଧକମାନଙ୍କ ସମ୍ପର୍କରେ ରୋମାଞ୍ଚକର କାହାଣୀ ପ୍ରସ୍ତୁତ ହୋଇଥିଲା । ବୋଧହୁଏ ଆଧୁନିକ କାଳରେ ଓଡ଼ିଆ ଜୀବନୀ ସାହିତ୍ୟ ପ୍ରଣୟନ ପାଇଁ ତାହା ପ୍ରଥମେ ପ୍ରେରଣା ପ୍ରଦାନ କରିଥିବ । ପୁରାଣ ସାହିତ୍ୟରେ ପ୍ରସ୍ତୁତ କାହାଣୀ ଯେଉଁପରି କୌତୂହଳ ସୃଷ୍ଟି କରିଥାଏ, ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ନୂତନ ଶିକ୍ଷିତ ଗୋଷ୍ଠୀଙ୍କ ମଧ୍ୟ ଏହିପ୍ରକାର ଧର୍ମୀୟ କାହାଣୀ ଅବଶ୍ୟ ପ୍ରେରଣା ଗର୍ଭିତ ହୋଇଥିବ । ଉଦାହରଣ ସ୍ୱରୂପ ଲୂକ ଲିଖିତ ସୁସମାଚାରରୁ ମେରୀଙ୍କ ସମ୍ପର୍କରେ କାହାଣୀ ଏହିପରି– "ପରେ ଷଷ୍ଠ ମାସରେ ଗାବ୍ରିଏଲ ଦୂତ ଈଶ୍ୱରଙ୍କ ନିକଟରୁ ଗାଲିଲୀର ନାଜରିତ ନାମକ ନଗରକୁ ଜଣେ କନ୍ୟା

ନିକଟକୁ ପ୍ରେରିତ ହେଲେ, ଦାଉଦଙ୍କ ବଂଶର ଯୋସେଫ ନାମକ ଜଣେ ପୁରୁଷଙ୍କ ସହିତ ତାହାଙ୍କର ବିବାହ ନିର୍ବନ୍ଧ ହୋଇଥିଲା । ସେହି କନ୍ୟାଙ୍କ ନାମ ମରିୟମ । ସେ ଗୃହରେ ପ୍ରବେଶ କରି ତାହାଙ୍କ ନିକଟକୁ ଆସି କହିଲେ, ଆଗୋ ଅନୁଗ୍ରହପାତ୍ରୀ, ତୁମର ମଙ୍ଗଳ ହେଉ । ପ୍ରଭୁ ତୁମର ସହବର୍ତ୍ତୀ । କିନ୍ତୁ ଏହି ବାକ୍ୟରେ ଅତିଶୟ ଉଦ୍‌ବିଗ୍ନ ହୋଇ ଏହା କି ପ୍ରକାର ସମ୍ଭାଷଣ ବୋଲି ମନରେ ଆନ୍ଦୋଳନ କରିବାକୁ ଲାଗିଲେ । ସେଥିରେ ଦୂତ ତାହାଙ୍କୁ କହିଲେ, ଆଗୋ ମରିୟମ ! ଭୟ କରନାହିଁ । କାରଣ ତୁମ୍ଭେ ଈଶ୍ୱରଙ୍କ ସମ୍ମୁଖରେ ଅନୁଗ୍ରହ ପ୍ରାପ୍ତ ହୋଇଅଛ । ଆଉ ଦେଖ, ତୁମ୍ଭେ ଗର୍ଭଧାରଣ କରି ଗୋଟିଏ ପୁତ୍ର ପ୍ରସବ କରିବ ଏବଂ ତାହାଙ୍କ ନାମ ଯୀଶୁ ହେବ ଓ ପରାତ୍ପରଙ୍କ ପୁତ୍ର ବୋଲି ଖ୍ୟାତ ହେବେ । ପ୍ରଭୁ ଈଶ୍ୱର ତାହାଙ୍କୁ ତାହାଙ୍କ ପିତା ଦାଉଦଙ୍କ ସିଂହାସନ ଦାନ କରିବେ, ମହାନ ହେବେ । ସେ ଯାକୁବ ବଂଶ ଉପରେ ଯୁଗେ ଯୁଗେ ରାଜତ୍ୱ କରିବେ । ପୁଣି ତାହାଙ୍କ ରାଜ୍ୟର ଶେଷ ହେବ ନାହିଁ । କିନ୍ତୁ ମରିୟମ ଦୂତଙ୍କୁ କହିଲେ ଏହା କିପରି ହେବ ? ମୁଁ ତ ପୁରୁଷକୁ ଜାଣେ ନାହିଁ । ଦୂତ ତାହାଙ୍କୁ ଉତ୍ତର ଦେଲେ, ପବିତ୍ର ଆତ୍ମା ତୁମ୍ଭ ଉପରେ ଅବତରଣ କରିବେ ଓ ପରାତ୍ପରଙ୍କ ଶକ୍ତି ତୁମ୍ଭଙ୍କୁ ଆବୋରିବ । ତେଣୁ ଯେ ଜାତ ହେବେ, ସେ ପବିତ୍ର ଈଶ୍ୱରଙ୍କ ପୁତ୍ର ବୋଲି ଖ୍ୟାତ ହେବେ । × × × ଏହି ସମୟରେ ମରିୟମ ଉଠି ପାର୍ବତୀୟ ଅଞ୍ଚଳସ୍ଥ ଯିହୁଦା ପ୍ରଦେଶର ଗୋଟିଏ ନଗରକୁ ଶୀଘ୍ର ଗମନ କଲେ । ପୁଣି ଜିଖରିୟଙ୍କ ଗୃହରେ ପ୍ରବେଶ କରି ଏଲୀଶାବେଥଙ୍କୁ ନମସ୍କାର କଲେ । ଆଉ ଏଲୀଶାବେଥ ମରିୟମଙ୍କ ନମସ୍କାର ଶୁଣିବାମାତ୍ର ଶିଶୁଟି ତାହାଙ୍କ ଗର୍ଭରେ ନାଚି ଉଠିଲା । ପୁଣି ଏଲୀଶାବେଥ ପବିତ୍ର ଆତ୍ମାରେ ପୂର୍ଣ୍ଣ ହୋଇ ଅତି ଉଚ୍ଚ ସ୍ୱରରେ କହିଲେ ନାରୀମାନଙ୍କ ମଧ୍ୟରେ ଧନ୍ୟ, ପୁଣି ଧନ୍ୟ ତୁମ୍ଭ ଗର୍ଭର ଫଳ ।”

(ଧର୍ମ ପୁସ୍ତକ —ଅର୍ଥାତ ପୁରାତନ ଓ ନୂତନ ନିୟମର ଧର୍ମଶାସ୍ତ୍ର—ପୃ ୭୯—'୯୬ )

ସେ କାଳରେ ଖ୍ରୀଷ୍ଟଧର୍ମ ପ୍ରଚାର ପାଇଁ କେତେକ ସାମୟିକ ପତ୍ରିକା ପ୍ରକାଶିତ ହେଉଥିଲା । ସେଥିରେ ମଧ୍ୟ ଧାର୍ମିକ ପୁରୁଷମାନଙ୍କର ଜୀବନକାହାଣୀ ପ୍ରଚାରିତ ହେଲା । ଊନବିଂଶ ଶତାବ୍ଦୀର ଶେଷବେଳକୁ ଇଂରେଜୀ ଶାସନକାଳରେ ନୂତନ ଶିକ୍ଷାନୀତି ପ୍ରବର୍ତ୍ତିତ ହେଲା ଏବଂ ମୁଦ୍ରାଯନ୍ତ୍ରର ଅନୁକୂଳ୍ୟରେ ପାଠ୍ୟପୁସ୍ତକ ଲିଖିତ ହେବାରୁ ସାହିତ୍ୟପୁସ୍ତକରେ ଶିଶୁମାନଙ୍କ ଉଦ୍ଦେଶ୍ୟରେ ଅନେକ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ଶିକ୍ଷଣୀୟ ଆଦର୍ଶ ଜୀବନଚରିତ ପ୍ରଚାର କରାଯାଇଥିବ ବୋଲି ଅନୁମାନ କରାଯାଇପାରେ । ଓଡ଼ିଆ ସାହିତ୍ୟର ଜୀବନୀ ସାହିତ୍ୟର ଏହାହିଁ ହେଉଛି ଆଧୁନିକ କାଳର ପ୍ରାଥମିକ ରୂପ । ସେ କାଳର ଯେଉଁ ପ୍ରତିଷ୍ଠିତ କବି ମାନଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହୋଇଅଛି, ସେଥିରୁ ଜଣାଯାଉଅଛି ଯେ ସେମାନେ ନିଜର ରୁଚି ଦୃଷ୍ଟିରୁ କାବ୍ୟ କବିତା ଲେଖିଥିଲେହେଁ ଉଭୟ ଗଦ୍ୟ ଓ ପଦ୍ୟରେ ଜୀବନୀରଚନା କରିଯାଇଅଛନ୍ତି । ଏଥିରୁ ଅନୁମିତ ହେଉଅଛି ଯେ ଏହି କାଳରେ ପ୍ରଚାରିତ ସାପ୍ତାହିକ ଓ ମାସିକ ପତ୍ର ଗୁଡ଼ିକରେ ସାମୟିକ ଜୀବନଚରିତ ପ୍ରକାଶିତ ହୋଇଥିବ । ଏ ଯୁଗର ସର୍ବଶ୍ରେଷ୍ଠ କବି ରାଧାନାଥ ରାୟଙ୍କର ଗ୍ରନ୍ଥାବଳୀ ପ୍ରଥମେ ୧୯୦୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ

ହୋଇଥିଲା । ଏଥିରେ ବାମଣ୍ଡାର ଆଦର୍ଶ ନରପତି ସାର ରାଜା ବାସୁଦେବ ସୁଡ଼ଳଦେବଙ୍କ ଜୀବନୀ ସ୍ଥାନ ଲାଭ କରିଅଛି । ଭକ୍ତକବି ମଧୁସୂଦନଙ୍କ "ଲଳିତ ବସନ୍ତ ଗାଥା" କବିତା ପୁସ୍ତକରେ ଦେବାତ୍ମା ପ୍ୟାରୀମୋହନ, ବାମଣ୍ଡେଶ ରାଜା ଶ୍ରୀ ସୁଡ଼ଳଦେବ, କବି ଶ୍ରୀ ରାୟ ରାଧାନାଥ ରାୟ ବାହାଦୁର, କବି ଫକୀରମୋହନ ସେନାପତି, କର୍ମୀ ଗୌରୀଶଙ୍କର ରାୟଙ୍କ ସ୍ମୃତିକୀର୍ତ୍ତନ କରି କବିତା ସ୍ଥାନଲାଭ କରିଅଛି । ସେହିପରି "ସାହିତ୍ୟ କୁସୁମ" ଓ "ସାହିତ୍ୟ ପ୍ରସଙ୍ଗ" ପାଠ୍ୟପୁସ୍ତକ ଦ୍ୱୟରେ ମଧୁସୂଦନ ଯେଉଁ କେତେକ ଜୀବନୀ ରଚନା କରିଥିଲେ, ସେଗୁଡ଼ିକ ହେଲା—ସାର ଫିଲିପ୍ ସିଡ୍ନି, ମହର୍ଷି ଦେବେନ୍ଦ୍ରନାଥ, ହାଜୀ ମହମ୍ମଦ ମୋସୀନ, ମହାରାଣୀ ଭିକ୍ଟୋରିଆ, ସମ୍ରାଟ ସପ୍ତମ ଏଡ଼ୱାର୍ଡ଼, ସରସୟଦ୍ ଅହମ୍ମଦ୍, ରାଣୀ ଅହଲ୍ୟାବାଈ, ବୁଦ୍ଧଦେବ, କୃଷ୍ଣମୋହନ ବନ୍ଦୋପାଧ୍ୟାୟ, ରାଣୀ ଦୁର୍ଗାବତୀ, ସାର୍ ଆଇଜାକ ନିଉଟନ୍, ମହାପୁରୁଷ ମହମ୍ମଦ, ବାବର, ଅଶୋକ, କୁମାରୀ ତରୁଦତ୍ତ, ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ । ତେବେ ତାଙ୍କର "ପ୍ରବନ୍ଧମାଳା" ପୁସ୍ତକରେ 'ନେପୋଲିଅନ୍', ଶୀର୍ଷକ ଏକ ଦୀର୍ଘ ଜୀବନୀ-ପ୍ରବନ୍ଧ ସ୍ଥାନ ଲାଭ କରିଅଛି । ଏହି ସବୁ ଜୀବନୀ-ପ୍ରବନ୍ଧ ଗୁଡ଼ିକର ଉଦ୍ଦେଶ୍ୟ ହେଲା ବାଳକମାନଙ୍କୁ ଆଦର୍ଶ ଜୀବନଚରିତ ସହିତ ପରିଚିତ କରାଇବା । ଏଥିପାଇଁ ଅତ୍ୟନ୍ତ କୁଶଳତାର ସହିତ ମଧୁସୂଦନ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରୁ ଜୀବନକାହାଣୀ ସଂଗ୍ରହ କରି ଯାଇଅଛନ୍ତି । ଉଦାହରଣ ସ୍ୱରୂପ ସାର ଆଇଜାକ୍ ନିଉଟନଙ୍କ ଜୀବନୀ ଆଲୋଚନା କ୍ରମେ ଉପସଂହାରରେ ଲେଖକ ଲେଖିଥିଲେ—"ନିଉଟନଙ୍କ ଚରିତ୍ର ସମାନ୍ୟ ବ୍ୟକ୍ତିର ଚରିତ୍ର ତୁଲ୍ୟ ବର୍ଣ୍ଣିତ ଅଥବା ଆଲୋଚିତ ହୋଇ ନପାରେ । ତାହାଙ୍କର ଜୀବନୀ ପର୍ଯ୍ୟାଲୋଚନା କଲେ ମହୋପକାର ଏବଂ ମହାଶିକ୍ଷା ଲାଭ ହୁଏ । "ରାଣୀ ଅହଲ୍ୟାବାଈଙ୍କ ସମ୍ପର୍କରେ ଏହିପରି ସୂଚନା ଦିଆଯାଇଛି—"ପୁଣ୍ୟମୟୀ ରାଣୀ ଅହଲ୍ୟାଙ୍କର ଜୀବନ-ଚରିତ ଆଲୋଚନା କଲେ ହୃଦୟ ପବିତ୍ର ଆନନ୍ଦରେ ପୂର୍ଣ୍ଣ ହୁଏ । ତାହାଙ୍କର ପୁଣ୍ୟକୀର୍ତ୍ତି ଭାରତ ବର୍ଷର ନାନା ତୀର୍ଥ ସ୍ଥାନରେ ବର୍ତ୍ତମାନ ରହିଅଛି । ହିନ୍ଦୁମାନେ ଅଦ୍ୟାପି ତାହାଙ୍କୁ ଦେବୀ ଜ୍ଞାନରେ ଭକ୍ତି କରନ୍ତି ।" କବି ଗଙ୍ଗାଧରଙ୍କ ଗ୍ରନ୍ଥାବଳୀରେ 'ଶ୍ରୀ ନୃପରାଜ ସିଂହ' ଶୀର୍ଷକ ଏକ ଦୀର୍ଘ ଜୀବନଚରିତ ପ୍ରବନ୍ଧ ସ୍ଥାନ ଲାଭ କରିଅଛି । ସମ୍ବଲପୁର ଜିଲ୍ଲା ବରପାଲିର ସେ ଜଣେ ଆଦର୍ଶ ଶାସକ ଥିଲେ । ଏ ପ୍ରସଙ୍ଗରେ କହନ୍ତୁ କବି ନନ୍ଦକିଶୋର ବଳ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ 'ଜନ୍ମଭୂମି' ପୁସ୍ତକ ପ୍ରକାଶ କରିଥିଲେ । ଏଥିରେ ଜନ୍ମଭୂମିର ସୁଯୋଗ୍ୟ ସନ୍ତାନ ମଧୁସୂଦନ ଦାସ, ମଧୁସୂଦନ ରାଓ, ମହାରାଜା ରାମଚନ୍ଦ୍ର, ଅନନ୍ତରାମ ଭଞ୍ଜ, କବି ଫକୀରମୋହନ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ନୀଳମଣି ବିଦ୍ୟାରତ୍ନ, ଗଙ୍ଗାଧର ମେହେର, କୁନ୍ତଳାକୁମାରୀ ସାବତ, କବି ରାଧାନାଥ, ରାଜାରାମମୋହନଙ୍କ ବିଷୟରେ ସ୍ମୃତିତର୍ପଣ କରିଥିଲେ । ନିଶ୍ଚୟ କବିଙ୍କର ଉଦ୍ଦେଶ୍ୟ ଏହି ମହନୀୟ ଚରିତ ଗୁଡ଼ିକୁ ପାଠକମାନଙ୍କ ସହିତ ପରିଚିତ କରାଇବା, ତାହାହେଲେ ସେମାନେ ଉପଯୁକ୍ତ ପ୍ରେରଣା ଲାଭ କରି ପାରିବେ । ଉଦାହରଣ ସ୍ୱରୂପ ମହାରାଜା ରାମଚନ୍ଦ୍ରଙ୍କ ସମ୍ପର୍କରେ କବି ଲେଖିଥିଲେ—

'ନୃପତି ବିଳାସ ଅର୍ଥେ ପ୍ରକୃତି ସର୍ବସ୍ୱ
ପ୍ରଜା—ଅର୍ଥ—ନାଶ—ନୃପ ପାଇଁ ।
ପୁରାତନ ଏ ସଂସ୍କାର ସମୂଳେ ଉପାଡ଼ି
ଯାଇଅଛ ଆହେ ନରସାଇଁ ।
ରାଜାବେଶେ ଯୋଗୀବର ପବିତ୍ର ଚରିତ୍ର
ଜ୍ଞାନ ଭକ୍ତି କର୍ମ-ସମାବେଶେ
ମହତ୍ ଉଦାର ଚିତ୍ର ଆଙ୍କି ଯାଇ ଅଛ
ନୃପକୁଳେ ଏ ଉତ୍କଳ ଦେଶେ ।"

ଫକୀରମୋହନଙ୍କ ସମ୍ପର୍କରେ କବି ଲେଖିଥିଲେ—

'ସେ ଘୋର ଦୁର୍ଦ୍ଦିନ ବେଳେ ଉଦ୍ଦାମ ସାହସେ
ଲଜ୍ଜା, ଶଙ୍କା ଫିଙ୍ଗି ମହାମତି
ଯୁଝିଲ ଅସମରଣେ, ଲଭିଲ ବିଜୟ
ଧନ୍ୟ ଧନ୍ୟ ଧନ୍ୟ ସେନାପତି ।
ଉତ୍କଳ ଭାଷା ମନ୍ଦିର କରଣି ପ୍ରତିଷ୍ଠା
କଲ ଯେଉଁ ଶୁଭ ଶଙ୍ଖ ଧ୍ୱନି
ମୃତ୍ୟୁ ସଞ୍ଜୀବନୀ ମନ୍ତ୍ର କରି ଉଚ୍ଚାରଣ
ଜଗାଇଲ ଉତ୍କଳ ଅବନୀ ।

ଭାରତବର୍ଷରେ ଜାତୀୟ ଆନ୍ଦୋଳନ ଏବଂ ପାଶ୍ଚାତ୍ୟ ଶିକ୍ଷାଜନିତ ବସ୍ତୁବାଦୀ ଆଦର୍ଶର ପ୍ରତିକ୍ରିୟା ସାମାଜିକ ଚେତନା ସୃଷ୍ଟି ପାଇଁ ପ୍ରେରଣା ପ୍ରଦାନ କରିଥିଲା । ତେଣୁ ଏ ଯୁଗରେ କବି, ସମାଲୋଚକ ଓ ପ୍ରାବନ୍ଧିକଗଣ ମାସିକ ସାହିତ୍ୟ ପତ୍ରରେ ବହୁ ଜୀବନ-ଚରିତ ସମ୍ପର୍କୀୟ ପ୍ରବନ୍ଧ ପ୍ରକାଶ କଲେ । ପାଠ୍ୟପୁସ୍ତକରେ ମଧ୍ୟ ଅନେକ ଜୀବନକାହାଣୀ ପ୍ରସ୍ତୁତ ହେଲା । ଅବଶ୍ୟ ଏ ଯୁଗରେ ସାହିତ୍ୟିକମାନଙ୍କର ଯେଉଁ ଜୀବନକାହାଣୀ ଲିପିବଦ୍ଧ ହୋଇଥିଲା, ସେଥିରେ ଜୀବନୀ ଅପେକ୍ଷା ସାହିତ୍ୟ ଆଲୋଚନା ଅଧିକ ସ୍ଥାନ ଗ୍ରହଣ କରିଥିଲା । ଉଦାହରଣ ସ୍ୱରୂପ ଶ୍ୟାମସୁନ୍ଦର ରାଜଗୁରୁଙ୍କ 'ପ୍ରବନ୍ଧାବଳୀ' ପୁସ୍ତକ ଉଲ୍ଲେଖଯୋଗ୍ୟ । ଏଥିରେ ଶାରଳା ଦାସ, ବଳରାମ ଦାସ, ଯାଦୁମଣି ଦାସ, ଧନଞ୍ଜୟ ଭଞ୍ଜ, ହଳଧର ଦାସ, ଗୋପାଳ କବି, କୃଷ୍ଣ ସିଂହ, ଦାଶରଥି ଦାସ, କୃପାସିନ୍ଧୁ ଦାସ, କବି ହରିକୃଷ୍ଣ, ରାମ ଦାସ, ନନ୍ଦକିଶୋର ରାଣୀ, କାହ୍ନୁ ଦାସ ପ୍ରଭୃତି ସାହିତ୍ୟରଥୀମାନଙ୍କର ଜୀବନୀ ଓ ସାହିତ୍ୟର ଆଲୋଚନା କରାଯାଇଛି । ପ୍ରବନ୍ଧାବଳୀ ୧୯୧୭ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲେହେଁ ଏଥିର ପ୍ରବନ୍ଧଗୁଡ଼ିକ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ପତ୍ରିକାରେ ସ୍ଥାନ ଲାଭ କରିଥିବା ଜଣାଯାଏ । ଅତଏବ ସାହିତ୍ୟିକ ଜୀବନଚରିତ ପ୍ରଣୟନରେ ପ୍ରବନ୍ଧାବଳୀର ଲେଖକ ଓଡ଼ିଆ ସାହିତ୍ୟରେ ଅଗ୍ରଗଣ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ଏହି ସମୟରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ପଣ୍ଡିତ ଗୋପୀନାଥ

ନନ୍ଦଶର୍ମା, ତାରିଣୀ ଚରଣ ରଥ ପ୍ରଭୃତି ବିଭିନ୍ନ ସାହିତ୍ୟିକ ପ୍ରବନ୍ଧ ଜରିଆରେ କବିମାନଙ୍କର ଜୀବନଚରିତ ପ୍ରଚାର କରିଥିଲେ । ଏହି କାଳରେ ୧୯୨୧ ସାଲରେ ମହାମହୋପାଧ୍ୟାୟ ଶ୍ରୀ ସଦାଶିବ ମିଶ୍ରଙ୍କ 'ଅତିବଡ଼ ଶ୍ରୀ ଜଗନ୍ନାଥ ଦାସ ଗୋସ୍ୱାମୀ' ପୁସ୍ତକ ପ୍ରକାଶିତ ହୋଇଥିଲା । ଓଡ଼ିଆ ଭାଷାରେ ବୋଧହୁଏ ଏହା ସର୍ବପ୍ରଥମ ଦୀର୍ଘ 'ଜୀବନଚରିତ' ବୋଲି ଅନୁମାନ କରାଯାଇପାରେ । ପୂର୍ବରୁ ପ୍ରକାଶିତ ଜୀବନଚରିତଗୁଡ଼ିକ କେବଳ କ୍ଷୁଦ୍ର ପ୍ରବନ୍ଧ ଥିଲି କହିଲେ ଚଳେ । ସେଥିପାଇଁ ଲେଖକ ମୁଖବନ୍ଧରେ ଲେଖିଥିଲେ – "ବହୁ ପରିଶ୍ରମରେ ଶ୍ରୀ ଅତିବଡ଼ ଜଗନ୍ନାଥ ଗୋସ୍ୱାମୀଙ୍କ ଜୀବନଚରିତ ପରିସମାପ୍ତ ହେଲା । ଏହାର ଆୟୋଜନ, ଗଠନ ଓ ପରିସମାପ୍ତିରେ ଆମ୍ଭର କୌଣସି କୃତିତ୍ୱ ଥାଉ ବା ନଥାଉ ଗୌରବ ତାହାଙ୍କର, ଯେଉଁ ମହାପୁରୁଷ ନିଜର ଅଲୌକିକ ଲୀଳା ଚୈତନ୍ୟ ପ୍ରଦର୍ଶନ କରି ଇହ ସଂସାରରେ ଅମୂଲ୍ୟ ଓ ଅପୂର୍ବ ଆଦର୍ଶ ଜୀବନଯାପନ କରିଯାଇଅଛନ୍ତି । ଏହାହିଁ ଆଶ୍ଚର୍ଯ୍ୟର ବିଷୟ—ଏହାହିଁ ଆମ୍ଭମାନଙ୍କର ସାମାଜିକ ଗର୍ବ ଓ ଗୌରବର ବିଷୟ । × × ×

ଏ ପ୍ରଦେଶରେ କେତେ କେତେ ମହାତ୍ମାଙ୍କର ଆବିର୍ଭାବ ଓ ତିରୋଭାବ ହୋଇଯାଇ-ଅଛି । ସେମାନଙ୍କ ମାହାତ୍ମ୍ୟ ପ୍ରଚାର ବିଷୟରେ ଆଧୁନିକ ଲୋକମାନଙ୍କର ଆଧୁନିକ ରୁଚି ଓ ରୀତିରେ କୌଣସି ଜୀବନୀପୁସ୍ତକ ଲେଖାଯିବାର ପ୍ରାୟ ଦେଖାଯାଏ ନାହିଁ । ଅନ୍ୟାନ୍ୟ ପ୍ରଦେଶରେ ଅତି ସାମାନ୍ୟ ଗୁଣବିଶିଷ୍ଟ ବ୍ୟକ୍ତିଙ୍କର ଜୀବନ ସୁଦ୍ଧା ସର୍ବସୁନ୍ଦର ରୂପେ ବର୍ଣ୍ଣନା କରି ଲେଖାଯାଉଅଛି । ମାତ୍ର ଆଜିକାଲି ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଲେଖକମାନଙ୍କର ସେ ଆଡ଼କୁ ନଜର ନାହିଁ । ସେମାନେ ଦେଶୀୟ ଓ ସ୍ୱଜାତୀୟ ଲୋକମାନଙ୍କୁ ବିଜାତୀୟ ଈର୍ଷାପ୍ରଣୋଦିତ ବୈଦେଶିକମାନଙ୍କ ସମ୍ମୁଖରେ ନିନ୍ଦାବାଦ ଶୁଣି ଶୁଣି ହୀନଦୃଷ୍ଟିରେ ଦେଖୁଅଛନ୍ତି । ଦେଶର ଓ ସମାଜର ଏପରି ଅଧଃପତନ ସମୟରେ ଜାତୀୟ ଜାଗରଣର ପ୍ରୟୋଜନ ହୋଇଅଛି । ଲୋକ ସମକ୍ଷରେ ସ୍ୱଦେଶ ଓ ସ୍ୱସମାଜର ଉଚ୍ଚ ଆଦର୍ଶ ଧାରଣ କରିବାର ସମୟ ଆସିଅଛି । ଉତ୍କଳରେ ବିଦ୍ୟାକର, ନରସିଂହ ପ୍ରଭୃତି ବଡ଼ ବଡ଼ ସାଂସ୍କୃତିକ ପଣ୍ଡିତ ଓ କବି ମାତୃ-ଭାଷାରେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ ପ୍ରଭୃତି ଉତ୍କଳ କବି, ଅଚ୍ୟୁତାନନ୍ଦ, ଯଶୋବନ୍ତ ପ୍ରଭୃତି ଧର୍ମପ୍ରଚାରକ ଓ ମହାତ୍ମାଗଣ ଉତ୍କଳ ପ୍ରଦେଶକୁ ଗୌରବାନ୍ୱିତ କରିଯାଇଅଛନ୍ତି । ସୁତରାଂ ଏମାନଙ୍କ ଜୀବନଚରିତ ଲେଖାହେବା ଆବଶ୍ୟକ ।"

ଏଥିରୁ ଜଣାଯାଉଅଛି ଯେ ଏହି ପୁସ୍ତକ ରଚିତ ହେବାକାଳରେ ଉଲ୍ଲେଖଯୋଗ୍ୟ ଜୀବନଚରିତ ଓଡ଼ିଆ ସାହିତ୍ୟରେ ପ୍ରକାଶିତ ହୋଇ ନଥିଲା ଅଥବା ସେଥିପ୍ରତି ଶିକ୍ଷିତ ଜନସାଧାରଣ ଆଗ୍ରହୀ ନଥିଲେ । ଏକ ଅଧଃପତିତ ସମାଜରେ ଆଦର୍ଶ ଧାରଣ ପାଇଁ ଜୀବନ-ଚରିତର ଯଥେଷ୍ଟ ଆବଶ୍ୟକତା ଅଛି ବୋଲି ଲେଖକ ଅନୁଭବ କରିଥିଲେ ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ଅତିକ୍ରାନ୍ତ ହେବା କାଳରେ ଓଡ଼ିଆ ସାହିତ୍ୟରେ 'ଜୀବନଚରିତ' ଲେଖିବା ପାଇଁ ପ୍ରବଳ ଉଦ୍ୟମ ଆରମ୍ଭ ହୋଇଥିଲା । ଏ କ୍ଷେତ୍ରରେ 'ମୁକୁର'

'ଉତ୍କଳ ସାହିତ୍ୟ' ପରି ତତ୍କାଳୀନ ସାହିତ୍ୟ ପତ୍ରିକାଗୁଡ଼ିକ ଯଥେଷ୍ଟ ପୃଷ୍ଠପୋଷକତା କରିଥିବା ଜଣାଯାଏ । ବୋଧହୁଏ ଏହି କାଳରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ "କର୍ମଯୋଗୀ ଗୌରୀଶଙ୍କର" ଏକ ମୂଲ୍ୟବାନ ଜୀବନଚରିତ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ଭାଷା, ସାହିତ୍ୟ ଏବଂ ସଂସ୍କୃତିକୁ ଯେଉଁ କେତେଜଣ ମହାପୁରୁଷ ଆସନ୍ନ ମୃତ୍ୟୁମୁଖରୁ ବଞ୍ଚାଇଥିଲେ, ସେମାନଙ୍କ ମଧ୍ୟରେ ଗୌରୀଶଙ୍କର ଅନ୍ୟତମ ଥିଲେ । ତେଣୁ ତାଙ୍କର ଜୀବନୀ ପ୍ରଣୀତ ହେବା ଯଥାର୍ଥ ହୋଇଅଛି । ଏହି ପୁସ୍ତକର ପ୍ରାରମ୍ଭରୁ ଲେଖକ ମୃତ୍ୟୁଞ୍ଜୟ ଲେଖିଥିଲେ – "ବ୍ରିଟିଶ ଅଧିକାରକୁ ଆସି ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଯେତେବେଳେ ଭାରତବର୍ଷର ସର୍ବାଞ୍ଚଳ ନୂତନ ସଭ୍ୟତାର ଆଲୋକରେ ଉଦ୍ଭାସିତ ହୋଇଥିଲା, ସେତେବେଳେ ଆମ୍ଭମାନଙ୍କର ଜନ୍ମଭୂମି ଉତ୍କଳ ଘୋର ଅନ୍ଧକାର ମଧ୍ୟରେ ସୁପ୍ତ ଅଚେତନ-ବତ୍ ପଡ଼ିରହିଥିଲା । ଅନ୍ୟମାନେ କାର୍ଯ୍ୟକ୍ଷେତ୍ରରେ ବହୁଦୂର ଅଗ୍ରସର ହେବାପରେ ଯେତେବେଳେ ଉତ୍କଳ ସେହିପରି ନିଦ୍ରିତ ଓ ନିଶ୍ଚେଷ୍ଟ ରହିଥିଲା, ସେତେବେଳେ ଯେଉଁ କର୍ମୀ-ପୁରୁଷମାନେ ଦୀପଶିଖା ଧରି ଦେଶବାସୀଙ୍କୁ ଜାଗରିତ କରିଥିଲେ ଏବଂ ସେହି ବାଧାବହୁଳମୟ କର୍ମପଥରେ ଅଗ୍ରଗାମୀ ହୋଇ ଚାହାଁଥିଲେ, ତନ୍ମଧ୍ୟରେ ପରଲୋକଗତ ଗୌରୀଶଙ୍କର ରାୟ ଜଣେ ।" (କର୍ମଯୋଗୀ ଗୌରୀଶଙ୍କର—ପୃ ୧)

ଏହି ଜୀବନଚରିତ ଖଣ୍ଡିକ କ୍ଷୁଦ୍ର ହେଲେହେଁ ଓଡ଼ିଆ ସାହିତ୍ୟରେ ଏହା ଚିରନ୍ତନ ଐଶ୍ୱର୍ଯ୍ୟର ଅଧିକାରୀ । ଊନବିଂଶ ଶତାବ୍ଦୀର ଓଡ଼ିଶାର ସାହିତ୍ୟ, ସମାଜ ଓ ସାଂସ୍କୃତିକ ଜୀବନ ସମ୍ପର୍କରେ ଆଲୋଚ୍ୟ ପୁସ୍ତକ ଟିକିନିଖି ବିବରଣୀ ପ୍ରଦାନ କରିଥାଏ । ଓଡ଼ିଶାର ଏକ ଅନ୍ଧାରୟୁଗର ସତ୍ୟ ଉଦ୍‌ଘାଟନ କରିବାରେ ଏହି ଜୀବନୀପୁସ୍ତକ ସହାୟକ ହୋଇଅଛି । ଓଡ଼ିଆ ଜାତୀୟତାର ଉନ୍ମେଷ କିପରି ପ୍ରବାହିତ ହୋଇଥିଲା, ତାହା ଏହି ଗ୍ରନ୍ଥରେ ବିଶ୍ଳେଷିତ ହୋଇଥିବାରୁ ଗୌରୀଶଙ୍କରଙ୍କ ଜୀବନ କାହାଣୀ ସମଗ୍ର ସମାଜଜୀବନର ଅଙ୍କନ ପରି ଅନୁଭୂତ ହୋଇଥାଏ ।

୧୯୧୧ ସାଲରେ ପ୍ରକାଶିତ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ 'ଶାରଳାଚରିତ' ଏଠାରେ ଉଲ୍ଲେଖଯୋଗ୍ୟ । ଏଥିରେ ଶାରଳା ଦାସଙ୍କ ଜୀବନକାହାଣୀ ଏବଂ ତାଙ୍କର ସାହିତ୍ୟକୃତି ସମ୍ପର୍କରେ ବହୁ ମୂଲ୍ୟବାନ ସମ୍ବାଦ ଯୋଗାଇ ଦିଆଯାଇଛି । ପରବର୍ତ୍ତୀ କାଳରେ ଏହି ଗ୍ରନ୍ଥ ଶାରଳା ଦାସଙ୍କ ସମ୍ପର୍କରେ ଅଧିକ ଗବେଷଣା କରିବା ପାଇଁ ପ୍ରେରଣା ପ୍ରଦାନ କରିଥିଲେ ଏବଂ ଶାରଳା ସାହିତ୍ୟ ଓ ତାଙ୍କର ଜୀବନୀ ସମ୍ପର୍କରେ ବହୁ ଗବେଷକ ଓ ଲେଖକ ନୂତନ ଆଲୋକପାତ କରିବାକୁ ସକ୍ଷମ ହୋଇଥିଲେ । ଏହି ଗ୍ରନ୍ଥର ଭୂମିକା ଲେଖିଥିଲେ 'ମୁକୁର'ର ସୁଯୋଗ୍ୟ ସମ୍ପାଦକ ବ୍ରଜସୁନ୍ଦର ଦାସ । ସେ ଲେଖିଥିଲେ—'ଅମ୍ଭମାନଙ୍କ ଦେଶରେ ଇତିହାସ (ମାଦଳାପାଞ୍ଜି ବ୍ୟତୀତ) ଲେଖିବା ବା ଜୀବନୀ ଲେଖିବା ପଦ୍ଧତି ପୂର୍ବରୁ ନଥିଲା । କବିମାନେ ନିଜ କାବ୍ୟରେ କଦାଚିତ୍ ଆତ୍ମ ବିବୃତି ବା ଆତ୍ମପରିଚୟ ପ୍ରଦାନ କରୁଥିଲେ । କିନ୍ତୁ ତାହା ଅନେକ ସ୍ଥଳରେ ଏପରି ସ୍ଥୂଳ ଯେ ତହିଁରୁ କବିଙ୍କର ସମସ୍ତ ଘଟଣାପୂର୍ଣ୍ଣ ଜୀବନୀର ଅତି ସ୍ୱଳ୍ପ ଆଭାସ ମିଳେ । ଲେଖକ ଅତୀବ ଯତ୍ନରେ ଓ ଗଭୀର ଗବେଷଣା ପୂର୍ବକ ଇତିହାସ

କମ୍ପଦଳୀ ପ୍ରକୃତିର ଓ କବିଙ୍କ ନିଜ କଳ୍ପନା ସାହାଯ୍ୟରେ ଶାରଳାଦାସଙ୍କର ସର୍ବାଙ୍ଗସୁନ୍ଦର ଜୀବନୀ ଗୋଟିଏ ରଚନା କରିଅଛନ୍ତି । ପୁସ୍ତକଟିର ସମାଲୋଚନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ପୁଙ୍ଖାନୁପୁଙ୍ଖ ରୂପେ ଦେଖିଲେ କୌଣସି କୌଣସି ସ୍ଥାନରେ ଭ୍ରମ ଦୃଷ୍ଟିଗୋଚର ହୋଇପାରେ; କିନ୍ତୁ ତାହା ବୋଲି ପୁସ୍ତକଟି ପ୍ରମାଦପୂର୍ଣ୍ଣ ନୁହେଁ । କେବଳ ଦୋଷବହୁଳ ନୁହେଁ ବୋଲି ଯେ ଏହା ସ୍ପୃହଣୀୟ, ଅମ୍ଭେମାନେ ତାହା କହୁନାହୁଁ—ଏହା ଉତ୍କଳ ସାହିତ୍ୟରେ ପ୍ରଥମ ଦୀର୍ଘତମ ଧାରାବାହିକ ଜୀବନୀ । ଏହି ହେତୁ ଏହା ଆମ୍ଭମାନଙ୍କଠାରେ ଆଦରଣୀୟ ।”

ଏହି କାରଣରୁ ଓଡ଼ିଆ ଜୀବନଚରିତ ଆଲୋଚନା ପ୍ରସଙ୍ଗରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ପ୍ରାତଃସ୍ମରଣୀୟ । ସେ ହେଉଛନ୍ତି ପ୍ରଥମ ଶକ୍ତିଶାଳୀ ଜୀବନଚରିତ ଲେଖକ । ଗୌରୀଶଙ୍କର ଓ ଶାରଳାଦାସଙ୍କ ଦୀର୍ଘଜୀବନୀ ଲେଖି ସେ ସନ୍ତୁଷ୍ଟ ରହିନାହାନ୍ତି, ତାଙ୍କର ୧୯୧୧ରେ ପ୍ରକାଶିତ ପ୍ରବନ୍ଧପାଠ ଏବଂ ୧୯୧୭ରେ ପ୍ରକାଶିତ ନାରୀଦର୍ପଣ ପୁସ୍ତକରେ ଦୁଇଟି ଖଣ୍ଡରେ ବହୁତଗୁଡ଼ିଏ ଜୀବନୀ ରଚନା କରିଯାଇଅଛନ୍ତି । ପ୍ରବନ୍ଧ ପାଠରେ ପ୍ରତାପ ସିଂହ, ଉଇଲିୟମ୍ ହଣ୍ଟର, ସାର୍ ଉଇଲିୟମ୍ ଜୋନସ୍, ଜର୍ଜ୍ଜଷ୍ଟିଫେନ୍ସନ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରଭୃତି ପ୍ରାଚ୍ୟ ଓ ପାଶ୍ଚାତ୍ୟଖଣ୍ଡର କେତେକ ବିଖ୍ୟାତ ଜୀବନଚରିତ ସ୍ଥାନ ଲାଭ କରିଛି । ମାତ୍ର ଜୀବନଚରିତ ସମ୍ପର୍କରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ମତାମତ ମଧ୍ୟ ଏଥିରେ ପ୍ରଣିଧାନଯୋଗ୍ୟ । ସେ ଆଲୋଚ୍ୟ ପ୍ରବନ୍ଧ ପୁସ୍ତକରେ ‘ଲୋକ-ଚରିତ’ ଶୀର୍ଷକ ଏକ ପ୍ରବନ୍ଧକୁ ସ୍ଥାନ ଦେଇଛନ୍ତି । ସେଥିରେ ଜୀବନୀ ସାହିତ୍ୟର ମହତ୍ତ୍ୱ ସମ୍ପର୍କରେ ବିଶଦ ଆଲୋଚନା କରାଯାଇଛି । ସେଥିରେ ସେ ଲେଖିଛନ୍ତି—“ମନୁଷ୍ୟ ଚରିତ୍ର କେବଳ ଭ୍ରମପ୍ରମାଦପୂର୍ଣ୍ଣ । ଯଥାସମ୍ଭବ ନିର୍ଦ୍ଦୋଷ ମାର୍ଗରେ ଜୀବନକୁ ଚଳାଇବାକୁ ହେଲେ ମହାତ୍ମାମାନଙ୍କର ଚରିତ୍ର ଗୋଟିଏ ପ୍ରଧାନ ଅବଲମ୍ବନ । ସେଥିପାଇଁ କଥାରେ କହନ୍ତି, ମହାଜନୋଯେନ ଗତଃ ସ ପନ୍ଥାଃ ।” ଯେପରି ଗୋଟିଏ ଛାଞ୍ଚରେ ପଦାର୍ଥଟି ସୁନ୍ଦର ଓ ସୁଗଠିତ ହୁଏ, ସେହିପରି ମହାତ୍ମାମାନଙ୍କର ଜୀବନର ଆଦର୍ଶରେ ଚରିତ୍ର ସୁଗଠିତ ହୋଇଥାଏ । ସମୁନ୍ନତ ଦେଶମାନଙ୍କରେ ଏ ବିଷୟରେ ଆଲୋଚନା ବହୁଳ ଭାବରେ ହେବାର ଦେଖାଯାଇଥାଏ । ସେହି ଦେଶବାସୀମାନେ ବିବିଧ ଲୋକଚରିତ ପାଳନ କରି ସେଥିରୁ ହଂସବତ୍ ସାର ଗ୍ରହଣ ପୂର୍ବକ ସ୍ୱୀୟ ଜୀବନର ଉତ୍କର୍ଷ ସାଧନ କରନ୍ତି । × × × × ମହାତ୍ମାମାନଙ୍କ ଚରିତ ପାଠର ପ୍ରଥମ ପ୍ରୟୋଜନୀୟତା ଏହି ଯେ, ତାହା ପାଠ କଲେ ପାଠକ ହୃଦୟକୁ ଗୋଟିଏ ନବବଳ ଆସେ । ତାହାଙ୍କ ଜୀବନର ଗ୍ରସ୍ଥା ପାଠକ ହୃଦୟରେ କିଞ୍ଚିତ ପ୍ରତିଫଳିତ ହୁଏ । ଯେ ଯେତିକି ଅବହିତ ଓ ଚିତ୍ତଗତ ହୋଇ ଆଲୋଚନା କରିବେ, ସେ ତେତିକି ଉକ୍ତ ମହାତ୍ମାମାନଙ୍କର ମହାଭାବ ହୃଦୟଙ୍ଗମ କରିପାରିବେ ଏବଂ ଉକ୍ତ ଗ୍ରସ୍ଥା ତାଙ୍କ ହୃଦୟରେ ତଦ୍‌ବତ୍ ସଂଶ୍ଳିଷ୍ଟ ରହିବ ।”

(ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ—ପୃ ୪୯୬)

ଅତଏବ ଏହି ବିଶ୍ୱାସର ବଶବର୍ତ୍ତୀ ହୋଇ ଜଣେ ଆଦର୍ଶ ଶିକ୍ଷକ ଓ ଲେଖକ ହିସାବରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ତରୁଣ ସମାଜ ଉଦ୍ଦେଶ୍ୟରେ କେତେକ ଉତ୍କୃଷ୍ଟ ଜୀବନ

କାହାଣୀ ପରିବେଷଣ କରିଯାଇଅଛନ୍ତି । 'ନାରୀ ଦର୍ପଣ' ପୁସ୍ତକରେ ସେ ଉଭୟ ପୁରାଣ ଯୁଗ ଓ ଐତିହାସିକ ଯୁଗର ଆଦର୍ଶ ନାରୀମାନଙ୍କର ଚରିତ ଲେଖିବାପାଇଁ ଆଗ୍ରହୀ ହୋଇଛନ୍ତି ।'ଏହି ଚରିତ ଗୁଡ଼ିକ ହେଲେ—ସାବିତ୍ରୀ, ସୀତା, ଶୈବ୍ୟା ସୁକନ୍ୟା, ମୈତ୍ରେୟୀ, ମାଳିନୀ, ଝମା, ପଦ୍ମିନୀ, କର୍ମଦେବୀ, ପାନ୍ନା, ରାଣୀ ଶୁକଦେଈ, ମହାରାଣୀ ସ୍ୱର୍ଣ୍ଣମୟୀ, ସୁଲକ୍ଷଣା, ଦମୟନ୍ତୀ, ଚିନ୍ତା ଓ ଭଦ୍ରା, ଗାନ୍ଧାରୀ ଗାର୍ଗୀ, ଲୀଳାବତୀ, ସଂଯୁକ୍ତା, କୃଷ୍ଣକୁମାରୀ, ରାଣୀ ଦୁର୍ଗାବତୀ, ମାଧବୀ, ରାଣୀଅହଲ୍ୟାବାଈ, ସରସ୍ୱତୀ ଇତ୍ୟାଦି ।

ସୁଖର କଥା, ଏହି ସମୟରେ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ନାମରେ ଏକ ଅନୁଷ୍ଠାନ ଜୀବନଚରିତ ଲେଖାଇ ପ୍ରକାଶ କରିବାରେ ନେତୃତ୍ୱ ଗ୍ରହଣ କରିଥିଲେ । ତାଙ୍କର ଆନୁକୂଲ୍ୟରେ ଅନେକ ଶକ୍ତିଶାଳୀ ଲେଖକ ଜୀବନଚରିତ ଲେଖିବାରେ ହାତ ଦେଇଥିଲେ । ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ବିଜ୍ଞାପନ ପ୍ରକାଶ କରି ଯେଉଁ ଅଭିମୁଖ୍ୟ ଘୋଷଣା କରିଥିଲେ ତହିଁରେ ଏକତମ ଉଦ୍ଦେଶ୍ୟ ଥିଲା ବୀର ଜୀବନୀ ପ୍ରଚାର । ୧୯୨୬ ସାଲରେ ସାହିତ୍ୟ ପ୍ରଚାର ସଂଘ ମହାରାଜା ଶ୍ରୀ ରାମଚନ୍ଦ୍ରଙ୍କ ଜୀବନୀ ପ୍ରଚାର କଲେ । ଏହାର ଲେଖକ ଥିଲେ ଔପନ୍ୟାସିକ ବାସୁଦେବସିଂହ ପାଣିଗ୍ରାହୀ । ମାତ୍ର ଦୁଇବର୍ଷ ପରେ ୧୯୨୮ ସାଲରେ ଉକ୍ତ ଜୀବନଚରିତର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହୋଇଥିଲା । ଅତଏବ ଜୀବନଚରିତ ପାଠକ ସଂସାରରେ ଆଦର ଲାଭ କରୁଥିଲା ବୋଲି ପ୍ରମାଣିତ ହେଉଅଛି । ୧୯୨୭ ସାଲରେ ଏହି ସଂଘ ଆନୁକୂଲ୍ୟରେ ବନମାଳୀ ପଣ୍ଡାଙ୍କ 'ଦୟାନନ୍ଦ', ଜଗବନ୍ଧୁ ସିଂହଙ୍କ 'ବୁକାର ୱାଶିଂଟନ', ପଦ୍ମଚରଣ ପଟ୍ଟନାୟକଙ୍କ 'ମାର୍ଟିନଲୁଥର' ପ୍ରଚାରିତ ହେଲା । ସେହିବର୍ଷ ଲକ୍ଷ୍ମୀନାରାୟଣ ସାହୁ "କର୍ମବୀର ଗୋଖଲେ" ପ୍ରକାଶ କରିଥିଲେ । ପୁନଶ୍ଚ ୧୯୨୮ ସାଲରେ ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ଦାମୋଦର ମିଶ୍ରଙ୍କ "ମହମ୍ମଦ" ପ୍ରକାଶ କଲେ । ୧୯୨୯ ସାଲରେ ବାମଦେବ ମିଶ୍ରଙ୍କ ଲିଖିତ "ଔରଙ୍ଗଜେବ" ସାହିତ୍ୟ ପ୍ରଚାର ସଂଘ କର୍ତ୍ତୃକ ପ୍ରକାଶିତ ହେଲା । ଏହି ପୁସ୍ତକର ବିଜ୍ଞାପନରୁ ଜଣାଯାଉଅଛି ଯେ ସେତେବେଳେକୁ ଏହି ସଂଘ ତେରଖଣ୍ଡି ଜୀବନୀପୁସ୍ତକ ପ୍ରକାଶ କରିସାରିଛନ୍ତି । ସେ ଗୁଡ଼ିକ ହେଲା । (୧) ମହାଦେବ ଗୋବିନ୍ଦ ରାନାଡ଼େ, (୨) ମାର୍ଟିନ ଲୁଥର (୩) ବୁକାର ୱାଶିଂଟନ (୪) ସ୍ୱାମୀ ବିବେକାନନ୍ଦ (୫) ଫକୀରମୋହନ ସେନାପତି (୬) ଦୟାନନ୍ଦ (୭) ମହମ୍ମଦ (୮) ମହାରାଜା ରାମଚନ୍ଦ୍ର (୯) ରବିନସନ୍ କ୍ରୁଶୋ (୧୦) ଭକ୍ତକବି ମଧୁସୂଦନ (୧୧) ମହାତ୍ମା ନୃଷ ପିଟର (୧୨) ଭକ୍ତମଣି (୧୩) ବୀରକେଶରୀ ଶିବାଜୀ ।

ବୀରଜୀବନୀ ପ୍ରଚାର ପାଇଁ ସାହିତ୍ୟ ପ୍ରଚାର ସଂଘ କିପରି ପ୍ରାଧାନ୍ୟ ଆରୋପ କରିଥିଲେ, ତାହା ଏହି ପ୍ରକାଶିତ ବିଜ୍ଞାପନରୁ ଜଣାଯାଉଅଛି । ଜଗବନ୍ଧୁ ସିଂହ ବୁକାର ୱାଶିଂଟନ' ପୁସ୍ତକରେ ଜୀବନଚରିତ ପାଠର ଉଦ୍ଦେଶ୍ୟ ଉଲ୍ଲେଖ କରି ଲେଖିଥିଲେ—'ଭଗବାନଙ୍କ ଶକ୍ତି କେଉଁଠି କି ଆକାରରେ କେତେବେଳେ ପ୍ରକାଶିତ ହୁଏ, ବୁଝିବା କଠିନ ବ୍ୟାପାର । ସେହି ଶକ୍ତି ଯେତେ ଅଧିକ ପରିମାଣରେ ଯେଉଁଠି ପ୍ରକାଶିତ ହୁଏ ସେହି ଜୀବନ ସେତେ ମୂଲ୍ୟବାନ । ସେହି ଜୀବନ ଅନ୍ୟର ଆଦର୍ଶ ଜୀବନ ହୁଏ—ସେହି ଜୀବନଚରିତ ପାଠ କରି

ଅନ୍ୟ ଲୋକ ଆପଣା ଜୀବନର କାର୍ଯ୍ୟପ୍ରଣାଳୀ ସେହି ଆଦର୍ଶରେ ଗଢ଼େ । ସେହି ଜୀବନଚରିତ ପାଠ କରି ଆପଣା ଜୀବନର କାର୍ଯ୍ୟ ପ୍ରଣାଳୀକୁ ତଦନୁସାରେ ନିୟନ୍ତ୍ରିତ କରି ନ ପାରିଲେ ଜୀବନ ଚରିତ ପାଠ କରିବାର କିଛି ମୂଲ୍ୟ ନାହିଁ । ଶକ୍ତିର ବିକାଶ ଲାଗି ନିର୍ଦ୍ଦିଷ୍ଟ ସ୍ଥାନର ଆବଶ୍ୟକତା ନାହିଁ । ସଂସାରର ସୃଷ୍ଟି ପ୍ରକ୍ରିୟା ଯେପରି ବିଚିତ୍ର, ସେହିପରି ସୃଷ୍ଟି ମଧ୍ୟରେ ଶକ୍ତିବିକାଶର ବୈଚିତ୍ର୍ୟ ଦେଖାଯାଏ । ଶକ୍ତି ବିକାଶ କେବଳ ରାଜପ୍ରାସାଦ ମଧ୍ୟରେ ବା ଧନୀଗୃହରେ ବା ଉଚ୍ଚଜାତିର ଗୃହରେ ଅଥବା ଶିକ୍ଷିତ ସମାଜରେ ହୁଏ ନାହିଁ । × × × ସୁତରାଂ କୌଣସି ଲୋକକୁ ଘୃଣା ଦୃଷ୍ଟିରେ ଦେଖିବ ନାହିଁ । ପ୍ରତ୍ୟେକ ପ୍ରାଣିଠାରୁ ଆମ୍ଭମାନଙ୍କର ଅନେକ କଥା ଶିଖିବାର ଅଛି । ପ୍ରତ୍ୟେକ ପ୍ରାଣିର ଜୀବନ ସ୍ରୋତ ମଧ୍ୟରେ ଅମୂଲ୍ୟ ରତ୍ନ ବାଛି ଗ୍ରହଣ କରିବାର ଅଛି ।" (ପୃ ୧ । ୨)

ସେହିପରି "ମାର୍ଟିନଲୁଥର" ପୁସ୍ତକରେ କବି ଧନଞ୍ଜୟ ପଟ୍ଟନାୟକ ଲେଖିଥିଲେ — 'ଲୁଥର କେବଳ ଧର୍ମ ପ୍ରଚାରକ ବା ଧର୍ମ ସଂସ୍କାରକ ନୁହଁନ୍ତି । ତାଙ୍କ ଜୀବନର ଇତିହାସ ମହା ବୀରତ୍ୱମୟ ଓ ଉନ୍ମାଦକର ଘଟଣାବଳୀରେ ପରିପୂର୍ଣ୍ଣ । ଦାରିଦ୍ର୍ୟକାଳରେ ଲାଳିତ-ପାଳିତ ହୋଇ କଠୋର ସନ୍ନ୍ୟାସବ୍ରତ ଗ୍ରହଣ କରି ସେ ଆତ୍ମୋତ୍ସର୍ଗର ଯେଉଁ ଦୃଷ୍ଟାନ୍ତ ଦେଖାଇ ଯାଇଅଛନ୍ତି, ତାହା ଚିରକାଳ ମହୋଚ୍ଚ ଆଦର୍ଶ ରୂପେ ପୂଜା ପାଉଥିବ । ସେ ବିଦ୍ୟା, ବୁଦ୍ଧି, ସାହସ, ସଂଯମ, ଭଗବତ୍ ଭକ୍ତି, ପରୋପକାରପରାୟଣତା ଓ ସରଳତା ପ୍ରଭୃତି ଅସାମାନ୍ୟ ଗୁଣ ସମ୍ପଦରେ ପୃଥିବୀରେ ବିଖ୍ୟାତ ହୋଇଅଛନ୍ତି । ହୃଦୟର ବିଶାଳତା, ଇଚ୍ଛାର ଅଲଂଘ୍ୟତା, ଲକ୍ଷ୍ୟର ଅଚଞ୍ଚଳତା ଏବଂ ଧର୍ମ ବିଶ୍ୱାସର ଗମ୍ଭୀରତାରେ ସେ ଦେବୋପମ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ଲେଖକର ବିବେଚନାରେ ଏପରି ଗୋଟିଏ ଅସ୍ଥିମଜ୍ଜା ବିଶିଷ୍ଟ ସ୍ୱାଧୀନଚେତା ପୁରୁଷର ଜୀବନୀ ଆଧୁନିକ ସମୟର ଏ ଦେଶର ନବ୍ୟସମ୍ପ୍ରଦାୟ ପକ୍ଷରେ ବଡ଼ ଉପଯୋଗୀ ଓ ଉପକାରୀ ।"

ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ ଏହି ମାହେନ୍ଦ୍ରବେଳାରେ ଜୀବନଚରିତ ପ୍ରଚାର କରିବାର ଦାୟିତ୍ୱ ବହନ କରିଥିଲେ । କାରଣ ସେହି ସମୟରେ ତତ୍କାଳୀନ ଉତ୍କଳର ପ୍ରଖ୍ୟାତ ପ୍ରକାଶକ କଟକ ଟ୍ରେଡ଼ିଂ କମ୍ପାନୀ ଅନେକ ଗୁଡ଼ିଏ ଜୀବନୀଗ୍ରନ୍ଥ ପ୍ରକାଶ କଲେ । ୧୯୩୦ ଖ୍ରୀଷ୍ଟାବ୍ଦରେ ପାଶ୍ଚାତ୍ୟଜୀବନୀ ସଂଗ୍ରହ ପର୍ଯ୍ୟାୟରେ ବାସୁଦେବ ମହାପାତ୍ରଙ୍କ 'ଏବ୍ରାହମ୍ ଲିଙ୍କନ୍', 'ମହାତ୍ମା ୱାସିଂଟନ' ପ୍ରଭୃତି ପୁସ୍ତକ ପ୍ରକାଶ କଲେ । ତେଣେ ଗୋପବନ୍ଧୁ ସାହିତ୍ୟ ମନ୍ଦିର କର୍ତ୍ତୃକ ଚନ୍ଦ୍ରଶେଖର ମିଶ୍ରଙ୍କ ଲିଖିତ କନଫୁସିଅସ ଏବଂ ପୁରୀ ଏମାର ମଠଙ୍କ ଦ୍ୱାରା ଶରତଚନ୍ଦ୍ର ମୁଖୋପାଧ୍ୟାୟଙ୍କ ଲିଖିତ "ରାମାନୁଜ" ପ୍ରକାଶିତ ହେଲା । ଚନ୍ଦ୍ରଶେଖର ମିଶ୍ର ମଧ୍ୟ ୧୯୩୮ ସାଲରେ "ସାମନ୍ତ ଚନ୍ଦ୍ରଶେଖର" ପୁସ୍ତକ ପ୍ରକାଶ କଲେ । ୧୯୩୦ ସାଲରେ କୃଷ୍ଣଚନ୍ଦ୍ର ସେନଗୁପ୍ତ "ଆଦର୍ଶ ପୁରୁଷ ବ ସାଧୁ ପ୍ୟାରୀମୋହନ" ରଚନା କରି ପ୍ରଚାର କଲେ । ସତ୍ୟବାଦୀ ପ୍ରେସରୁ ୧୯୩୬ ସାଲରେ 'ସାଧୁଚରିତମାଳା' ପ୍ରକାଶିତ ହେଲା । ଏହାର ଲେଖକ ଥିଲେ ବାଙ୍କନିଧି ପଟ୍ଟନାୟକ ଏବଂ କୁଞ୍ଜବିହାରୀ ମହାନ୍ତି । ଏ ଗ୍ରନ୍ଥରେ ଚୈତନ୍ୟଦେବ, ଶଙ୍କରାଚାର୍ଯ୍ୟ, ନାନକ, ବୁଦ୍ଧଦେବ, ରାମାନୁଜ ପ୍ରଭୃତି ୨୫

ଜଣଙ୍କ ଜୀବନୀ ସ୍ଥାନ ପାଇଛି । ତତ୍‌କାଳୀନ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର ୧୯୩୦ ସାଲରେ ଶିବ ପ୍ରସାଦ ଦାସଙ୍କ ଲିଖିତ 'ରାଜସ୍ଥାନ' ଇତିହାସ ବ୍ୟଞ୍ଜକ କେତେକ ପୁସ୍ତକ ପ୍ରକାଶ କଲେ । ଏଥିରେ ମଧ୍ୟଯୁଗୀୟ ବହୁ ବୀରପୁରୁଷମାନଙ୍କର ଜୀବନୀ ଲିଖିତ ହୋଇଥିଲା । ୧୯୩୮ ସାଲରେ ବହୁ ପୂର୍ବରୁ ବାଇକୋଳି ମହାପାତ୍ର 'କବିଜୀବନୀ' ନାମରେ ଏକ ପୁସ୍ତକ ଲେଖିଥିଲେ । ଏଥିରେ ସଂସ୍କୃତ ସାହିତ୍ୟର ବିଶିଷ୍ଟ ରଥୀ ବାଲ୍ମୀକି, ବେଦବ୍ୟାସ, କାଳିଦାସ, ବାଣଭଟ୍ଟ, ଭବଭୂତି, ରାଜଶେଖର, ମାଘ, ଶ୍ରୀହର୍ଷ, ଜୟଦେବ, ବିଶ୍ୱନାଥ କବିରାଜ ପ୍ରଭୃତଙ୍କର ଜୀବନୀ ସ୍ଥାନ ପାଇଥିଲା ।

ମୋଟ ଉପରେ ଏହି କାଳରେ ଜୀବନୀ ସାହିତ୍ୟ ବହୁ ଦିଗରେ ବିଭକ୍ତ ହୋଇ ଯାଇଥିଲା । ସାହିତ୍ୟିକ ବ୍ୟକ୍ତିତ୍ୱ, ଐତିହାସିକ ପୁରୁଷ, ଆଧ୍ୟାତ୍ମିକ ସାଧକ, ପୌରାଣିକ ଚରିତ, ବୈଜ୍ଞାନିକ ସଂସ୍କାରକ, ଦେଶନେତା ପ୍ରଭୃତି ବିଭିନ୍ନ ବିଭାଗରେ ଦେଶୀୟ ଓ ବିଦେଶୀୟ ବ୍ୟକ୍ତିଙ୍କର ଜୀବନଚରିତ ଲିଖିତ ହୋଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲା ।

ଅବଶ୍ୟ କେତେକ ଜୀବନଚରିତ ଅତିରିକ୍ତ ଆଦର୍ଶ ପ୍ରୀତିର ଅନୁରୋଧରେ କଳ୍ପନା ବିଳାସିତା ଏବଂ ଅଲୌକିକତାକୁ ପ୍ରଶ୍ରୟ ଦେଇଥିଲେ । ଯେପରି ବ୍ରଜବନ୍ଧୁ ଦାସଙ୍କ ଲିଖିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଆଲୋଚ୍ୟ । ୧୯୩୬ ସାଲରେ ଏହାର ପୁନର୍ମୁଦ୍ରଣ ହୋଇଥିଲା । ସେଥିରେ ଅଛି—"ଗର୍ଭାବସ୍ଥାରେ ବିଦ୍ୟାସାଗରଙ୍କ ମା ଭଗବତୀ ଉନ୍ମାଦ ରୋଗରେ ପୀଡ଼ିତାଥିବାରୁ ଜଣେ ବିଖ୍ୟାତ ପଣ୍ଡିତ ଭବାନନ୍ଦ ଶିରୋମଣି ଭଟ୍ଟାଚାର୍ଯ୍ୟ ଭବିଷ୍ୟତ ବାଣୀ କଲେ । ଏହାଙ୍କର ରୋଗନାହିଁ । ଈଶ୍ୱରାନୁଗୃହୀତ କୌଣସି ମହାପୁରୁଷ ଏହାଙ୍କ ଗର୍ଭରେ ଜନ୍ମଗ୍ରହଣ କରିବେ । ତାଙ୍କର ତେଜୋରାଶି ସହ୍ୟକରି ନ ପାରି ସେ ଏପରି ଅବସ୍ଥା ଭୋଗ କରୁ ଅଛନ୍ତି ।"

ତେବେ ଅଲୌକିକତାର ଆଶ୍ରୟ ସତ୍ତ୍ୱେ ବିଦ୍ୟାସାଗରଙ୍କ ଚାରିତ୍ରିକ ମହତ୍ତ୍ୱ ସମ୍ପର୍କରେ ଚମତ୍କାର କଥା ଗୁଡ଼ିଏ କୁହାଯାଇଥିଲା । ନ ଅର୍ଥ ଗୌରବ, ନ ପଦଗୌରବ, କୌଣସି ପ୍ରଲୋଭନ ଈଶ୍ୱରଚନ୍ଦ୍ରଙ୍କୁ ସ୍ପର୍ଶ କରି ପାରି ନଥିଲା । ତାଙ୍କୁ କଠିନ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ସବୁଦିନ ଜୟ ତାଙ୍କର । ସେ ପଙ୍କରେ ଥାଇ ପଙ୍କଲିପ୍ତ ହୋଇ ନଥିଲେ—ଗୃହକର୍ମ କଲେ ସୁଦ୍ଧା ଗୃହକର୍ମ ମୋହ ତାଙ୍କୁ ବଶ କରି ପାରି ନଥିଲା । ସେ ସଂସାରରେ ଥାଇ ବୀର ସାଧକ ପରି ସମସ୍ତ ମାୟା ମମତା ଏଡ଼ି ପାରିଥିଲେ, ସେ ସଂସାରରେ ଥାଇ ସଦା ଉଦାସୀନ ଥିଲେ ।

(ଈଶ୍ୱରଚନ୍ଦ୍ର ବିଦ୍ୟାସାଗର—ବ୍ରଜବନ୍ଧୁ ଦାସ—୧୯୩୬—ପୃ ୧୦୯)

'ନେପୋଲିୟନ' ଜୀବନଚରିତର ଲେଖକ ପଦ୍ମଚରଣ ପଟ୍ଟନାୟକ । ଭୂମିକାରେ ଲେଖକ ଲେଖିଥିଲେ—"କେଉଁ କେଉଁ ଗୁଣର ସମାବେଶରେ ଅତି ସାମାନ୍ୟ

ଅବସ୍ଥାରୁ ମନୁଷ୍ୟ ଦେଶର ଓ ସମାଜର ନେତୃତ୍ୱ ପଦ ଗ୍ରହଣ କରିପାରେ. ମହାବୀର ନେପୋଲିୟନଙ୍କର ମହାସ୍ମରଣୀ କୀର୍ତ୍ତି କାହାଣୀ ତାହା ଉଜ୍ଜ୍ୱଳରୂପେ ପ୍ରମାଣ କରୁଅଛୁ । ନେପୋଲିଅନଙ୍କ ଚରିତ୍ରର ସର୍ବଶ୍ରେଷ୍ଠ ଉପଦେଶ— ଉଚ୍ଚାକାଂକ୍ଷା, ଦୃଢ଼ମନ ଓ କଠୋର ଅଧ୍ୟବସାୟ । ଏହି ତିନି ଶକ୍ତି ଏକତ୍ରିତ ହେଲେ ମନୁଷ୍ୟନ୍ତୁ ବିକଶିତ ହୁଏ, ଧରଣୀର ବିସ୍ତୀର୍ଣ୍ଣ ବକ୍ଷରେ ମନୁଷ୍ୟ ତାହାର ବିଶାଳ କର୍ମକ୍ଷେତ୍ର ପ୍ରସାରିତ କରେ ।"

ନେପୋଲିଅନଙ୍କ ସମ୍ପର୍କରେ ଲେଖକଙ୍କର ଅଭିମତ ହେଲା—"ସେ ଯେଉଁ କାର୍ଯ୍ୟ କରିବାକୁ ବସୁଥିଲେ, ତାକୁ ଶେଷ ନ କରି ଛାଡ଼ୁ ନଥିଲେ । ସେଥିପାଇଁ ଯେତେ କଷ୍ଟ ସହିବାକୁ ପଡୁ ପଛକେ, ସେ ସେଥିପ୍ରତି ଦୃଷ୍ଟି ଦେଉ ନଥିଲେ । ଏପରିକି ଅଭୀଷ୍ଟ ସାଧନ ସକାଶେ ଆହାର ନିଦ୍ରା ପର୍ଯ୍ୟନ୍ତ ଛାଡ଼ିବାକୁ ହେଲେ ମଧ୍ୟ ସେ ତାହା କରିବାକୁ ବିମୁଖ ହେଉ ନଥିଲେ । ଇଚ୍ଛା କଲେ କଣ ହଠାତ୍ ବଡ଼ଲୋକ ହୋଇ ପାରିବ ? ନେପୋଲିଅନଙ୍କ ପରି କଠୋର ସାଧନା ଆବଶ୍ୟକ । ମନର ବଳ ଆବଶ୍ୟକ । ତେବେ ଯାଇ ସିଦ୍ଧି କରାୟତ୍ତ ହେବ । ଏହି ସବୁ ଗୁଣ ଥିଲା ବୋଲି ସେ ସାଧାରଣ ବ୍ୟକ୍ତି ଗୃହରେ ଜନ୍ମଗ୍ରହଣ କରି ଆପଣାର ଅଦ୍ଭୁତ ଶକ୍ତି ଦ୍ୱାରା ସମଗ୍ର ଜଗତକୁ ସ୍ତବ୍ଧ କରିବାକୁ ସମର୍ଥ ହୋଇଥିଲେ ।"

(ନେପୋଲିଅନ —ପଦ୍ମଚରଣ ପଟ୍ଟନାୟକ —୧୯୩୮ — ପୃ ୧୧୬ )

ପୁନଶ୍ଚ—

"ଯଦି ସେ ଶରୀରପାତ କରି ଏତେ ଦିନରାତି ପରିଶ୍ରମ କରୁଥିଲେ, ତାହାର ମୂଳରେ କଣ ଥିଲା ? ଆତ୍ମସୁଖ ସାଧନ କଣ ତାଙ୍କର ଏତିକ ପରିଶ୍ରମର ଉଦ୍ଦେଶ୍ୟ ଥିଲା ? ତାହାତ ନୁହେଁ — ସେ ତ ସହଜ ସନ୍ତୁଷ୍ଟ ଥିଲେ ତାଙ୍କର ଅଭାବ ଅତି ଅଳ୍ପ ଥିଲା; ସୁଖ ସମୃଦ୍ଧିର ବାସନା ମଧ୍ୟ ତାଙ୍କର ପ୍ରବଳ ନଥିଲା । ଧନେ ଜାକ୍‌ଜମକରେ ରହିବାକୁ ବା ବିଳାସରେ ଗଡ଼ିବାକୁ ସେ କେବେ ହେଲେ ମନରେ ସ୍ଥାନ ଦେଇ ନଥିଲେ ।

ତାଙ୍କର ଅବିଶ୍ରାନ୍ତ ପରିଶ୍ରମ ଥିଲା ଫ୍ରାନ୍‌ସ ଦେଶର ମଙ୍ଗଳ ଲାଗି, ଫ୍ରାନ୍‌ସର ସର୍ବତୋମୁଖୀ ଉନ୍ନତି ବିଧାନ କରିବା ତାଙ୍କର ଚିରପୋଷିତ ପ୍ରାଣପ୍ରିୟ ଆକାଂକ୍ଷା ଥିଲା"

( ନେପୋଲିଅନ ପୃ ୭୩ - ୭୪ )

ପରାଧୀନ ଜାତି ପକ୍ଷରେ ଏପରି ଜୀବନଚରିତର ଯଥେଷ୍ଟ ମୂଲ୍ୟ ଥିଲା । ଏକ ଅବସାଦଗ୍ରସ୍ତ ମୁହୂର୍ତ୍ତରେ ବୀରଜୀବନଚରିତ ଜାତିକୁ ଉନ୍ମାଦିତ ଏବଂ ଉତ୍ସାହିତ କରିଥାଏ । ଅଭିବୋଧ ଅନୁସାରେ ସମାଜର ଲୋକେ ନୂତନ ଦିଗନ୍ତର ସନ୍ଧାନ ପାଆନ୍ତି । ପ୍ରଗତିର ପରିପନ୍ଥୀ କାରଣଗୁଡ଼ିକ ଦୂରୀଭୂତ ହୋଇଯାଏ । ଖ୍ରୀଷ୍ଟ ୧୯୩୭ ସାଲରେ ରଚିତ ଜଣେ ଭାରତୀୟ ବ୍ୟବସାୟୀଙ୍କ ଜୀବନୀ ପ୍ରକାଶିତ ହେଲାବେଳେ ସ୍ୱନାମଧନ୍ୟ ଦେଶସେବକ ଲକ୍ଷ୍ମୀନାରାୟଣ ସାହୁ ଭୂମିକାରେ ଯାହା ଲେଖିଥିଲେ ତାହା ଏଠାରେ ଉଦ୍ଧାର କରାଯାଇପାରେ—

"ବିଜୟୀ, ବ୍ୟବସାୟୀ ଅଗ୍ରଣୀ ଜାମସେଦଜୀ ଟାଟାଙ୍କ ଜୀବନୀ ଆମ୍ଭମାନଙ୍କୁ ଉତ୍ସାହ ଦେବ, ସାହସ ଦେବ, ଧୈର୍ଯ୍ୟ ଦେବ । ତାଙ୍କର ଏହି ଜୀବନୀ ପାଠ କରି ତାଙ୍କର ଆଧ୍ୟାତ୍ମିକ ସାହଚର୍ଯ୍ୟ ଲାଭ କରିପାରିଲେ ଉତ୍କଳ ଜନନୀ ଉଦ୍ଧାର ପାଇବ, ଉତ୍କଳ ଭୁବନ ହସି ଉଠିବ, ସୁନ୍ଦର ହେବ, ସୁଷମାରେ ପୂର୍ଣ୍ଣ ହୋଇଯିବ । ତାଙ୍କର ପରଲୋକଗତ ଆତ୍ମାର ଆଶୀର୍ବାଦରେ ଉତ୍କଳୀୟଙ୍କର ମାର୍ଗ କ୍ରମଶଃ ନିଷ୍କଣ୍ଟକ ହେବ । ଜାମସେଦଜୀ ଟାଟା ନବୀନ ଉତ୍କଳୀୟଙ୍କର ମାର୍ଗ ପ୍ରଦର୍ଶକ ହୁଅନ୍ତୁ ।"

୧୯୨୦ ସାଲ ପରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ପ୍ରବଳ ଆକାର ଧାରଣ କରିଥିଲେ ହେଁ ୧୯୩୦ ବେଳକୁ ତାହା କ୍ରମଶଃ ଅଧିକ ପ୍ରଭାବଶାଳୀ ହେଉଥିଲା । ବିଭିନ୍ନ ଆନ୍ଦୋଳନ ଜରିଆରେ ଦେଶରେ ସ୍ୱାଧୀନତାର ମନ୍ତ୍ର ପ୍ରଚାରିତ ହେଉଥାଏ । ତେଣୁ ଓଡ଼ିଶାରେ ମଧ୍ୟ ଜୀବନୀ ଲେଖକଗଣ ଏହି ସୁଯୋଗରେ ଅନ୍ୟ ଦେଶର ବିପ୍ଳବୀ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜୀବନୀ ପ୍ରଚାର କରିବାକୁ ମନସ୍ଥ କରିଥିବେ । ଏହି ସମୟରେ ସୁଲେଖକ ଗୋଦାବରୀଶ ମହାପାତ୍ର 'ତରୁଣ ଉତ୍କଳ ଗ୍ରନ୍ଥମାଳା"ର ପ୍ରଥମ ଅବଦାନ ରୂପେ ଇଟାଲୀ ଦେଶର ମହାନ ବିପ୍ଳବୀ "ମ୍ୟାଟ୍‌ସିନ୍"ଙ୍କର ଜୀବନୀ ରଚନା କରିଥିଲେ । ସେ ଇଟାଲୀର ସ୍ୱାଧୀନତା ପାଇଁ ଯେଉଁପରି ପ୍ରାଣପାତ କରିଥିଲେ, ଭାରତରେ ମଧ୍ୟ ସେହିପରି ଆତ୍ମତ୍ୟାଗର ଦରକାର ପଡ଼ିଥିଲା । ସେ ଥିଲେ ଭବିଷ୍ୟତ ବିପ୍ଳବର ଅଗ୍ରଦୂତ । ମ୍ୟାଟ୍‌ସିନ୍‌ଙ୍କର ଇଟାଲୀବାସୀଙ୍କ ଉଦ୍ଦେଶ୍ୟରେ ମନ୍ତ୍ରଥିଲା—'ଯେତେବେଳେ ତୁମ୍ଭେମାନେ ପରସ୍ପରକୁ ଭାଇ ଭାଇ ଭାବି ସ୍ନେହ କରିବାକୁ ଶିଖିବ, ନିଜ ନିଜ ଭିତରେ ଭାଇଭାଇ ପରି ବ୍ୟବହାର କରିବ । ସମସ୍ତେ ସମସ୍ତଙ୍କ ମଙ୍ଗଳ ଭିତରେ ନିଜ ମଙ୍ଗଳ ଖୋଜି ବସିବ, ପରଜୀବନକୁ ନିଜ ଜୀବନ ବୋଲି ମନେ କରିବ, ପରାର୍ଥକୁ ନିଜସ୍ୱାର୍ଥ ବୋଲି ଭାବିପାରିବ ଏବଂ ଯେତେବେଳେ ଏହି ବିଶାଳ ବିଶ୍ୱପରିବାର ପାଇଁ ଆତ୍ମବିସର୍ଜନ ଲାଗି ପ୍ରସ୍ତୁତ ହେବ, ପୁଣି ଏହି ବିଶ୍ୱ ପରିବାରର ପ୍ରତ୍ୟେକ ତୁମ ଲାଗି, ଆତ୍ମତ୍ୟାଗ ଲାଗି ପ୍ରସ୍ତୁତ ରହିବେ । ସେତେବେଳରେ ସୂର୍ଯ୍ୟୋଦୟର ଦିଗନ୍ତ ପରି ଜନ୍ମିଥିବା କୁହେଳିକା ଲୋପ ପାଇ ଯାଉଛି ଏହି ବିଶ୍ୱମାନବ ସମାଜର ଅଧିକାଂଶ ଅଶାନ୍ତି, ଅନ୍ୟାୟ, ଅତ୍ୟାଚାରର ଲୋପ ହେବ ।"

(ମ୍ୟାଟ୍‌ସିନ୍—ଗୋଦାବରୀଶ ମହାପାତ୍ର—୧୯୨୮—ପୃ-୩୬)

ସ୍ୱାଧୀନତା ପରେ ଓଡ଼ିଶାର ଲେଖକ ଓ ପ୍ରକାଶକଗଣ ଜୀବନଚରିତ ପ୍ରତି ଅଧିକ ଆଗ୍ରହୀ ହୋଇଥିଲେ । ରାଜନୈତିକ ବୀରପୁରୁଷମାନଙ୍କ ସମ୍ପର୍କରେ ଅଧିକ ଦୃଷ୍ଟି ପ୍ରସାରିତ ହେଲା । ମହାତ୍ମାଗାନ୍ଧୀ, ଜହରଲାଲ ନେହେରୁ, ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆ, ମି. ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ ପ୍ରଭୃତିଙ୍କ ସମ୍ପର୍କରେ ବିଶ୍ଳେଷଣାତ୍ମକ ଜୀବନୀ ଲେଖାଗଲା । ଅନେକ ଲେଖକ ଭାରତୀୟ ନେତାମାନଙ୍କର ଜୀବନୀ-ଗ୍ରନ୍ଥ ଏବଂ ପାଶ୍ଚାତ୍ୟ ମନୀଷୀମାନଙ୍କର ଜୀବନଚରିତ ଅନୁବାଦ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାକୁ ଲାଗିଲେ । ସ୍ୱାଧୀନତା ପୂର୍ବରୁ ଦୁର୍ଗାଚରଣ ରାୟଙ୍କ ଲିଖିତ "ରାଧାନାଥ ଜୀବନୀ"

ଏକ ଉଲ୍ଲେଖଯୋଗ୍ୟ ଜୀବନଚରିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୭୦ରେ ଏହି ବିଶାଳକାୟ ଜୀବନଚରିତ ପ୍ରକାଶିତ ହୋଇଥିଲା । ଓଡ଼ିଆ ସାହିତ୍ୟରେ ଏପରି ଜୀବନଚରିତ କ୍ୱଚିତ ଦେଖିବାକୁ ମିଳିଥାଏ । ଦୁଃଖର କଥା ଓଡ଼ିଶାର ପ୍ରକାଶକଗଣ ଗ୍ରନ୍ଥ ଏବଂ ବଡ଼ ଜୀବନଚରିତ ପ୍ରକାଶ କରିବା ପାଇଁ ଆଉ କୁଣ୍ଠିତ ହୋଇ ନାହାନ୍ତି । ମି. ଦାସଙ୍କ ଜୀବନୀ ସମ୍ପର୍କରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ "ଦେଶପ୍ରାଣ ମଧୁସୂଦନ", ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପର୍କରେ ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀଙ୍କ ଲିଖିତ "ହେ ସାଥୀ, ହେ ସାରଥୀ" ପୁସ୍ତକଦ୍ୱୟ ଏଠାରେ ଉଲ୍ଲେଖଯୋଗ୍ୟ । ଏଥିରେ କେବଳ ସେହି ବ୍ୟକ୍ତିଦ୍ୱୟଙ୍କ ଜୀବନକାହାଣୀ ଇତିହାସ ପରି ବର୍ଣ୍ଣିତ ହୋଇନାହିଁ । ଲେଖକଦ୍ୱୟ ବହୁ ଅନୁସନ୍ଧାନ କରି ଗବେଷଣା ଭିତ୍ତିରେ ଦୁଇଟି ମହାନ ବ୍ୟକ୍ତିତ୍ୱ ସମ୍ପର୍କରେ ଅନେକ ମୂଲ୍ୟବାନ ତଥ୍ୟ ପରିବେଷଣ କରିଅଛନ୍ତି । ମହତ୍ ବ୍ୟକ୍ତିମାନଙ୍କର ଜୀବନଚରିତ ଯେ ଗଭୀର ଗବେଷଣାସାପେକ୍ଷ ଏବଂ ଅନୁଶୀଳନର ଅପେକ୍ଷା ରଖେ, ତାହା ଏହି ଦୁଇଟି ପୁସ୍ତକ ଅଧ୍ୟୟନ ନକଲେ ଅନୁଭବ କରାଯାଇ ପାରିବ ନାହିଁ । ସେହିପରି ଏହି ପ୍ରସଙ୍ଗରେ ଓଡ଼ିଆରେ ଅନୂଦିତ କେତେକ ରାଜନୈତିକ ଜୀବନଚରିତ ପାଠ କଲେ ଅଧିକ ହୃଦ୍‌ବୋଧ ହୋଇ ପାରିବ । ତେବେ ଏ କ୍ଷେତ୍ରରେ ଶ୍ରୀସଚ୍ଚିଦାନନ୍ଦ କାନୁନଗୋ, ଗୋପବନ୍ଧୁ ଚୌଧୁରୀ, ସୁରେନ୍ଦ୍ର ଦ୍ୱିବେଦୀ ପ୍ରଭୃତିଙ୍କର ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ ।

ଗତ କେତେବର୍ଷ ମଧ୍ୟରେ 'ପୃଥିବୀର ଅମର ମନୀଷୀ', 'ସାଧକ ଜୀବନୀମାଳା', 'ଜନନାୟକ', 'ପାଶ୍ଚାତ୍ୟ ଜୀବନୀ ସଂଗ୍ରହ', 'ବୀର ଜୀବନୀମାଳା', 'ଭାରତ ମହିଳା ସିରିଜ', 'ନୋବେଲ ପ୍ରାଇଜ ସିରିଜ', 'ଆର୍ଯ୍ୟଋଷି ଗ୍ରନ୍ଥମାଳା', 'ଦୀପକମହଲ ଗ୍ରନ୍ଥମାଳା', 'ବୈଜ୍ଞାନିକ ଜୀବନୀ', 'ଜାତୀୟ ଜୀବନଚରିତମାଳା' ପ୍ରଭୃତି ପର୍ଯ୍ୟାୟରେ ଶିଶୁ ଓ ବାଳକବାଳିକା ଉପଯୋଗୀ ଅସଂଖ୍ୟ ଜୀବନୀ ଓଡ଼ିଆରେ ଲେଖାଯାଇଛି । ବିବେକାନନ୍ଦ ଶତବାର୍ଷିକୀର ଅନୁଷ୍ଠାନ, ଅରବିନ୍ଦ ଅନୁଷ୍ଠାନ, ସତ୍ୟସାଇ ଅନୁଷ୍ଠାନ ଓ ଅନ୍ୟ କେତେକ ଆଧ୍ୟାତ୍ମିକ କାର୍ଯ୍ୟ ପରିଚାଳନା ସମିତି ନିଜ ନିଜ ଅନୁଷ୍ଠାନର ଆରାଧ୍ୟ ମହାପୁରୁଷମାନଙ୍କର ଜୀବନୀ ପ୍ରଚାର କରିବାରେ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ସେହିପରି ଖ୍ରୀଷ୍ଟୀୟ ପ୍ରଚାର ଅନୁଷ୍ଠାନ ମଧ୍ୟ ଯୀଶୁଖ୍ରୀଷ୍ଟ ଏବଂ ସେହି ଧର୍ମ ସମ୍ପର୍କୀୟ ଜୀବନୀ ପ୍ରଚାର କରିଆସିଅଛନ୍ତି ।

ପ୍ରସଙ୍ଗକ୍ରମେ ଓଡ଼ିଆ ସାହିତ୍ୟରେ ଚରିତ ଉପନ୍ୟାସ କଥା ଆଲୋଚନା କରାଯାଇପାରେ । ସୁରେନ୍ଦ୍ର ମହାନ୍ତି "ଶତାବ୍ଦୀର ସୂର୍ଯ୍ୟ" ପୁସ୍ତକରେ ମିଃ ଦାସଙ୍କ ଜୀବନଚରିତକୁ ଉପନ୍ୟାସ ଶୈଳୀରେ ଲେଖିଯାଇଅଛନ୍ତି । ଓଡ଼ିଆ ଜୀବନୀ ସାହିତ୍ୟରେ ଏହା ଏକ ଅନବଦ୍ୟ ସୃଷ୍ଟି । ଚରିତୋପନ୍ୟାସ ହିସାବରେ ଏହା ସର୍ବପ୍ରଥମ ଏବଂ ସାର୍ଥକ ରଚନା । ଏ ପୁସ୍ତକ ପ୍ରକାଶିତ ହେବାର କିଛିକାଳ ପରେ ଚକ୍ରଧର ମହାପାତ୍ର "କୁନ୍ତଳାକୁମାରୀ ଜୀବନଚରିତ" ପ୍ରକାଶ କଲେ । ଏହି ଜୀବନଚରିତ ଅନ୍ୟାନ୍ୟ ଜୀବନଚରିତ ଅପେକ୍ଷା କିଞ୍ଚିତ ସ୍ୱତନ୍ତ୍ର ହୋଇଥିଲେ ହେଁ ଚରିତ ଉପନ୍ୟାସ ବୋଲି କହିହେବ ନାହିଁ । ତେବେ ଲାଲବାହାଦୁରଙ୍କର ଜୀବନୀ ଉପରେ ଆଧାରିତ "ମୋ ପଥ ମୋ ଦେବତା" ଏକ ଚମତ୍କାର ଚରିତୋପନ୍ୟାସ

(ଅବଶ୍ୟ ହିନ୍ଦୀରୁ ଅନୁବାଦ) । ଏହାର ଓଡ଼ିଆ ଭାଷାନ୍ତର କରିଛନ୍ତି ନୀଳମଣି ମିଶ୍ର । ଏହା ଏକ ମୌଳିକ ଉପନ୍ୟାସ ପରିବୋଧ ହୋଇଥାଏ ।

ଓଡ଼ିଆ ସାହିତ୍ୟରେ କେତେଜଣ ବିଖ୍ୟାତ ଆତ୍ମଚରିତର ଅନୁବାଦକଙ୍କ ମଧ୍ୟରେ ସୁରେନ୍ଦ୍ରନାଥ ଦ୍ୱିବେଦୀ, ସଚ୍ଚିଦାନନ୍ଦ କାନୁନଗୋ, ଚିତ୍ତରଞ୍ଜନ ଦାସ, ଗୋପବନ୍ଧୁ ଚୌଧୁରୀ, ଗୋଲକବିହାରୀ ଧଳ ପ୍ରଭୃତି ପ୍ରଧାନ । ସ୍ୱାଧୀନତା ପରେ ଜୀବନୀସାହିତ୍ୟକୁ ଯେଉଁମାନେ ସମୃଦ୍ଧ କରିଛନ୍ତି ସେମାନଙ୍କ ମଧ୍ୟରେ ବିନୋଦ କାନୁନଗୋ, ସୂର୍ଯ୍ୟନାରାୟଣ ଦାସ, ନବକିଶୋର ଦାସ, ବୀରକିଶୋର ଦାସ, ବାମାଚରଣ ମିତ୍ର, ଗୋଚଗୃନ୍ଦ ମିଶ୍ର, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଚକ୍ରଧର ମହାପାତ୍ର, ଗୋବିନ୍ଦ ମହାନ୍ତି, ଗୋପାଳଚନ୍ଦ୍ର ମିଶ୍ର, ଜଗନ୍ନାଥ ମହାପାତ୍ର, ନିତ୍ୟାନନ୍ଦ ଶତପଥୀ, ବିଚିତ୍ରାନନ୍ଦ ମହାନ୍ତି, ଶ୍ରୀଧର ଦାସ, ଚନ୍ଦ୍ରମଣି ମହାପାତ୍ର, ସରଳା ଦେବୀ, ଦେବକାନ୍ତ ମିଶ୍ର, ଦେବେନ୍ଦ୍ର ଶତପଥୀ, ଭବଗ୍ରାହୀ ମିଶ୍ର, ନରହରି ସ୍ୱାଇଁ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଚିନ୍ତାମଣି ଆଚାର୍ଯ୍ୟ, ଜଗନ୍ନାଥ ନନ୍ଦ, ଗୋପୀନାଥ ମହାନ୍ତି, ରାମଚନ୍ଦ୍ର ପଣ୍ଡା, ଚିନ୍ତାମଣି ପାଣିଗ୍ରାହୀ, ରଜନୀକାନ୍ତ ଦାସ, ମାୟାଧର ମାନସିଂହ ପ୍ରଭୃତି ପ୍ରଧାନ ।

ଏହି ଦୀର୍ଘକାଳ ମଧ୍ୟରେ ଜୀବନୀ ସାହିତ୍ୟରେ ଅସଂଖ୍ୟ ପୌରାଣିକ ଜୀବନୀ, ଐତିହାସିକ ଯୁଗର ମହାନ୍ ବ୍ୟକ୍ତିବିଗଣ ଯେପରି ସ୍ଥାନ ପାଇଛନ୍ତି, ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ବହୁ ରାଜନୈତିକ ବ୍ୟକ୍ତିବି, ସାହିତ୍ୟିକ ପ୍ରତିଭା ଏବଂ ଆଧ୍ୟାତ୍ମିକ ନେତା ଓ ମହାପୁରୁଷ ମଧ୍ୟ ସ୍ଥାନ ଲାଭ କରିଛନ୍ତି । ମହାତ୍ମାଗାନ୍ଧୀ, ଜବାହାରଲାଲ ନେହରୁ, ବିନୋବା ଭାବେଙ୍କ ପରି ମହାନ୍ ବ୍ୟକ୍ତିବିଙ୍କ ସମ୍ପର୍କରେ ଏକାଧିକ ଜୀବନକାହାଣୀ ଲିପିବଦ୍ଧ ହୋଇଅଛି । ରାଧାନାଥଙ୍କ ଜୀବନୀରେ ଯେପରି ତାଙ୍କର ପତ୍ରାବଳୀ ସଂଗ୍ରହ କରାଯାଇ ତାଙ୍କର ଜୀବନଚରିତର ମୂଲ୍ୟବୃଦ୍ଧି କରିଥିଲା, ପରବର୍ତ୍ତୀ କାଳରେ ଗଙ୍ଗାଧରଙ୍କ ପତ୍ରାବଳୀ ଏବଂ ଫକୀରମୋହନଙ୍କ କେତେକ ପତ୍ର ସଂଗୃହୀତ ହୋଇ ପ୍ରକାଶ ପାଇବାଦ୍ୱାରା ସେହି ବ୍ୟକ୍ତିମାନଙ୍କ ସମ୍ପର୍କରେ ନୂତନ ଦିଗ୍‌ଦର୍ଶନ ମିଳିଲା । ଏ ଯୁଗ ରାଜନୀତି ଦ୍ୱାରା ଅଧିକ ପ୍ରଭାବିତ ଓ ଅନୁପ୍ରାଣିତ । ତେଣୁ ରାଜନୈତିକ ଆନ୍ଦୋଳନରେ ଯେଉଁମାନେ ଅତ୍ୟନ୍ତ ପ୍ରଭାବଶାଳୀ ହୋଇଅଛନ୍ତି, ସେମାନଙ୍କ ଜୀବନକାହାଣୀ ଲିପିବଦ୍ଧ କରିବାପାଇଁ ଲେଖକଗଣ ତୁରନ୍ତ ବ୍ୟଗ୍ର ହୋଇପଡ଼ିଛନ୍ତି । ଏହି ଯୁଗୋପଯୋଗୀ ଅନୁଚିନ୍ତାର ଅଭିବ୍ୟକ୍ତି ଘଟିଛି ଜୀବନଚରିତର ଲେଖକ ସୂର୍ଯ୍ୟନାରାୟଣ ଦାସ, ବୀରକିଶୋର ଦାସ, ବିନୋଦ କାନୁନଗୋ ପ୍ରଭୃତିଙ୍କ ଲେଖା ମାଧ୍ୟମରେ । ସାମ୍ପ୍ରତିକ କାଳର ରାଜନୀତିକ ବୀରପୁରୁଷମାନଙ୍କୁ ଏହି ଲେଖକଗଣ ଆକର୍ଷଣୀୟ ଶୈଳୀରେ ପ୍ରଚାର କରି ଯାଇଅଛନ୍ତି । ଏହି ପ୍ରସଙ୍ଗରେ ସୂର୍ଯ୍ୟନାରାୟଣଙ୍କ ଦେଶପ୍ରାଣ ମଧୁସୂଦନ, ଯୁଗନେତ୍ରୀ ଇନ୍ଦିରା, ଯୁଗଜନକ ମହାତ୍ମାଗାନ୍ଧୀ, ବୀରକିଶୋର ଦାସଙ୍କ କର୍ମଯୋଗୀ ରାଜେନ୍ଦ୍ର ପ୍ରସାଦ, ରାଷ୍ଟ୍ରଗୁରୁ ରାଧାକୃଷ୍ଣନ, ବିନୋଦ କାନୁନ୍‌ଗୋଙ୍କର ଆଚାର୍ଯ୍ୟ ହରିହର, ଜୟପ୍ରକାଶ ନାରାୟଣ ପ୍ରଭୃତି ଗ୍ରହଣ କରାଯାଇପାରେ । ଏଥିରେ କେବଳ ଜୀବନଚରିତର ଟୀକା ଟିପ୍ପଣୀ ନାହିଁ, ଅଛି ସେହି ମହାମାନବୀୟ ଜୀବନର ଅନେକ ଉପାଦେୟ ଘଟଣାବଳୀ ଯାହା ଉପନ୍ୟାସ ପରି ସ୍ୱାଦ୍ୟ ଏବଂ

ପ୍ରଭାବଶାଳୀ । ବିଜ୍ଞାନଯୁଗର ପ୍ରଭାବ ଆଜି ସମାଜର ବିଭିନ୍ନ ସ୍ତରରେ ଅନସ୍ୱୀକାର୍ଯ୍ୟ । ତେଣୁ ପୃଥିବୀର ତଥା ଭାରତର ବହୁ ବୈଜ୍ଞାନିକଙ୍କର ଜୀବନକାହାଣୀ ଓଡ଼ିଆରେ ସୁପ୍ରଚଳିତ । ଭାରତୀୟ "ବିଜ୍ଞାନ ଓ ବୈଜ୍ଞାନିକ" ପର୍ଯ୍ୟାୟରେ ଦେବକାନ୍ତ ମିଶ୍ର ପ୍ରାଚୀନ ଭାରତର ଆର୍ଯ୍ୟଭଟ୍ଟ, ବରାହମିହିର, ଧନ୍ୱନ୍ତରୀ, ଜୀବକ, କଣାଦ, କପିଳଙ୍କଠାରୁ ଆଧୁନିକ ଭାରତର ଭାବା, ଭାଟନଗର, କୋଠାରୀ, ସରାଭାଇ, ରମଣ, ପ୍ରଫୁଲ୍ଲଚନ୍ଦ୍ର, ସାମନ୍ତ ଚନ୍ଦ୍ରଶେଖରଙ୍କ ପର୍ଯ୍ୟନ୍ତ ବହୁ ବୈଜ୍ଞାନିକଙ୍କର ଜୀବନକାହାଣୀ ଲିପିବଦ୍ଧ କରିଅଛନ୍ତି । ଜନଶକ୍ତି ପୁସ୍ତକାଳୟ ବୈଜ୍ଞାନିକ ସିରିଜ୍‌ରେ ପ୍ରାୟ ଅର୍ଦ୍ଧଶତାଧିକ ବୈଜ୍ଞାନିକଙ୍କର ଜୀବନୀ ପ୍ରକାଶ କରିଅଛନ୍ତି । ଉଦାହରଣ ସ୍ୱରୂପ ଏହି ସିରିଜରେ ଆଲଫ୍ରେଡ଼ ନୋବେଲ୍, ଆଇଜାକ ନିଉଟନ୍, ମ୍ୟାଡ଼ାମ କ୍ୟୁରୀ, ମାର୍କୋନି, ଆଲବର୍ଟ ଆଇନଷ୍ଟାଇନ୍, ଅମାସ୍ଏଡ଼ିସନ୍, ସି. ଭି. ରମଣ, ଲୁଇସ୍ ପାସ୍ତୁର, ଜଗଦୀଶ ଚନ୍ଦ୍ର ବୋଷ, ରୋନାଲ୍ଡ଼ ରସ, ଗ୍ଯାଲିସ, ଡାରଉଇନ୍, ଜୁଲିଏଟ୍ କ୍ୟୁରୀ, ଲୁଇସ୍ ବ୍ରେଲ, ଜେମସ ଓ୍ୟାଟ୍, ଏଡ୍‌ୱାର୍ଡ଼ ଜେନର, ଆଲେକଜାଣ୍ଡାର ଫ୍ଲେମିଂ, ମାଇକେଲ୍ ଫାରାଡ଼େ, ହୋମି ଜାହାଙ୍ଗୀର ଭାବା, ମେଘନାଦ ସାହା, ରିଚାର୍ଡ଼ ଅକ୍‌ରାଇଟ୍ ସତ୍ୟେନ ବୋଷ, ପ୍ରଫୁଲ୍ଲଚନ୍ଦ୍ର ରାୟ, ଖୁରାନା, ପଠାଣି ସାମନ୍ତ ପ୍ରଭୃତି ବହୁ ପୁଣ୍ୟଶ୍ଳୋକ ବ୍ୟକ୍ତିଙ୍କୁ ସ୍ମରଣ କରାଯାଇଅଛି । ଓଡ଼ିଆ ପାଠକଙ୍କୁ ଏହା ଏକ ଅପୂର୍ବ ସୁଯୋଗ କହିଲେ ଅତ୍ୟୁକ୍ତି ହେବନାହିଁ । ଭିନ୍ନ ଭିନ୍ନ ପ୍ରକାଶକ ନିଜର ସୁଯୋଗ ଅନୁକ୍ରମେ ଗତ କେତେବର୍ଷ ମଧ୍ୟରେ ବହୁ ଜୀବନ-କାହାଣୀ ପ୍ରକାଶ କରି ଓଡ଼ିଆ ସାହିତ୍ୟର ଅଭାବ ଦୂରୀକରଣରେ ବ୍ରତୀ ହୋଇଅଛନ୍ତି ।

ଓଡ଼ିଆ ସାହିତ୍ୟରେ ଅଧିକାଂଶ ଜୀବନଚରିତରେ କେବଳ ଆଦର୍ଶର ପରିପ୍ରଚାର ହୋଇଅଛି । ଅବଶ୍ୟ ଜୀବନଚରିତ ପାଠର ଉଦ୍ଦେଶ୍ୟ ହେଉଛି ଆଦର୍ଶ ଚରିତ୍ରଦ୍ୱାରା ଉଦ୍‌ବୁଦ୍ଧ ହେବା । କେତେକ କ୍ଷେତ୍ରରେ ଏହି ଆଦର୍ଶ ପ୍ରଚାରର ଅନୁରୋଧରେ ଅଲୌକିକତା ଓ ଅନ୍ଧବିଶ୍ୱାସକୁ ମଧ୍ୟ ପ୍ରଶ୍ରୟ ଦିଆଯିବା ସ୍ୱାଭାବିକ । ସେ ଯାହାହେଉ, ବର୍ତ୍ତମାନ ଓଡ଼ିଆ ଜୀବନଚରିତ ସମୃଦ୍ଧ ଏବଂ ବହୁଧା ବିଭକ୍ତ । ସମାଜର ବିଭିନ୍ନ ଶ୍ରେଣୀର ମହାନ୍ ବ୍ୟକ୍ତିଙ୍କ ସମ୍ପର୍କରେ ଓଡ଼ିଆସାହିତ୍ୟର ଜୀବନଚରିତ ବିଭାଗ ପଛରେ ପଡ଼ିନାହିଁ ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ତେବେ ଲେଖକମାନେ ଜୀବନଚରିତକୁ ମୁଖ୍ୟତଃ ଘଟଣା-ବହୁଳ କରିଦେଉଥିବାରୁ ତହିଁରେ ମୁଖ୍ୟଚରିତର ଜୀବନ-ଧର୍ମ ସ୍ୱାଭାବିକ ଭାବରେ ଚିତ୍ରିତ ହେବାକୁ ସୁଯୋଗ ଲାଭ କରେ ନାହିଁ । ତେଣୁ ଅନେକ ଜୀବନୀ ଆକର୍ଷଣୀୟ ହୋଇପାରିନାହିଁ । ଏହି କାରଣରୁ ଅନ୍ୟ କେତେକ ଲେଖାକୁ ବାଦ୍ ଦେଲେ ଜୀବନୀ ବିଭାଗର ଶିକ୍ଷାଗତ ଯୋଗ୍ୟତା ଯାହାଥାଉ ପଛକେ ସାହିତ୍ୟିକ ମୂଲ୍ୟବୋଧର ଅଭାବ ରହିଅଛି । ଅବଶ୍ୟ ଗତ କେତେବର୍ଷ ମଧ୍ୟରେ ଅନୁବାଦ ଜୀବନକାହାଣୀଗୁଡ଼ିକ ଏହି ଦାରିଦ୍ର୍ୟ ଦୂର କରିବାରେ ଅଧିକ ସାହାଯ୍ୟକାରୀ ହୋଇଅଛନ୍ତି ।

---

# ଗ୍ରନ୍ଥାବଳୀ ଓ ସ୍ମରଣିକାରେ ଚରିତ-ପରିଚିତି

ଅନେକ ଦିନ ପର୍ଯ୍ୟନ୍ତ ଦୀର୍ଘ ଜୀବନଚରିତ ପ୍ରାୟ ଲେଖା ହୋଇ ନଥିଲା । ଏ କ୍ଷେତ୍ରରେ କେବଳ ମୃତ୍ୟୁଞ୍ଜୟ ରଥ ପ୍ରଥମେ ଦୁଃସାହସିକ ପଦକ୍ଷେପ ଗ୍ରହଣ କରି ଦୀର୍ଘଜୀବନଚରିତ ଲେଖିଗଲେ । ଶ୍ରୀଯୁକ୍ତ ରଥ ପ୍ରଥମେ 'ଶାରଳାଚରିତ' ରଚନା କରି ଜଣେ ବିଖ୍ୟାତ ସାହିତ୍ୟିକ ବୀରଙ୍କର ଜୀବନକାହାଣୀ ଓଡ଼ିଆରେ ପ୍ରଚାର କରିଥିଲେ । ଏହି ପରିପ୍ରେକ୍ଷୀରେ ଏ ଯୁଗରେ ଉତ୍କଳର ମାଷ୍ଟ୍ରାଧର ମାନସିଂହଙ୍କ ଲିଖିତ "ସରସ୍ୱତୀ ଫକୀରମୋହନ" ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ସାହିତ୍ୟିକ ଜୀବନଚରିତ । ତେବେ ଓଡ଼ିଆ ସାହିତ୍ୟରେ ପ୍ରକାଶିତ ଗ୍ରନ୍ଥାବଳୀ ଏବଂ ସ୍ମରଣିକା ଗୁଡ଼ିକ ନିର୍ଦ୍ଦିଷ୍ଟ ସାହିତ୍ୟିକ ବ୍ୟକ୍ତିତ୍ୱର ପ୍ରକାଶନରେ ଅନେକ ସାହାଯ୍ୟ କରିଥାଏ । ୧୯୦୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ରାଧାନାଥ ଗ୍ରନ୍ଥାବଳୀରେ ଶ୍ରୀ ଆର୍ତ୍ତତ୍ରାଣ ଶତପଥି କବିଙ୍କର ଏକ କ୍ଷୁଦ୍ର ଜୀବନଚରିତ ଲେଖିଥିଲେ । ତାହାହିଁ ବୋଧହୁଏ ରାଧାନାଥଙ୍କ ସମ୍ପର୍କରେ ପ୍ରଥମ ଜୀବନ-ଚରିତ ସମ୍ବଳିତ ପ୍ରବନ୍ଧ ହୋଇପାରେ । ଅବଶ୍ୟ ପରେ ରାଧାନାଥଙ୍କ ବିଷୟରେ ଅନେକ ଗ୍ରନ୍ଥ ଓ ସ୍ମରଣିକା ପ୍ରକାଶିତ ହୋଇଅଛି । ଅବଶ୍ୟ ଦୁର୍ଗାଚରଣ ରାୟଙ୍କ ରାଧାନାଥ ଜୀବନୀ ପରି ଆଉ କୌଣସି ରଚନା ତାଙ୍କର ଜୀବନୀ ସମ୍ପର୍କରେ ପର୍ଯ୍ୟାପ୍ତ ଆଲୋକପାତ କରି ନାହିଁ ।

ଉପସଂହାରରେ ଆର୍ତ୍ତତ୍ରାଣ ଶତପଥୀ ଲେଖିଥିଲେ—"ଅତି ସଂକ୍ଷେପରେ ରାଧାନାଥଙ୍କ ଜୀବନଚରିତ ଏଥିରେ ସନ୍ନିବିଷ୍ଟ ହେଲା । ତାହାଙ୍କ ଜୀବନୀ ଅତ୍ୟନ୍ତ ଘଟଣାବହୁଳ, ଶିକ୍ଷାପ୍ରଦ ଓ ଅନୁକରଣୀୟ । ଏ ବିଷୟରେ ଆମ୍ଭେମାନେ ଭୂରି ଭୂରି ପ୍ରମାଣ ପ୍ରତି ମୁହୂର୍ତ୍ତରେ ଉପଲବ୍ଧି କରିଅଛୁଁ । ରାଧାନାଥ ଓଡ଼ିଶାରେ ଅଦ୍ୱିତୀୟ ଗୁଣରଙ୍କ ପୁରୁଷ ଥିଲେ । ତାହାଙ୍କର ଯେଉଁ ଯେଉଁ ସଦ୍‌ଗୁଣମାନ ମାନସ ପ୍ରତ୍ୟକ୍ଷ କରିଅଛୁଁ, ତନ୍ମଧ୍ୟରେ ବିନୟ ଓ ଓ ପରଦୁଃଖକାତରତା ସର୍ବଶ୍ରେଷ୍ଠ ଅଟେ । ସେହି ବିନୟାଦି ଯୋଗୁଁ ରାଧାନାଥ ଆଜି ଆମ୍ଭମାନଙ୍କ ହୃଦୟର ଏକାନ୍ତ ଆରାଧ୍ୟ ।"

ସ୍ୱାଧୀନତା ପୂର୍ବରୁ ଗ୍ରନ୍ଥାବଳୀ ପ୍ରକାଶପାଇଁ ପ୍ରକାଶକଗଣ ସାହାସ କରୁନଥିଲେ । ସ୍ୱାଧୀନତାପରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର, ପୁସ୍ତକ ପ୍ରଚାରରେ ସରକାରୀ ପୃଷ୍ଠପୋଷକତା ଏବଂ ଲାଇବ୍ରେରୀ ଆନ୍ଦୋଳନ ଯୋଗୁ ଓଡ଼ିଆ ସାହିତ୍ୟରେ ଗ୍ରନ୍ଥାବଳୀର ଯୁଗ ଆରମ୍ଭ ହେଲା ବୋଲି ସ୍ୱୀକାର କରିବାକୁ ହେବ । ଗଙ୍ଗାଧର ଗ୍ରନ୍ଥାବଳୀ, ମଧୁସୂଦନ ଗ୍ରନ୍ଥାବଳୀ, ନନ୍ଦକିଶୋର ଗ୍ରନ୍ଥାବଳୀ, ବାସୁଦେବ ଗ୍ରନ୍ଥାବଳୀ, ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ, ଜ୍ଞାନୀନ୍ଦ୍ର ଗ୍ରନ୍ଥାବଳୀ, ଅନନ୍ତପ୍ରସାଦ ଗ୍ରନ୍ଥାବଳୀ, ବୈକୁଣ୍ଠ ଗ୍ରନ୍ଥାବଳୀ, କାଳନ୍ଦୀ ରଚନା ସମ୍ଭାର, ଫକୀରମୋହନ,

ନୀଳକଣ୍ଠ, ଗୋଦାବରୀଶ, କାଳୀଚରଣ, ଅଶ୍ୱିନୀକୁମାର, ରାଜକିଶୋର ରାୟ, ମୃତ୍ୟୁଞ୍ଜୟ ରଥ, ଗୋପୀନାଥ ନନ୍ଦ, ବୈଷ୍ଣବ ପାଣି, ବାଳକୃଷ୍ଣ. ରାଧାମୋହନ ଗଡ଼ନାୟକ, ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, ଲକ୍ଷ୍ମୀନାରାୟଣ ସାହୁ, ବଳଭଦ୍ର ପ୍ରଭୃତିଙ୍କର ଗ୍ରନ୍ଥାବଳୀ ପ୍ରକାଶିତ ହୋଇଅଛି । ପ୍ରାୟ ଅଧିକାଂଶ ଗ୍ରନ୍ଥାବଳୀରେ ଲେଖକଙ୍କର ଜୀବନଚରିତ ସମ୍ପର୍କରେ ଆଲୋକ ଦିଆଯାଇଅଛି । କେତୋଟି ଗ୍ରନ୍ଥାବଳୀରେ ଜୀବନଚରିତ କେବଳ କବିଙ୍କର ବ୍ୟକ୍ତିଗତ ଜୀବନର ପରିଚୟ ନୁହେଁ, ତହିଁରୁ ସମକାଳୀନ ଜୀବନର ମଧ୍ୟ ଅନେକ ତଥ୍ୟ ମିଳିଥାଏ । ବାସୁଦେବ ଗ୍ରନ୍ଥାବଳୀରେ ଆଦର୍ଶ ନରପତି ସୁଚଳ ଦେବଙ୍କର ବିସ୍ତୃତ ପରିଚୟ ଏବଂ ତାଙ୍କର କୀର୍ତ୍ତିର ସୂଚନା ଦିଆଯାଇଅଛି । ମାୟାଧର ମାନସିଂ ସେହି ବୀରପୁରୁଷଙ୍କ ସମ୍ପର୍କରେ ସୂଚନା ପ୍ରଦାନ କରି ଲେଖିଥିଲେ—

"ବାମଣ୍ଡା ପରି ଏକ ଅନୁନ୍ନତ ଜଙ୍ଗଲି ରାଜ୍ୟକୁ ଯେଉଁ ଲୋକ ନିଜ ଜୀବନ କାଳରେ ଏକ ଆଦର୍ଶ ରାଜ୍ୟ କରି ଗଢ଼ି ପାରିଲି, ଯେଉଁ ଲୋକ ଇଂରାଜୀ ନ ଜାଣିଥିଲେ ମଧ୍ୟ ଓଡ଼ିଶାରେ ପ୍ରଥମ ଟେଲିଫୋନ, ପ୍ରଥମ ମୋଟରକାର, ପ୍ରଥମ ପାଣିକଳ, ପ୍ରଥମ କରତ କାରଖାନା, ପ୍ରଥମ ନିଶାନିବାରଣ ପ୍ରବର୍ତ୍ତନ କରି ପାରିଥିଲି, ଯିଏ ଦୁର୍ଗମ ଦେବଗଡ଼କୁ ଉତ୍କଳର ବୃନ୍ଦାବନ ହଂସ କୈଳାସର କରିପାରିଥିଲି, ସେହି କ୍ଷଣଜନ୍ମା ନରପୁଙ୍ଗବ କେବଳ ଜଣେ ରାଜୋତ୍ତମ ନୁହଁନ୍ତି, ନରୋତ୍ତମ ଭାବରେ ମଧ୍ୟ ଜାତିର ସର୍ବଦା ନମସ୍ୟ ହୋଇ ରହିବେ ।"

ତାଙ୍କର ସଂକ୍ଷିପ୍ତ ଜୀବନଚରିତରୁ ସମକାଳୀନ ଓଡ଼ିଶାର ସାଂସ୍କୃତିକ ଓ ସାମାଜିକ ଜୀବନ ସମ୍ପର୍କରେ ଅନେକ କଥା ଜଣାଯାଏ । ସେ କାଳର ରାଜନ୍ୟମଣ୍ଡଳୀ, ରାଜପରିବାର, ସାହିତ୍ୟିକ ବାତାବରଣ ଓ ରାଜପୃଷ୍ଠପୋଷକତା, ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ଏବଂ ସାମୟିକ ପତ୍ର ପ୍ରକାଶ ପ୍ରଭୃତି ବିଷୟରେ ଅନେକ ବିବରଣୀ ଲିପିବଦ୍ଧ ହୋଇଅଛି । ଏକ ଅନ୍ଧାର ଯୁଗରେ, ଅଥଚ ଅନଗ୍ରସର ବାମଣ୍ଡା ରାଜ୍ୟରେ ବାସୁଦେବ କିପରି ଆଧୁନିକତାର ଓ ପ୍ରଗତିର ବାର୍ତ୍ତାବହ ଥିଲେ, ତାହା ନିମ୍ନଲିଖିତ ବର୍ଣ୍ଣନାରୁ ଜଣାଯାଏ ।

"ବାମଣ୍ଡା ରାଜ୍ୟ ଭିତରେ ସ୍ଥାନାନ୍ତର ଯିବାକୁ ହେଲେ ଭୟଙ୍କର ଶ୍ୱାପଦ ସଙ୍କୁଳ ବନଭୂମି ଅତିକ୍ରମ କରି ଯାତାୟତ କରିବାକୁ ହେଉଥିଲା । ଅତଏବ ଏହି ଦୀର୍ଘସ୍ଥାୟୀ ଅଭାବ ଦୂର କରିବା ନିମନ୍ତେ ରାଜା ସୁଚଳଦେବ ଅସୀମ କାୟିକ ପରିଶ୍ରମ ସହ୍ୟକରି ଓ ପ୍ରଚୁର ଅର୍ଥ ବ୍ୟୟକରି ଅସଂଖ୍ୟ ରାଜପଥ ନିର୍ମାଣ କରାଇବାକୁ ଅଗ୍ରସର ହେଲେ । ଇଞ୍ଜିନିୟରଙ୍କ ବିନା ସାହାଯ୍ୟରେ ମାନଚିତ୍ର ତିଆରି କରି, କେଉଁପଥ କିପରି ଭାବେ ଗଠନ କଲେ ଅଳ୍ପ ବ୍ୟୟରେ ହୋଇ ପାରିବ ଅଥଚ ଗ୍ରାମରୁ ଗ୍ରାମାନ୍ତର ଯାତାୟାତର ସୁବିଧା ହେବ, ଉତ୍ତମରୂପେ ବିଚାର କରି, ମଜୁରିଆଙ୍କ ସଙ୍ଗରେ କୋଡ଼ାତାପାତ କରି ସମସ୍ତ ରାଜପଥର ନିର୍ମାଣ କାର୍ଯ୍ୟ ସମ୍ପନ୍ନ କଲେ । ଯେଉଁସବୁ ଇଷ୍ଟକ ଓ ଲୌହ ନିର୍ମିତ ସେତୁ ତାଙ୍କ ସମୟରେ ପ୍ରସ୍ତୁତ ହୋଇଅଛି ତାହା

ତାଙ୍କର ନିଜର ବୁଦ୍ଧି ପ୍ରସୂତ । ପ୍ରତ୍ୟେକ ରାଜପଥ ସଙ୍ଗରେ ତାଙ୍କର ଶ୍ରମସ୍ମୃତି ଜଡ଼ିତ ରହି ଆଜି ବାମଣ୍ଡାର ପ୍ରଜାମଣ୍ଡଳୀଙ୍କ ସମକ୍ଷରେ ବାସୁଦେବଙ୍କୁ ଅମର କରି ରଖିଅଛି ।

(ବାସୁଦେବ ଗ୍ରନ୍ଥାବଳୀ)

ସେହିପରି ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀରେ ରାଜା ସଚ୍ଚିଦାନନ୍ଦଙ୍କ ମହନୀୟ ଚରିତ୍ର ସହିତ ସମକାଳୀନ ସାମାଜିକ ଜୀବନର ଅପୂର୍ବ ଚିତ୍ର ବର୍ଣ୍ଣିତ ହୋଇଅଛି । ସେ କାଳର ଶିକ୍ଷା ବ୍ୟବସ୍ଥା ଇଲେକ୍ଟ୍ରିକ୍ ପ୍ରେସ ପ୍ରତିଷ୍ଠା, ବିଜୁଳି ଅନେକ ପଡିବଡ଼ି, ଚିନି କାରଖାନା, ମଧୁଗୃଷ, ଟାଇଲ କାରଖାନା, ସ୍ତ୍ରୀଶିକ୍ଷା ଏବଂ ଆଦିବାସୀ ଶିକ୍ଷାପାଇଁ ଅନୁଷ୍ଠାନ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଅଖୋଜ ବାମଣ୍ଡାରେ ରାଜା ସଚ୍ଚିଦାନନ୍ଦଙ୍କ ଉଦ୍ୟମରେ ସମ୍ଭବ ହୋଇଥିଲା । ଏହି ପ୍ରବନ୍ଧରେ କୁହାଯାଇଛି—"ସେ କାଳର ଗଡ଼ଜାତରେ ନୂତନ ଶିକ୍ଷାପ୍ରତି ଆଗ୍ରହ ଲୋକସାଧାରଣଙ୍କର ଆଦୌ ନଥିଲା କହିଲେ ଚଳେ । କର୍ତ୍ତୃପକ୍ଷଙ୍କ ବାଧ୍ୟବାଧକତାରେ ଅନିଚ୍ଛା ସତ୍ତ୍ୱେ ଅଭିଭାବକମାନେ ନିଜର ସନ୍ତାନମାନଙ୍କୁ ବିଦ୍ୟାଳୟରେ ପ୍ରବେଶ କରାଉଥିଲେ । ଯୁବରାଜ ନିଜେ ସ୍କୁଲକୁ ସାଧାରଣ ପିଲାଙ୍କ ଭଳି ବହି ବସ୍ତାନି ହାତରେ ଧରି ପଢ଼ି ଆସିବାର ଦେଖି କ୍ରମେ ସମସ୍ତଙ୍କର ଜଡ଼ତା ଦୂର ହେଲା । ଗ୍ରାମ ଗହଳରେ ଲୋକେ ଭାବିଲେ—ରାଜା ଘରର କଅଣ ନାହିଁ ! ଖାଇବାକୁ ନାହିଁ ନା ପିନ୍ଧିବାକୁ ନାହିଁ, ସବୁ ଅଛି : ରାଜ୍ୟ ଅଛି, ହାତୀ ଘୋଡ଼ା, ଧନସମ୍ପତ୍ତି ଭରି ରହିଛି । ହାତୀରେ ବସ୍ତା ବସ୍ତା ଟଙ୍କା ଲଦା ହୋଇ ସିଂହ ଦ୍ୱାରରେ ଗଦା ହେଉଛି । ଏତେ ଥାଇ ଦେଖ, ରଜାପୁଅ ପାଠ ପଢ଼ିବାକୁ ଉତ୍କଣ୍ଠିତ ହେଉଛନ୍ତି—ଗୁଣ ପାଇଁତ । ଆମ ପିଲେ ନପଢ଼ିବେ କାହିଁକି ?"  (ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ)

ସେତେବେଳେ ସାରା ଓଡ଼ିଶାରେ କେଉଁଠାରେ ହେଲେ ଅନାର୍ଯ୍ୟ ଓ ଅସ୍ପୃଶ୍ୟ ଜାତିର ବାଳକ ବାଳିକାମାନଙ୍କ ନିମନ୍ତେ ଶିକ୍ଷାର କୌଣସି ବ୍ୟବସ୍ଥା ନଥିଲା । ୧୯୦୪ ଖ୍ରୀଷ୍ଟାବ୍ଦରେ ପ୍ରଥମେ ରାଜଧାନୀ ଦେବଗଡ଼ରେ ଗୋଟିଏ ଅନାର୍ଯ୍ୟ ସ୍କୁଲ ସ୍ଥାପିତ ହୋଇଥିଲା । ୧୯୧୦ ଖ୍ରୀଷ୍ଟାବ୍ଦରେ ଇଲେକ୍ଟ୍ରିକ୍ ପ୍ରେସ ପ୍ରତିଷ୍ଠା କରାଯାଇଥିଲା । ଦେଶରେ ନିଶାନିବାରଣ ଆନ୍ଦୋଳନର ଅର୍ଦ୍ଧ ଶତାବ୍ଦୀ ପୂର୍ବରୁ ସଚ୍ଚିଦାନନ୍ଦ ନିଜ ରାଜ୍ୟରେ କଟକଣା ଜାରି କରିଥିଲେ ।

'ନନ୍ଦକିଶୋର ଗ୍ରନ୍ଥାବଳୀ'ରେ କବିଙ୍କ ଜୀବନଚରିତ ପାଠକଲେ ସେ ସମୟର ସାହିତ୍ୟିକ ପାରିପାର୍ଶ୍ୱିକ, ସମକାଳୀନ ସାହିତ୍ୟିକ ବ୍ୟକ୍ତିତ୍ୱ ଓ କବିଙ୍କର ସାଧନାପୂତ ଜୀବନର ପରିଚୟ ମିଳିଥାଏ । ଏହି ଜୀବନଚରିତ ପ୍ରବନ୍ଧର ଲେଖକ କେବଳ ନନ୍ଦକିଶୋରଙ୍କ ବାଲ୍ୟଜୀବନ, ଶିକ୍ଷା, କର୍ମଜୀବନ ଓ ସାହିତ୍ୟ ସାଧନା ସମ୍ପର୍କରେ ପରିଚୟ ପ୍ରଦାନ କରି ସନ୍ତୁଷ୍ଟ ରହି ନାହାନ୍ତି, ସେ ଓଡ଼ିଶାରେ ରାଜନୈତିକ ପରିସ୍ଥିତି, ସାହିତ୍ୟିକ ଜୀବନର ବିକାଶରେ କିପରି ସହଯୋଗୀ ହୋଇଅଛି, ତାହାର ସମୀକ୍ଷା କରିଯାଇଛନ୍ତି ।

ଗଙ୍ଗାଧର ଗ୍ରନ୍ଥାବଳୀରେ ଜୀବନୀ ପ୍ରବନ୍ଧ ଲେଖିଛନ୍ତି ମେହେର ସାହିତ୍ୟର ଆଦ୍ୟ ସମାଲୋଚକ ରାଘବ ମିଶ୍ର । ଏହି ସଂକ୍ଷିପ୍ତ ଜୀବନ ଚରିତରେ ତାଙ୍କର ଶିକ୍ଷା, ଗୃହକର୍ମ ଓ

କବିତ୍ୱର ସ୍ଫୂର୍ତ୍ତି, ଗୃହକର୍ମଜୀବନ, କାବ୍ୟକବିତାର ପରିଚୟ ପ୍ରଭୃତି ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି । ମାତ୍ର ଗ୍ରନ୍ଥାବଳୀରେ ଗଙ୍ଗାଧରଙ୍କର ଏକ ସଂକ୍ଷିପ୍ତ ଆତ୍ମଜୀବନୀ ସ୍ଥାନ ପାଇଛି । ଗଙ୍ଗାଧର କେବଳ ସ୍କୁଲ ଛାତ୍ରାବାସର ଶେଷଜୀବନ ପର୍ଯ୍ୟନ୍ତ ଏହି କ୍ଷୁଦ୍ର ଜୀବନଚରିତରେ ଲେଖିଛନ୍ତି । କାହିଁକି ସେ ସେ ସମଗ୍ର ଜୀବନଚରିତ ଲେଖିଲେ ନାହିଁ, ତାହା ଅନୁମାନ କରିବା କଷ୍ଟକର । ତେବେ ଗଙ୍ଗାଧର ଅତ୍ୟନ୍ତ ଦରିଦ୍ର ଥିଲେ ଏବଂ ଦୁଃଖରେ ବାଲ୍ୟଜୀବନ ବିତାଇଥିଲେ । ସେ ଲେଖିଛନ୍ତି—"ମୁଁ ସ୍କୁଲରେ ଶିକ୍ଷା ଶେଷ କରିବା ପର୍ଯ୍ୟନ୍ତ ସାମାନ୍ୟ କୁରୁତା ଖଣ୍ଡେ କରି ପାରି ନଥିଲି । ଖଣ୍ଡେ ଶାନ୍ତିପୁରୀ ଚଦର ଅତି ମ୍ଳାନ ହେବା ପର୍ଯ୍ୟନ୍ତ ବ୍ୟବହାର କରିବାକୁ ପଡ଼ୁଥିଲି । ହାକିମ ଆସିଲାଦିନ ସମସ୍ତେ କୁରୁତା ଲଗାଉଥିଲେ । ମୋ ଭାଗ୍ୟରେ ତାହା କେବେ ଘଟି ନଥିଲି ।"

"ଗୋପୀନାଥ ଗ୍ରନ୍ଥାବଳୀ"ରେ ଗୋପୀନାଥ ନନ୍ଦଙ୍କ ଜୀବନଚରିତ ପ୍ରବନ୍ଧରେ ତାଙ୍କର ସାହିତ୍ୟ କୃତିର ଅଧିକ ପରିଚୟ ଦିଆଯାଇଅଛି । ଲେଖକଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଏ ପ୍ରବନ୍ଧରେ ସବିଶେଷ ଆଲୋଚନା ହୋଇନାହିଁ । ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀରେ ସଂକ୍ଷିପ୍ତ ଜୀବନୀର ଲେଖକ ଗୋପାଳଚନ୍ଦ୍ର ମିଶ୍ର ତାଙ୍କର ବାଲ୍ୟଜୀବନ, ଛାତ୍ରାବସ୍ଥା, ଶିକ୍ଷକଜୀବନ ପାରିବାରିକ ଜୀବନ ଏବଂ ସାହିତ୍ୟିକ ଜୀବନ ସମ୍ପର୍କରେ ସମ୍ୟକ ପରିଚୟ ଦେଇଅଛନ୍ତି । ପ୍ରାୟ ପ୍ରତ୍ୟେକ ଗ୍ରନ୍ଥାବଳୀରେ ଗତାନୁଗତିକ ଧାରାରେ କବିଙ୍କର ପରିଚୟ ପ୍ରଦତ୍ତ ହୋଇଅଛି । କେବଳ ଗଙ୍ଗାଧର ଗ୍ରନ୍ଥାବଳୀରେ କବିଙ୍କ ଲିଖିତ ସଂକ୍ଷିପ୍ତ ଆତ୍ମଚରିତ-ପ୍ରବନ୍ଧ ପ୍ରକାଶିତ ହୋଇଥିବା ଜଣାଯାଏ । ମାତ୍ର ତହିଁରୁ କବିଜୀବନୀ ସମ୍ପର୍କରେ ମନପୂତଃ ହୁଏ ନାହିଁ ।

ଏହି ପ୍ରସଙ୍ଗରେ ଏ ଯୁଗରେ ପ୍ରକାଶିତ 'ସ୍ମରଣିକା' ମଧ୍ୟ ଆଲୋଚନା କରାଯିବା ଆବଶ୍ୟକ । ଗତ ଦଶବର୍ଷ ମଧ୍ୟରେ ପ୍ରତିଭା ପୂଜା ପାଇଁ ବିଭିନ୍ନ ଅନୁଷ୍ଠାନ ସଚେଷ୍ଟ ହୋଇଅଛନ୍ତି ଏବଂ ସେହି କାରଣରୁ ଏହି ଅନୁଷ୍ଠାନମାନଙ୍କ ଆନୁକୂଲ୍ୟରେ ସ୍ମରଣିକା ପ୍ରକାଶିତ ହୋଇ ସେହି ବ୍ୟକ୍ତିବିଶେଷଙ୍କର ଜୟଗାନ କରିଥିବା ଜଣାଯାଏ । ବିଶେଷତଃ ସ୍ମୃତିପୂଜା ଉଦ୍ଦେଶ୍ୟରେ କେତେକ ରାଜନୈତିକ ବ୍ୟକ୍ତି ଏବଂ ସାହିତ୍ୟିକ ପ୍ରତିଭା ସମ୍ପର୍କରେ ଏହିପରି ଆୟୋଜନ ଦେଖିବାକୁ ମିଳେ । ଉଦାହରଣ ଛଳରେ ରାଜନୀତିଜ୍ଞ ହରେକୃଷ୍ଣ ମହତାବଙ୍କ ଜନ୍ମତିଥିରେ ପ୍ରତ୍ୟେକ ବର୍ଷ ଏକ ସ୍ମରଣିକା ପ୍ରକାଶିତ ହୋଇ ମହତାବଙ୍କ ସମ୍ପର୍କରେ ଲେଖାମାନ ପ୍ରକାଶ କରି ଆସୁଅଛନ୍ତି । ରାଜନୀତିଜ୍ଞମାନଙ୍କ ମଧ୍ୟରେ ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକ, ମୁରଲୀଧର ଜେନା, ବୀରକିଶୋର ଦାସ ପ୍ରଭୃତିଙ୍କ ସମ୍ପର୍କରେ ସ୍ମରଣିକା ପ୍ରକାଶିତ ହୋଇଥିଲା । ତେବେ ଅଧିକାଂଶ କ୍ଷେତ୍ରରେ ସାହିତ୍ୟିକ—ବ୍ୟକ୍ତିମାନଙ୍କ ସମ୍ପର୍କରେ ସ୍ମରଣିକା ପ୍ରକାଶ ପାଇଁ ଅଧିକ ଉଦ୍ୟମ ଦେଖା ଦେଉଅଛି । ବହୁକାଳ ପୂର୍ବେ ଫକୀରମୋହନଙ୍କ ସ୍ମୃତିରେ ଉତ୍କଳସାହିତ୍ୟ ଏକ ସ୍ମରଣିକା ପ୍ରକାଶ କରିଥିଲେ । ତାହାହିଁ ବୋଧହୁଏ ଓଡ଼ିଶାର ପ୍ରଥମ ସ୍ମରଣିକା । ଏହିପରି ସ୍ମରଣିକା ସାଂପ୍ରତିକ କାଳରେ ଅତ୍ୟନ୍ତ ଆଗ୍ରହ ସୃଷ୍ଟି କରିଅଛି—ତାହାହେଲା—ସେନାପତି ଜୟନ୍ତୀ ସ୍ମରଣିକା—ଫକୀରମୋହନ ସାଂସ୍କୃତିକ ପରିଷଦ କଟକ (୧୯୬୪), ଆର୍ତ୍ତବଲ୍ଲଭ ସ୍ମରଣିକା (୧୯୬୪), ଲକ୍ଷ୍ମୀନାରାୟଣ ସ୍ମରଣିକା (୧୯୬୪), ବ୍ରଜସୁନ୍ଦର

ସ୍ମାରକ ଗ୍ରନ୍ଥ (୧୯୬୬), ଗଡ଼େକବ ବୈଷ୍ଣବପାଣି ସ୍ମରଣିକା (୧୯୬୭), ମଧୁସ୍ମରଣିକା (୧୯୬୭) ନୀଳକଣ୍ଠ ସ୍ମରଣିକା (୧୯୬୯), ଗୋପବନ୍ଧୁ ସ୍ମରଣିକା (୧୯୬୭), ରତ୍ନାକର ସ୍ମୃତି (୧୯୭୦), ଗନ୍ତନାୟକ ଅଭିନନ୍ଦନ ଗ୍ରନ୍ଥ (୧୯୭୧) ସହକାର ବାଳକୃଷ୍ଣ ସ୍ମୃତି ସଂଖ୍ୟା (୧୯୭୩), ନବପତ୍ର-ଗୋପୀନାଥ ବଣେଷୋଙ୍କ (୧୯୭୪), ସାହିତ୍ୟିକ ଉଦୟନାଥ ଷଡ଼ଙ୍ଗୀ (୧୯୭୫) ସତ୍ୟବାଦୀ ପ୍ରସୂନ (ଗ୍ରାଥାନ ଥ ରଥ)—(୧୯୭୫) ଅଧୁନା' ଗ୍ରନ୍ଥକଶୋର ବଣେଷୋଙ୍କ (୧୯୭୬, ପ୍ରଧାନ। ଏତଦ୍ବ୍ୟତୀତ ଅତୀତରେ ଚଉରେ ଲକ୍ଷ୍ମୀକାନ୍ତ ସ୍ମରଣିକା, ପ୍ରାଣକୃଷ୍ଣ ସ୍ମରଣିକା, ଗୋଦବର୍ଦ୍ଧନ ସ୍ମରଣିକା, ଅଗ୍ନିଯୀ ହରହର ସ୍ମରଣିକା, ଗୋପାଳ ପ୍ରହରାଜ ସ୍ମରଣିକା, ବଚ୍ଛନ୍ଦ ସ୍ମରଣିକା ପ୍ରଭୃତି ଏହି ପ୍ରସଙ୍ଗରେ ଉଲ୍ଲେଖ କରାଯାଇପାରେ । ଏହି ସ୍ମରଣିକା ସାହିତ୍ୟର ଅନ୍ୟେ ଜନ କ୍ଷେତ୍ରରେ ମୁରଲୀମୋହନ ଯେନା, ନିତ୍ୟାନନ୍ଦ ଶତପଥୀ, ଚନ୍ଦ୍ରଶେଖର ମହାପାତ୍ର, ପରମାନନ୍ଦ ଅଧିକାରୀ ପ୍ରଭୃତିଙ୍କର ଉଦ୍ୟମ ଅତ୍ୟନ୍ତ ସ୍ମରଣୀୟ । ଏହି ସ୍ମରଣିକା ଗୁଡ଼ିକରେ କବି ଜୀବନର ପରିଚୟ ସହିତ ତାଙ୍କର ସାହିତ୍ୟକୃତୀ ସମ୍ପର୍କରେ ଦୀର୍ଘ ଆଲୋଚନା ପ୍ରକାଶିତ ହୋଇଥାଏ । ତଥାପି ଜୀବନଚରିତ ସଙ୍କଳନରେ ଏଗୁଡ଼ିକର ମୂଲ୍ୟବୋଧ ସ୍ୱୀକାର କରିବାକୁ ହେବ । ଭବିଷ୍ୟତରେ ଜୀବନଚରିତ ଲେଖକଗଣ ଏହି ସ୍ମରଣିକା ପ୍ରକାଶନୀ ଏବଂ ଗ୍ରନ୍ଥାବଳୀର ପରିଚିତିଗୁଡ଼ିକରୁ ଉପାଦାନ ସଂଗ୍ରହ କରି ଜୀବନୀ-ସାହିତ୍ୟର ସମୃଦ୍ଧି କଲେ ବ୍ରତୀ ହୋଇପାରିବେ ।

———

# ଉପସଂହାର

ବିଗତ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଆସାହିତ୍ୟର ଜୀବନଚରିତ ଓ ଆତ୍ମଜୀବନଚରିତ ବିଭାଗର ଭୂୟୋବିକାଶ ଘଟିଅଛି । ଏଥିପାଇଁ ଜଗନ୍ନାଥ ଚରିତାମୃତ, ଦାର୍ଢ୍ୟତାଭକ୍ତି, ମାଦଳାପାଞ୍ଜି ପ୍ରଭୃତି ଯେଉଁ ପ୍ରେରଣାର ସୂତ୍ରପାତ କରିଥିଲେ, ମୁଦ୍ରାଯନ୍ତ୍ର ଆନୁକୂଲ୍ୟରେ ପତ୍ରପତ୍ରିକା ସେହି ଉଦ୍ୟମକୁ ଅବ୍ୟାହତ ରଖିଥିଲେ । ଜାତୀୟ ଆନ୍ଦୋଳନ ଯୁଗରେ ସାମାଜିକ ବିପ୍ଳବ ଏବଂ ବ୍ୟକ୍ତିତ୍ୱବୋଧର ଅନୁପ୍ରେରଣା ଜୀବନଚରିତ ସୃଷ୍ଟି ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା । ଜୀବନଚରିତ ଲେଖା ହେବାର ଏକ ବଳିଷ୍ଠ ପରମ୍ପରା, ଏ ଦେଶରେ ପ୍ରସ୍ତୁତ ହୋଇ ନଥିଲା । ଆମର ଯୁଗ ଯୁଗର ଆଦର୍ଶ ମହାପୁରୁଷଗଣଙ୍କ ସମ୍ପର୍କରେ ଅନେକ ଅସମ୍ଭବ ଅବାସ୍ତବ କଥା ଜୀବନଚରିତ ବୋଲି ପ୍ରଚାରିତ ହେଉଥିଲା । ମୁଦ୍ରଣ ଶିଳ୍ପର ପ୍ରତିଷ୍ଠା ଯୋଗୁ ପୁସ୍ତକ ପ୍ରକୃତି ସୁଗମ ହେବାରୁ ଏହିପରି ରୂପକଥା ଶ୍ରେଣୀର ଚରିତମାଳା ଭକ୍ତିଭାବନା ପ୍ରସାର ଉଦ୍ଦେଶ୍ୟରେ ଲିଖିତ ହେଲା । ମାତ୍ର ଏହାକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଖାଣ୍ଟି ଜୀବନଚରିତ କୁହାଯାଇ ପାରିବ ନାହିଁ ।

ଜୀବନଚରିତରେ ସତ୍ୟର ଆଶ୍ରୟ ନ ରହିଲେ ତାହା ବ୍ୟକ୍ତି ଓ ସମାଜକୁ ପ୍ରଭାବିତ, ଅନୁପ୍ରାଣିତ କରିପାରିବ ନାହିଁ । ପାଶ୍ଚାତ୍ୟ ଶିକ୍ଷା ଓ ବସ୍ତୁବାଦୀ ଦର୍ଶନର ପ୍ରଭାବରେ କ୍ରମଶଃ ଓଡ଼ିଶାର ଲେଖକମାନେ ଆଧିଦୈବିକ ଉପାଖ୍ୟାନ ପରିତ୍ୟାଗ କରି ଜୀବନଚରିତରେ ସତ୍ୟର ଜୟଗାନ କରିବାକୁ ବଦ୍ଧପରିକର ହୋଇଛନ୍ତି । ପଡ଼ୋଶୀ ଭାଷାମାନଙ୍କରେ ପ୍ରକାଶିତ ବିଖ୍ୟାତ ଜୀବନଚରିତର ଅନୁବାଦ ଫଳରେ ଓଡ଼ିଆ ଲେଖକମାନଙ୍କର ଦୃଷ୍ଟିକୋଣ ମଧ୍ୟ ପ୍ରସାରିତ ହୋଇଅଛି । ବିଶେଷ କରି ପାଶ୍ଚାତ୍ୟ ସାହିତ୍ୟ ଏ ଦିଗରେ ଅଧିକ ସାହାଯ୍ୟ କରିଅଛି ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସମୟଠାରୁ ପ୍ରାଚୀସମିତି ଗ୍ରନ୍ଥ ମଧ୍ୟରେ ଲିଖିତ ଅନେକ ଜୀବନଚରିତରେ ଏହି ଅଲୌକିକତାର ପ୍ରାଧାନ୍ୟ ଥିଲେହେଁ ସାହିତ୍ୟପ୍ରକୃତିର ଢଙ୍ଗ, ଗାନ୍ଧୀସ୍ମାରକ ନିଧି, ଭୂଦାନ ଅନୁଷ୍ଠାନ, ଗୋପବନ୍ଧୁ ସାହିତ୍ୟ ମନ୍ଦିର, ଉତ୍କଳ ବିଶ୍ୱବିଦ୍ୟାଳୟ, ବିଭିନ୍ନ ପ୍ରଗତିଶୀଳ ପ୍ରକାଶନ ସଂସ୍ଥା ଜୀବନଚରିତ ରଚନାରେ ଆଶାନୁରୂପ ପଦକ୍ଷେପ ଗ୍ରହଣ କରିଅଛନ୍ତି । ତେଣୁ ଓଡ଼ିଆ ଜୀବନଚରିତ ଏବଂ ଆତ୍ମଜୀବନଚରିତ ସଂଖ୍ୟାଦୃଷ୍ଟିରୁ ନହେଲେ ମଧ୍ୟ ଗୁଣାତ୍ମକ ବିଚାରରେ ପଛରେ ପଡ଼ିନାହିଁ ।

———

# ପରିଶିଷ୍ଟ

## ଓଡ଼ିଆ ଭାଷାରେ ପ୍ରକାଶିତ କେତେକ ଜୀବନଚରିତ

ଶାରଳା ଚରିତ—ପଣ୍ଡିତ ମୃତ୍ୟୁଞ୍ଜୟ ରଥ ୧୯୧୧
ନାନକଦର୍ପଣ ୧୯୧୭
ମହାରାଜା ପଞ୍ଚମଜର୍ଜ—ବିମଳାଚରଣ ଚୌଧୁରୀ ୧୯୨୨
କର୍ମଯୋଗୀ ଗୌରୀଶଙ୍କର—ପଣ୍ଡିତ ମୃତ୍ୟୁଞ୍ଜୟ ରଥ ୧୯୨୫
ମହାରାଜା ଶ୍ରୀ ରାମଚନ୍ଦ୍ର—ଦିବ୍ୟସିଂହ ପାଣିଗ୍ରାହୀ ୧୯୨୬
ଦୟାନନ୍ଦ—ବନମାଳୀ ପଣ୍ଡା ୧୯୨୭
ବୁକାର୍ ଟି ୱାଶିଂଟନ—ଶ୍ରୀ ଜଗବନ୍ଧୁ ସିଂହ ୧୯୨୭
ମାର୍ଟିନ୍ ଲୁଥର—ଶ୍ରୀ ପଦ୍ମଚରଣ ପଟ୍ଟନାୟକ ୧୯୨୭
କର୍ମବୀର ଗୋଖଲେ—ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ୧୯୨୭
ରାମାନୁଜ—ଶ୍ରୀ ଶରତଚନ୍ଦ୍ର ମୁଖୋପାଧ୍ୟାୟ ୧୯୨୮
ମ୍ୟାଟ୍‌ସିନି—ଗୋଦାବରୀଶ ମହାପାତ୍ର ୧୯୨୮
ମହାଯୋଗୀ ବିଶୁଦ୍ଧାନନ୍ଦ—ଶ୍ରୀକୃଷ୍ଣ ମହାପାତ୍ର ୧୯୨୮
ଉତ୍କଳ ମଧୁସୂଦନ—କାଳନ୍ଦୀ ପାଣିଗ୍ରାହୀ ୧୯୨୮
ମହମ୍ମଦ—ଦାମୋଦର ମିଶ୍ର ୧୯୨୮
ରବିନ୍‌ସନ କ୍ରୁଶୋ—ଶ୍ୟାମସୁନ୍ଦର ଭାଟିୟା ୧୯୨୮
ଔରଙ୍ଗଜେବ—ବାମଦେବ ମିଶ୍ର ୧୯୨୯
ବିଶ୍ୱବୀର ନେପୋଲିୟନ—ବିଶ୍ୱନାଥ ପାଇକରାୟ ୧୯୨୯
ଡାକ୍ତର ଲିଭିଂଷ୍ଟୋନ—ରାଧାଚରଣ ପଣ୍ଡା ୧୯୩୦
ମହାତ୍ମା ୱାଶିଂଟନ—ବାସୁଦେବ ମହାପାତ୍ର ୧୯୩୦
ନେପୋଲିୟନ—ବନମାଳୀ ପଣ୍ଡା ୧୯୩୦
ଆଦର୍ଶ ପୁରୁଷ ବା ସାଧୁ ପ୍ୟାରୀମୋହନ—କୃଷ୍ଣଚନ୍ଦ୍ର ସେନଗୁପ୍ତ ... ୧୯୩୦
ମାରକନି—ଶିବପ୍ରସାଦ ଦାସ ୧୯୩୦
ରାଣାପ୍ରତାପ ସିଂହ ଦୟାନିଧି ମିଶ୍ର (୨ୟ ସଂ) ୧୯୩୦
ଜନଫିଲିପସ୍—ଚନ୍ଦ୍ରଶେଖର ମିଶ୍ର ୧୯୩୧
ବାଲ୍ମୀକି—ରାମଚନ୍ଦ୍ର ଆଚାର୍ଯ୍ୟ ୧୯୩୧
ନେପୋଲିଅନ୍—ଗୋଦାବରୀଶ ମିଶ୍ର ୧୯୩୧
କଲମ୍ବସ୍—ରାମକୃଷ୍ଣ ମହାପାତ୍ର ୧୯୩୧
ଉତ୍କଳ ପ୍ରସଙ୍ଗ—ମହେନ୍ଦ୍ର ପଟ୍ଟନାୟକ ୧୯୩୧

ଉତ୍କଳ ଗୌରବ ମଧୁସୂଦନ—ନବକିଶୋର ଦାସ ୧୯୫୧
ପିଲାଙ୍କ ଜଗନ୍ନାଥ ଦାସ—ରବୀନ୍ଦ୍ରନାଥ ମିଶ୍ର ୧୯୫୧
ପିଲାଙ୍କ ଅଷ୍ଟାବକ୍ର—ଗୋଦାବରୀଶ ମହାପାତ୍ର ୧୯୫୧
ପିଲାଙ୍କ ବଶିଷ୍ଠ— " ୧୯୫୧
ପିଲାଙ୍କ ବଳରାମ ଦାସ—ରବୀନ୍ଦ୍ରନାଥ ମିଶ୍ର ୧୯୫୧
ମେରୀ ମ୍ୟାକ୍‌ଲିଓଡ଼ ବେଥୁନ—ଅନୁବାଦ—ଆଲୁଲ ମିଶ୍ର ୧୯୫୧
ଦଧୀଚି—ଗୋଦାବରୀଶ ମହାପାତ୍ର ୧୯୫୧
ନାରଦ— " ୧୯୫୧
ଶୁକାଚାର୍ଯ୍ୟ— " ୧୯୫୧
ତୁଳସୀ ଦାସ—ରାମକୃଷ୍ଣ ନନ୍ଦ (ଚତୁର୍ଥ ସଂ) ୧୯୫୧
ଦେଶପ୍ରାଣ ଗୋପବନ୍ଧୁ—ସାରସ୍ୱତ ଭଣ୍ଡାର ୧୯୫୧
ବିଦ୍ରୋହିଣୀ ଅରୁଣା—ଚନ୍ଦ୍ର କୁମାର ଦଣ୍ଡ ୧୯୫୧
ମାଓ ସେ ତୁଙ୍ଗ—ରଜନୀକାନ୍ତ ଦାସ ୧୯୫୨
ଶ୍ରୀ ଶ୍ରୀ ସାରଦାଦେବୀଙ୍କ ଜୀବନଚରିତ—ସ୍ୱାମୀ ଜଗନ୍ନାଥାନନ୍ଦ ୧୯୫୨
ଶ୍ରୀ ଜମ୍ମାର୍କ—ସୂର୍ଯ୍ୟନାରାୟଣ ଦାସ ୧୯୫୨
ଜୀବନୀ ଓ ପ୍ରବନ୍ଧ—ମାୟାଧର ମାନସିଂହ ୧୯୫୨
ମାନବ ଓ ମହାମାନବ—ଭବଗ୍ରାହୀ ପଣ୍ଡା ୧୯୫୨
କାଗଦନଗୁପ୍ତକ—ଅନୁବାଦ—ପ୍ରଫୁଲ୍ଲ ଚନ୍ଦ୍ର ଦାସ ୧୯୫୩
ହୋ. ଚି. ମିନ—ଚନ୍ଦ୍ରମଣି ପାଣିଗ୍ରାହୀ ୧୯୫୩
ଯୁଗପ୍ରଷ୍ଟ— ବାସୁଦେବ ତ୍ରିପାଠୀ ୧୯୫୩
ଗଙ୍ଗାଧର ମେହେର—ଶ୍ରୀଧର ଦାସ ('ସ୍ୱ ସଂ') ୧୯୫୪
ଯୀଶୁଖ୍ରୀଷ୍ଟ ଚରିତାମୃତ—ବ୍ରଜାନନ୍ଦ ମହାନ୍ତି ୧୯୫୪
ବୁଦ୍ଧ ଚରିତ—କାଳିଆ ପାଣିଗ୍ରାହୀ ୧୯୫୭
ଭାରତ ଭାଗ୍ୟବିଧାତା—ନିତ୍ୟାନନ୍ଦ ମହାପାତ୍ର ୧୯୫୭
ଯୀଶୁଙ୍କ ବିବରଣ—ମି. କେ. ଡ଼ି. ବେଟ (୪ର୍ଥ ସଂ) ୧୯୫୮
ଠକର ବାପା—ଗୋବିନ୍ଦଚନ୍ଦ୍ର ଶେଠ ୧୯୫୮
ଡା. ହେଡ଼ଗେୱାର—ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ୧୯୫୮
ମୋ ଜୀବନ ଓ ସାଧନା ଅନୁବାଦ - ଚିତ୍ତରଞ୍ଜନ ଦାସ ୧୯୫୯
ଗାନ୍ଧିଜୀଙ୍କ ପଦତଳେ— ଅନୁବାଦ ସଚ୍ଚିଦାନନ୍ଦ କାନୁନଗୋ ୧୯୫୯
ହଜରତ୍ ମହମ୍ମଦ—ଏମ. ଏ. ସମ୍ମଦ ୧୯୫୯
ସର୍ଦ୍ଦାର ବଲ୍ଲଭଭାଇ ପଟେଲ- ଅନୁବାଦ—ସଚ୍ଚିଦାନନ୍ଦ କାନୁନଗୋ ୧୯୬୦
ଆଲୋକର କବି ରବୀନ୍ଦ୍ରନାଥ—ଅନୁବାଦ= ଚିତ୍ତରଞ୍ଜନ ଦାସ ୧୯୬୧
ମହାବୀର ଦୋହରା ବିଶୋଇ—ଅନନ୍ତ ପଦ୍ମନାଭ ପଟ୍ଟନାୟକ ୧୯୬୧
ୱିଲିୟମ୍ କେରୀ—ଯୁଗଳ କିଶୋର ମହାନ୍ତି ୧୯୬୧

| ଗ୍ରନ୍ଥ—ଲେଖକ | ବର୍ଷ |
|---|---|
| ବିପ୍ଳବୀ କ୍ଷୁଦିରାମ—ଚୈତନ୍ୟ ପାଣିଗ୍ରାହୀ … | ୧୯୬୨ |
| ଐତିହାସିକ କୃପାସିନ୍ଧୁ—ଚନ୍ଦ୍ରମଣି ଦାସ | ୧୯୬୨ |
| ବିବେକାନନ୍ଦ—ରୋମାରୋଲାଁ—ଅନୁବାଦ—ଲକ୍ଷ୍ମୀନାରାୟଣ ମହାନ୍ତି | ୧୯୬୩ |
| ବିଶ୍ୱବିଜୟୀ ବିବେକାନନ୍ଦ—ଜିତେନ୍ଦ୍ର ନାଥ ଘୋଷ | ୧୯୬୩ |
| ନେପୋଲିଅନ ବୋନାପାର୍ଟ—ଆବଟ—ଅନୁବାଦ—ଚୌଧୁରୀ ନୀଳକଣ୍ଠ ଦାସ (୩ ଭାଗରେ)… | ୧୯୬୪ |
| ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଜୀବନୀ—ଗୋପୀନାଥ ମହାନ୍ତି | ୧୯୬୫ |
| ଯୁଗଜ୍ୟୋତି ଲାଲବାହାଦୁର—ସୂର୍ଯ୍ୟନାରାୟଣ ଦାସ | ୧୯୬୬ |
| କେନେଡ଼ିଙ୍କ ଜୀବନ କାହାଣୀ—ଅନୁବାଦ—ଗୋଲକ ଧଳ … | ୧୯୬୬ |
| ଶ୍ରୀମତୀ ଏଲିନର ରୁଜଭେଲ୍ଟଙ୍କ ଆତ୍ମଚରିତ—ଅନୁବାଦ—ବିଚିତ୍ରାନନ୍ଦ ମହାନ୍ତି… | ୧୯୬୬ |
| ବୈଦ୍ୟରତ୍ନ ମାଗୁଣି ବ୍ରହ୍ମା—ଉପେନ୍ଦ୍ର ମିଶ୍ର | ୧୯୬୭ |
| ଅମର ସହୀଦ ଲାଲା ଲଜପତରାୟ – ବୀରକିଶୋର ଦାସ | ୧୯୬୭ |
| ଉତ୍କଳମଣି ଗୋପବନ୍ଧୁ—ଗୋପୀନାଥ ମହାନ୍ତି | ୧୯୬୭ |
| କର୍ମଯୋଗୀ ଡକ୍ଟର ରାଜେନ୍ଦ୍ର ପ୍ରସାଦ – ବୀରକିଶୋର ଦାସ … | ୧୯୬୭ |
| ରାଜେନ୍ଦ୍ର ପ୍ରସାଦଙ୍କ ଆତ୍ମକଥା—ଅନୁବାଦ—ସଚ୍ଚିଦାନନ୍ଦ କାନୁନଗୋ | ୧୯୬୮ |
| ଯୁଗଜନକ ମହାତ୍ମା ଗାନ୍ଧୀ—ସୂର୍ଯ୍ୟନାରାୟଣ ଦାସ | ୧୯୬୮ |
| କବି ପୁଷ୍କିନ—ଗୋପାଳଚନ୍ଦ୍ର ମିଶ୍ର … | ୧୯୬୮ |
| ମହାତ୍ମା ଗାନ୍ଧୀଙ୍କ ଜୀବନୀ—ଲୁଇଫିସର—ଅନୁବାଦ—ଚନ୍ଦ୍ରମଣି ମିଶ୍ର | ୧୯୬୯ |
| କାଜୀ ନଜରୁଲ ଇସଲାମ—ବସୁଧା ଚକ୍ରବର୍ତ୍ତୀ—ଅନୁବାଦ—ଗୋବିନ୍ଦ ଚନ୍ଦ୍ର ମହାନ୍ତି… | ୧୯୬୮ |
| ବିଦ୍ରୋହୀ ବୀର (ଶିବାଜୀଙ୍କ ଜୀବନଚରିତ)—ଅନୁବାଦ—ଗୋପାଳ ଚନ୍ଦ୍ର ମିଶ୍ର … | ୧୯୬୯ |
| ହେ ସାଥି ହେ ସାରଥି—ନିତ୍ୟାନନ୍ଦ ଶତପଥୀ … | ୧୯୬୯ |
| ଗର୍କି—ଅନୁବାଦ—ଗୋପୀନାଥ ମହାନ୍ତି | ୧୯୬୯ |
| ରାଷ୍ଟ୍ରଗୁରୁ ରାଧାକୃଷ୍ଣ—ବୀରକିଶୋର ଦାସ | ୧୯୭୦ |
| ଲେଲିନ୍ – ଅନୁବାଦ—ଗୁରୁଚରଣ ପଟ୍ଟନାୟକ | ୧୯୭୦ |
| ଶତାବ୍ଦୀର ସୂର୍ଯ୍ୟ—ସୁରେନ୍ଦ୍ର ମହାନ୍ତି | ୧୯୭୦ |
| ପୃଥିବୀର ଅମର ମଣିଷ—ସୂର୍ଯ୍ୟନାରାୟଣ ଦାସ … | ୧୯୭୧ |
| ଦେଶପ୍ରାଣ ମଧୁସୂଦନ—ସୂର୍ଯ୍ୟନାରାୟଣ ଦାସ | ୧୯୭୧ |
| ଉତ୍କଳମଣି ଗୋପବନ୍ଧୁ ” | … |
| ସରସ୍ୱତୀ ଫକୀରମୋହନ—ମାୟାଧର ମାନସିଂ | ୧୯୭୨ |
| ଯୁଗନେତ୍ରୀ ଇନ୍ଦିରା—ସୂର୍ଯ୍ୟ ନାରାୟଣ ଦାସ | ୧୯୭୨ |
| ପଣ୍ଡିତ ଗୋଦାବରୀଶଙ୍କ ଜୀବନଚରିତ—ଜଗନ୍ନାଥ ମହାପାତ୍ର | ୧୯୭୨ |
| ସାଧକ ଜୀବନୀମାଳା—ରାମଚନ୍ଦ୍ର ପଣ୍ଡା | ୧୯୭୨ |

ରଣଜିତ ସିଂହ —ଡ଼. ଆର୍‌ ସୁଦ—ଅନୁବାଦ—ଲଲ ନଗେନ୍ଦ୍ର କୁମାର ୧୯୭୩

ଅମର ଜ୍ୟୋତି—ପ୍ରଫୁଲ୍ଲ କୁମାରୀ ପାଣ୍ଡ ୧୯୭୪

କୁନ୍ତଳା କୁମାରୀ ଜୀବନଚରିତ—ଚକ୍ରଧର ମହାପାତ୍ର ... ୧୯୭୨

ତକ୍ସର ଲୋହିଆ—ଓଁକାର ଶରଦ—ଅନୁବାଦ—ପ୍ରଫୁଲ୍ଲ କୁମାର ରଥ ୧୯୭୫

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ—ବୀରକିଶୋର ଦାସ ୧୯୭୫

ବୀର ସୁରେନ୍ଦ୍ର ସାଏ—ଅନିରୁଦ୍ଧ ଦାସ ... ୧୯୬୩

(ଲାଲବାହାଦୂର) ମୋ ପତି ମୋ ଦେବତା—ଉମାଶଙ୍କରଜୀ—ଅନୁବାଦ
—ନୀଳମଣି ମିଶ୍ର ୧୯୬୮

ସନ୍ଥ ରାମଦାସ—ଗୋବିନ୍ଦ ମିଶ୍ର ୧୯୭୭

ସନ୍ଥ ଜ୍ଞାନେଶ୍ୱର— ,, ୧୯୭୭

ସନ୍ଥ ଏକନାଥ— ,, ୧୯୭୭

ସନ୍ଥ ନାମଦେବ— ,, ୧୯୭୭

ସନ୍ଥ ତୁକାରାମ— ,, ୧୯୭୭

ଜୀବନୀ ବର୍ତ୍ତିକା—ଶ୍ରୀଧର ଦାସ—ପଠାଣିପଟ୍ଟନାୟକ ୧୯୬୧

ଆମ ଦେଶର କବି—ଚିନ୍ତାମଣି ଦାସ

ପଞ୍ଚ ପ୍ରଦୀପ—ଶ୍ରୀଧର ଦାସ

ଶ୍ରୀ ଶ୍ରୀଠାକୁର—ସୁରେଶଚନ୍ଦ୍ର ଦେବଶର୍ମା

ହାମଫ୍ରୀ—ଅନୁବାଦ—ଗୋଲକ ବିହାରୀ ଧଳ

ଲିଣ୍ଡନ ଜନସନ—ଅନୁବାଦ—ଶ୍ରୀହର୍ଷ ମିଶ୍ର

ଗୁରୁଗୋବିନ୍ଦ ସିଂହ—ହରବଂଶ ସିଂହ

ଗୌତମବୁଦ୍ଧ—ଜାନକୀ ବଲ୍ଲଭ ପଟ୍ଟନାୟକ

ପଣ୍ଡିତ ବିଷ୍ଣୁ ଦିଗମ୍ବର—ଅନୁବାଦ—ବିଜୟକୃଷ୍ଣ ମହାନ୍ତି

ତ୍ୟାଗରାଜ—ଅନୁବାଦ—କେଶବଚନ୍ଦ୍ର ସାମଲ

ସୁବ୍ରମଣ୍ୟ ଭାରତୀ—ଅନୁବାଦ—ଦେବେନ୍ଦ୍ର ଶତପଥୀ

ଶଙ୍କରଦେବ— ,, —ନୀଳାଦ୍ରିଭୂଷଣ ହରିଚନ୍ଦନ

ଜଗଦୀଶଚନ୍ଦ୍ର ବୋଷ—ଅନୁବାଦ—ଦେବକାନ୍ତ ମିଶ୍ର

ମଧୁସୂଦନ ଦାସ— ,, ସୁରେନ୍ଦ୍ର ମହାନ୍ତି

କବୀର— ,, ସଚ୍ଚିଦାନନ୍ଦ କାନୁନଗୋ

ଗୁରୁନାନକ— ,, —ଦେବେନ୍ଦ୍ର ଶତପଥୀ

ନିବେଦିତା—କୃଷ୍ଣମିଶ୍ର

ଲକ୍ଷ୍ମୀବାଈ— ,,

ଜାହାନାରା ଆତ୍ମକାହାଣୀ—ଗଣେଶ୍ୱର ମିଶ୍ର

ଜଡ଼ ଭରତ—ବାସୁଦେବ ମିଶ୍ର

ଚନ୍ଦନ ହଜୁରୀ—ମିହିର କୁମାର ରାୟ
ନେତାଜୀ ସୁବାଷଚନ୍ଦ୍ର—ବ୍ରଜେନ୍ଦ୍ର ବର୍ମା
ଆଗ୍ନେୟ ଶଙ୍କର—ଶିବ ପ୍ରସାଦ ଦାସ
ଉପେନ୍ଦ୍ରଭଞ୍ଜ ଜୀବନୀ—ଦାମୋଦର ଦାସ
ଭଞ୍ଜ ବଂଶାନୁଚରିତ—ମାଗୁଣି ଦାସ
ରାସ୍ତ ରାମାନନ୍ଦ ସରଳା ଦେବୀ
କୁନ୍ତଳାକୁମାରୀ ଜୀବନଚରିତ—ସର୍ବେଶ୍ୱର ଦାସ
ପଣ୍ଡିତ ନୀଳମଣି ବିଦ୍ୟାରତ୍ନ— ,,
ଭକ୍ତକବି ମଧୁସୂଦନ—କୃଷ୍ଣଚନ୍ଦ୍ର କର
ସୁରତ୍ନ ଦେବ— ,,
ଚନ୍ଦ୍ରଶେଖର— ,,
ଉତ୍କଳ ମଣି ଗୋପବନ୍ଧୁ— ,,
କୁଳବୃଦ୍ଧ ମଧୁସୂଦନ— ,,
ଆଗ୍ନେୟ ହରହର—ବିନୋଦ କାନୁନଗୋ
ଜୟ ପ୍ରକାଶ— ,,
ସକ୍ରେଟିଶ ଓ ପ୍ଲାଟୋ—ଶରତ କୁମାର ମହାନ୍ତି
ଜା”ପଲ୍ ସାର୍ତ୍ରି— ,,
ଜୀବନ ଓ ପ୍ରତିଭା—କେଶବ ମେହେର
ବୈଜ୍ଞାନିକ ସି: ଭି: ରମଣ—ଗଦାଧର ମିଶ୍ର
• ଆଇନଷ୍ଟାଇନ ଓ ତାଙ୍କ ଯୁଗାନ୍ତକାରୀ ଉଦ୍ଭାବନ—ଦେବକାନ୍ତ ମିଶ୍ର
ବେନିତୋ ମୁସୋଲିନ୍—ପଣ୍ଡିତ ଲିଙ୍ଗରାଜ ମିଶ୍ର
ପଣ୍ଡିତ ଜବାହର ଲାଲ— ,,
ଆଡ଼ଲଫ ହିଟଲର— ,,
ଯୋସେଫ ଷ୍ଟାଲିନ— ,,
ପଣ୍ଡିତ ଗୋପବନ୍ଧୁ— ,,
ମୌଲନା ଆଜାଦ— ,,
ସୁରେନ୍ଦ୍ର ସାଏ—ପ୍ରଭାତ ମୁଖାର୍ଜୀ
ବିପ୍ଳବୀ କ୍ଷୁଦିରାମ—ଚୈତନ ପାଣିଗ୍ରାହୀ
କର୍ମବୀର ଲିଙ୍ଗରାଜ—ମହେନ୍ଦ୍ର ପଟ୍ଟନାୟକ
ଉତ୍କଳକେଶରୀ ମହତାବ—ମହେନ୍ଦ୍ର ପଟ୍ଟନାୟକ
ରାମମୋହନ ରାୟ ଜଗଦୀଶଚନ୍ଦ୍ର ରଥ
ଶ୍ରେଷ୍ଠ ଗଣିତଜ୍ଞଙ୍କ ଜୀବନୀ—ଘନଶ୍ୟାମ ସାମଲ
ବୈଜ୍ଞାନିକ ଜୀବନୀ—କୁଳମଣି ସାମଲ
ଭକ୍ତ ମୀରା—ହରବନ୍ଧୁ ଶତପଥୀ

ଗାନ୍ଧୀ ଓ ଉତ୍କଳ—ଗୋପବନ୍ଧୁ ଚୌଧୁରୀ
ଗାନ୍ଧୀ ଓ ପଟେଲ—ବିନୋଦ କାନୁନଗୋ
ଠକର ବାପା—କାଳୀଚରଣ ପଟ୍ଟନାୟକ
ପ୍ରଦୀପ ଓ ପ୍ରଣୟ—ଗୋପାଳ କାନୁନଗୋ
ଭାରତୀୟ ମହିଳା—ରଘୁନାଥ ମହାପାତ୍ର—କୃଷ୍ଣପ୍ରସାଦ ମିଶ୍ର
ଲୋକମାନ୍ୟ ତିଳକ—ଶିବବ୍ରାହ୍ମ ପତି
ସନ୍ଥ ବିନୋବା—ସଚ୍ଚିଦାନନ୍ଦ ମିଶ୍ର
ଶ୍ରୀ ଗୁରୁଜୀ—ଲକ୍ଷ୍ମୀନାରାୟଣ ସାହୁ
ଆଦର୍ଶ ଜୀବନମାଳା—ମାୟାଧର ମାନସିଂହ

ଏତଦ୍ ବ୍ୟତୀତ "ଭାରତୀୟ ମହିଳା ସିରିଜ", "ଭକ୍ତ ଜୀବନୀମାଳା" ନୋବେଲ ପ୍ରାଇଜ ସିରିଜ, "ଆର୍ଯ୍ୟଋଷି ଗ୍ରନ୍ଥମାଳା" "ଦୀପକ ମଣ୍ଡଳ ଗ୍ରନ୍ଥମାଳା", "ବୈଜ୍ଞାନିକ ଜୀବନୀ, ରାଷ୍ଟ୍ରନାୟକ ସିରିଜ, ଜାତୀୟ ଜୀବନ ଚରିତମାଳା" ପ୍ରଭୃତି ପର୍ଯ୍ୟାୟରେ ବିଭିନ୍ନ ପ୍ରକାଶକ ଏବଂ ସାଂସ୍କୃତିକ ଅନୁଷ୍ଠାନ ବହୁ ଜୀବନଚରିତ ପ୍ରକାଶ କରିଥିବା ଜଣାଯାଏ

—*—

# କେତେକ ଉଲ୍ଲେଖଯୋଗ୍ୟ ସ୍ମରଣିକା

| | |
|---|---|
| ସେନାପତି ଜୟନ୍ତୀ ସ୍ମରଣିକା | ୧୯୬୪ |
| ଆର୍ତ୍ତିବଲ୍ଲଭ ସ୍ମରଣିକା | ୧୯୬୪ |
| ଲକ୍ଷ୍ମୀନାରାୟଣ ସ୍ମରଣିକା | ୧୯୬୪ |
| ସାହିତ୍ୟିକ ଉଦୟନାଥ ଷଡ଼ଙ୍ଗୀ | ୧୯୭୫ |
| ସହକାର ବାଳକୃଷ୍ଣ ସ୍ମୃତି ସଂଖ୍ୟା | ୧୯୭୩ |
| ବ୍ରଜସୁନ୍ଦର ସ୍ମାରକ ଗ୍ରନ୍ଥ | ୧୯୬୨ |
| ଗଣକବି ବୈଷ୍ଣବପାଣି ସ୍ମରଣିକା | ୧୯୬୭ |
| ଗୋପବନ୍ଧୁ ସ୍ମରଣିକା | ୧୯୬୭ |
| ସତ୍ୟବାଦୀ ପ୍ରସୂନ (ରାଧାନାଥ ରଥ) | ୧୯୭୫ |
| ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ | ୧୯୭୧ |
| ମଧୁ ସ୍ମରଣିକା | ୧୯୬୬ |
| ନୀଳକଣ୍ଠ ସ୍ମରଣିକା | ୧୯୬୯ |
| ରତ୍ନାକର ସ୍ମୃତି | ୧୯୭୦ |
| 'ଅଧୁନା' ରାଜକିଶୋର ବିଶେଷାଙ୍କ | ୧୯୭୭ |
| 'ନବପତ୍ର, ଗୋପୀନାଥ ବିଶେଷାଙ୍କ | ୧୯୭୪ |
| ବିଚ୍ଛନ୍ଦ ସ୍ମରଣିକା | ୧୯୬୨ |
| ଗୋଦାବରୀଶ ସ୍ମରଣିକା— | |
| ପ୍ରାଣକୃଷ୍ଣ ସ୍ମରଣିକା— | |
| ନନ୍ଦକିଶୋର ସନ୍ଦେଶ— | |
| ସାହିତ୍ୟିକ ବାଳକୃଷ୍ଣ ସ୍ମରଣିକା— | |

# କେତେକ ଆତ୍ମଚରିତ



– X –

## ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ସାହିତ୍ୟିକ ସମାଲୋଚନା ସମ୍ବନ୍ଧୀୟ ଅନ୍ୟାନ୍ୟ ପୁସ୍ତକ

୧ । ଭକ୍ତ କବି ଜଗନ୍ନାଥ ଦାସ

—ଡକ୍ଟର ବଂଶୀଧର ମହାନ୍ତି ଟ ୭-୨୫

୨ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ—ଏକ ସମୀକ୍ଷା

—ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଟ ୧୨-୦୦

୩ । ରସିକ ଭକ୍ତ ଅଭିମନ୍ୟୁ

—ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ଟ ୫-୦୦

୪ । ଭାରତୀୟ ସାହିତ୍ୟର ଇତିହାସ

ଡକ୍ଟର ଜାନକୀବଲ୍ଲଭ ମହାନ୍ତି ଟ ୭-୫୦